MONIKA EBE KEUNTHI ?
by Ramachandra Behera
Published by Vidyapuri, Balubazar, Cuttack-753002

ISBN 81-7411-298-7

ପ୍ରଥମ ପ୍ରକାଶ ଫେବୃୟାରୀ ୨୦୦୦

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ଶଶିକାନ୍ତ ରାଉତ

ମୁଦ୍ରଣ
ଶ୍ୟାମ ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୬୦.୦୦

# ଏକ

ଗୋଟେ ଗାଈ ଏବଂ ତା' ଛୁଆର ହମ୍ବାରଡ଼ି ଅଲୌକିକ ପ୍ରତିକ୍ରିୟା ସୃଷ୍ଟି କରିପାରେ । ସେ ବନ୍ଧା ହୋଇଥିବ ଗୁହାଳ ଖୁଣ୍ଟରେ । ତା' ସାମନାରେ ଥିବା ଅବଶିଷ୍ଟ ନଡ଼ା ଓ ପରିତ୍ୟକ୍ତ ଡେକ୍‌ଚି ତାକୁ ଆଉ ପ୍ରଲୁବ୍‌ଧ କରିପାରୁ ନ ଥିବ । ପଘା ଛିଣ୍ଡାଇ ସେ ବ୍ୟାକୁଳ ହେଉଥିବ ଟିକିଏ ଦୂରରେ ତା' ଭଳି ବନ୍ଦୀ ହୋଇ ରହିଥିବା ବାଛୁରୀ ପାଖକୁ ଯିବା ପାଇଁ । ଦୁହିଁଙ୍କର ମିଳିତ ସ୍ୱର କ୍ରମଶଃ ଆତୁର ହୋଇ ପଡୁଥିବ । ଏ ସ୍ୱର ସତେଯେପରି ଏକ ବିପର୍ଯ୍ୟୟର ସୂଚନା । ଏକ ଦୁର୍ବିପାକର ପୂର୍ବାଭାସ ।

ଏଇ କାରଣରୁ ଗାଁ ଉପରେ ମଖେଇ ହୋଇ ରହିଥିବା ଅନ୍ଧକାର ଅନେକ ବେଳୁ ନିଜକୁ ପ୍ରତ୍ୟାହାର କରି ନେଇଥିବ ଏବଂ ରାତିର ଗର୍ଭରେ ନିଜକୁ ସାଇତି ରଖିଥିବ । ଏଇ ବିପର୍ଯ୍ୟୟ ଏବଂ ଦୁର୍ବିପାକର ସ୍ୱରୂପ କ'ଣ, ତାହା ଜାଣିବା ସକାଶେ ପୂର୍ବଦିଗର ଦିଗ୍‌ବଳୟ ଜନ୍ମ ଦେଉଥିବ ରକ୍ତରଞ୍ଜିତ ସୂର୍ଯ୍ୟକୁ । ମା' ଏବଂ ପିଲାର ହମ୍ବା ରଡ଼ି ଆହୁରି ଉଦ୍‌ବିଗ୍ନ ହୋଇ ପଡୁଥିବ । ଗୋଟିଏ ପାଖରେ ଭୋକିଲା ଓଠ । ଅନ୍ୟପକ୍ଷରେ ଉତ୍ସର୍ଗୀକୃତ ଭରପୂର ସ୍ତନ । ଏ ଦୁହେଁ ଏକାଠି ହୋଇ ପାରୁ ନ ଥିବେ । ଏତେ ଶାନ୍ତ, ପ୍ରତିବାଦହୀନ ଓ ନିରୀହ ଜଣାପଡୁଥିବା ମାଣିକ ନାମକ ଏଇ ଗାଈଟି ସମସ୍ତ ପ୍ରତିବନ୍ଧକ ଓ ସୀମାବଦ୍ଧତା ଅତିକ୍ରମ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଉଥିବ ଏବଂ କ୍ରମଶଃ ତା' ସ୍ୱରରେ ସ୍ପଷ୍ଟ ହୋଇ ପଡୁଥିବ ଏକ ଉନ୍ମାଦନା ଓ ଅବଜ୍ଞା । ଅଥଚ ସେ କରିପାରୁ ନ ଥିବ କିଛି । ପଘା ରହିଥିବ ଅପରାଜେୟ ହୋଇ । ମା' ଓ ପିଲା ମଧ୍ୟରେ ରହିଥିବା ମାମୁଲି ବ୍ୟବଧାନ କେହି ଅତିକ୍ରମ କରିପାରୁ ନ ଥିବେ । ଭୋକ ବଢୁଥିବ । ଭୋକ ସନ୍ତୁଷ୍ଟ କରିବା ପାଇଁ ବ୍ୟଗ୍ରତା ପହଞ୍ଚି ଯାଉଥିବ ଅସମ୍ଭାଳ ଅବସ୍ଥାରେ । ଏଣେ ସୂର୍ଯ୍ୟ ଦେଖୁଥିବ ସବୁ ଅସହାୟ ଅବସ୍ଥାରେ । ଆସିପାରୁ ନ ଥିବ ଆକାଶରେ ତା' ପାଇଁ ନିର୍ଦ୍ଧାରିତ ହୋଇଥିବା ପଘା ଛିଣ୍ଡାଇ ।

ହରିଜନ ସାହି ପ୍ରକମ୍ପିତ ହେଉଥିବ । ମାତ୍ର ଏ ଘଟଣା ନୂଆ ନୁହେଁ । ଏଥିରେ ଅସାଧାରଣ, ଅମାନୁଷିକ ଉପାଦାନ କିଛି ନାହିଁ । ଏଇଭଳି ଭଙ୍ଗୀ ନେଇ ନିଜ କାମରେ ବ୍ୟସ୍ତ ରହିଥିବ ହାଡ଼ିବନ୍ଧୁ, ଯାହାକୁ ଗାଁର ସମସ୍ତେ ହାଡ଼ିଆ ବୋଲି ସମ୍ବୋଧନ କରନ୍ତି, ଜାଣନ୍ତି । ଗୁହାଳ ପାଖରେ ଗଜ ପାଇଁ ତିଆରି ହୋଇଥିବା ଦୋଳି ଖୁଣ୍ଟ ଧରି ସେ ଧାନ ମଳୁଥିବ ଦୁଇ ଗୋଡ଼ରେ । ତା' ଠାରୁ ଟିକିଏ ଦୂରରେ ଗୋଟେ କୁଲା ସାହାଯ୍ୟରେ ଧାନ ପାଛୁଡୁଥିବ ଜେମା ।

ଡିସେମ୍ବର ସକାଳର ଏଇ ହେଉଚି ପରିପାଟୀ । ଏ ପାଖରେ ଦୁଇ ବଖରା ଘର । ଉଚ୍ଚ ପିଣ୍ଡା । ସାମନାରେ ଗୁହାଳ । ମଝିରେ ପ୍ରଶସ୍ତ ଅଗଣା । ତୁଳସୀ ଚଉରା । ଡାହାଣ ପାଖରେ ରୋଷେଇ ଘର । ଅନ୍ୟ ପାଖରେ ବହଳ ସବୁଜ ବାଡ଼ । ଗୁହାଳ କଡ଼ରେ ଯେଉଁ ବିଶାଳ ଆମ୍ବଗଛ, ତା' ତଳେ ଥାକ ଥାକ ହୋଇ ସଜଡ଼ା ହୋଇଚି ଧାନ ବିଡ଼ା । ବାଡ଼ କଡ଼ରେ କେତୋଟି ମଲ୍ଲି ବୁଦା, ମନ୍ଦାର ଗଛ । ଏତେ ପରିଷ୍କାର, ପରିଚ୍ଛନ୍ନ ଘରର ମାଲିକ ଜଣେ ହରିଜନ । ଜାଣି ନ ଥିବା ଲୋକ ଜଣେ ଏହା ବିଶ୍ୱାସ କରି ନ ପାରେ ।

ପଞ୍ଚମ ଶ୍ରେଣୀରେ ପଢୁଥିବା ଶେଖର ବସିଥିଲା ପିଣ୍ଡା ଉପରେ ସପ ପକାଇ । ବାପା-ମା ବିଗିଡ଼ିବେ ବୋଲି ପଢ଼ାପଢ଼ି କରୁଥିବାର ଛଳନା କରୁଥିଲା ଅନେକ ବେଳୁ । ଅସଲ କଥା ହେଉଚି, ଗତକାଲି ରାତିରୁ ସେ ସ୍କୁଲ ପାଠ ଶେଷ କରିଥିଲା । କେଉଁ ପାଠ ପଢ଼ିଥାନ୍ତା ସକାଳୁ ? ଗଣିତ-ସାହିତ୍ୟ ଇତ୍ୟାଦି ତାକୁ ଭାରି ସହଜ ଜଣାପଡ଼େ । ତା' ନ ହୋଇଥିଲେ ସ୍କୁଲରେ ବରାବର ପ୍ରଥମ ସ୍ଥାନ ଅଧିକାର କରିପାରୁଥାନ୍ତା କିପରି ? ମୂଳରୁ ଏକାଗ୍ରତା ନ ଥିଲା ତା' ଠାରେ । ଏହା ସାଙ୍ଗକୁ ମାଣିକ ଓ ତା' ପିଲାର ହମ୍ବାରଡ଼ି ଶୁଭୁଥିଲା ଗୋଟେ ନିର୍ଯ୍ୟାତିତ ଆର୍ତ୍ତନାଦ ଭଳି । ଏଇ ହମ୍ବାରଡ଼ି ଗୋଟେ ପ୍ରଖର ସୁଅ ଭଳି ପ୍ରବାହିତ ହୋଇ ଯାଉଥିଲା ତା' ଭିତରେ । ପ୍ରତିଥର ତା' ଭିତରେ ଅତଡ଼ା ଭଳି କିଛି ଗୋଟେ ଧସକି ପଡୁଥିଲା ସେହି ସୁଅର ତୋଡ଼ ଯୋଗୁଁ ।

ସେ ଠିଆ ହେଲା । ଧରିଲା ପିଣ୍ଡା କୋଣରେ ଥିବା ଖୁଣ୍ଟକୁ । ଚାହିଁଲା ବାପା-ମା'ଙ୍କ ଆଡ଼େ । କାଳେ ତାଙ୍କ ପାଖରେ କିଛି ପ୍ରତିକାର ଥିବ ! ମାତ୍ର ଦୁଇଟି ସକ୍ରିୟ ଗୋଡ଼ ମନ୍ଥନ କରୁଥିଲା ଧାନ କେଣ୍ଡାମାନଙ୍କୁ । ଦୁଇଟି ହାତ ପୃଥକ କରୁଥିଲା ଧାନରୁ ଅଗାଡ଼ିକୁ । କିଛି ଯେପରି ଘଟୁ ନାହିଁ । ଶେଖର ଓହ୍ଲାଇଲା ତଳକୁ । ଅତିକ୍ରମ କଲା ଅଗଣା । ବାଡ଼ ଟପିଲା । ଅଣଓସାରିଆ ରାସ୍ତା ଉପରେ ଦୃଷ୍ଟି ପହଁରାଇ ଆଣିଲା । କାହାରି ଏ ଯାଏ ଦେଖା ନାହିଁ ଗାଈ ଦୁହିଁବା ପାଇଁ ।

ଏଥର ସେ ଠିଆହେଲା ଗୁହାଳ ପାଖରେ । ମା' ଓ ପିଲାର ବ୍ୟସ୍ତତା ଦେଖି ବିଗଳିତ ହୋଇଗଲା । ସେ ପ୍ରାୟ ବାଛୁରୀକୁ ମୁକ୍ତ କରିବା ପାଇଁ ଗୁହାଳ ଭିତରକୁ ଯାଉଥିଲା । ବାସ୍ତବିକ ମାଣିକ ତା' ଆଡ଼େ ଥରେ-ଦୁଇଥର ଦୃଷ୍ଟି ବୁଲାଇ ଆଣିଥିଲା ଏବଂ ତାକୁ ସଙ୍କଟରୁ ପରିତ୍ରାଣ କରିବା ପାଇଁ ନିବେଦନ କରିଥିଲା ।

ଶେଖର ପଛଘୁଞ୍ଚା ଦେଲା । ଆସିଲା ବାପାଙ୍କ ପାଖକୁ ଏବଂ ପଚାରିଲା– "ଆଜି ଗାଈ ଦୁହିଁବା ପାଇଁ କେହି ଆସିବେ ନାଇଁ ନା କ'ଣ ? ଏତେ ଡେରି ହେଲାଣି ।"

ହାଡ଼ିବନ୍ଧୁ ତା' ଆଡ଼େ ନ ଚାହିଁ ପରାମର୍ଶ ଦେଲା– "ତୁ ଏଠି କ'ଣ କରୁଚୁ ? ପଢ଼ାପଢ଼ି କରିବୁ ଯା ।"

ଅନଭିଜ୍ଞ ଓ ଅପରିପକ୍ୱ ଶେଖର ଲକ୍ଷ୍ୟ କରିପାରି ନ ଥିଲା ଗୋଟିଏ କଥା । ବାପାଙ୍କ ମୁହଁରେ ବିରକ୍ତି; ସମ୍ଭବତଃ କ୍ରୋଧ, ସ୍ପଷ୍ଟ ହୋଇ ପଡୁଥିଲା । ଏହା ପ୍ରକାଶିତ ହେଉଥିଲା ତାଙ୍କର ଅକାରଣରେ କ୍ଷିପ୍ର ହୋଇ ପଡ଼ିଥିବା ଦୁଇ ଗୋଡ଼ର କ୍ରିୟାଶିଳତାରୁ । ଗାଈ-ବାଛୁରୀଙ୍କର ଏଇ ଅବସ୍ଥା ପ୍ରତି ତା' ଠାରେ ଥିଲା ସହାନୁଭୂତି । ମାତ୍ର ତାହା ନିଷ୍କ୍ରିୟ ହୋଇପଡ଼ିଥିଲା ତା'ର ଅସହାୟତା ମଧ୍ୟରେ ।

ସେତେବେଳକୁ ତଳେ କୁଲା ଥୋଇସାରିଥିଲା ଜେମା । ଶେଖରକୁ ପରାମର୍ଶ ଦେଲା– "ଖୋଲିଦେ ବାଛୁରୀକୁ । ଆଉ ମୋତେ ସହିହେବ ନାଇଁ ଏ ବିକଳ ହମ୍ବାରଡ଼ି । ଆରେ, ଠିଆ ହୋଇ ବାପାଙ୍କୁ ଚାହିଁଚୁ କ'ଣ ? ଖୋଲିଦେ । ମୁଁ କହୁଚି ଖୋଲିଦେ ।"

ବାପା କେବଳ ହଁ ବୋଲି କହିଦିଅନ୍ତେ କିମ୍ବା ତୁମର ଯାହା ମନ ହେଉଚି ତାହା କର; ମୋର କୌଣସି ଆପତ୍ତି ନାଇଁ— ଏଇ ଭଳି ଭଙ୍ଗୀ ପ୍ରକାଶ କରନ୍ତେ । କ୍ଷଣକ ମଧ୍ୟରେ ସମସ୍ତ ପଘା ଖୋଲିଯାଆନ୍ତା । ମା' ଓ ପିଲା ମଧ୍ୟରେ ଥିବା ବ୍ୟବଧାନ ଲୋପ ପାଇଯାଆନ୍ତା । ସଂଯୋଜିତ ହୋଇଯାଆନ୍ତା ଓଠ, ସ୍ତନ ସହିତ । ଅତୁଳନୀୟ ବ୍ୟଗ୍ରତା ନେଇ ବାଛୁରୀ ଶୋଷିଚାଲନ୍ତା ଅମୃତ ଏବଂ ପ୍ରମାଣ କରନ୍ତା ଏହାର ରଙ୍ଗ ହେଉଚି ଧଳା । ଗୋଟେ ମମତାମୟ ଜିଭ ପରିକ୍ରମା କରନ୍ତା ବାଛୁରୀର ପିଠି । ସେତେବେଳେ ସମଗ୍ର ଧରଣୀରେ ଆଉ କୌଣସି ପ୍ରକ୍ରିୟା ନ ଥାନ୍ତା, କ୍ଷୀର ପାନ କରିବା ପ୍ରକ୍ରିୟା ବ୍ୟତୀତ । କୌଣସି ଦୃଶ୍ୟ ନ ଥାନ୍ତା, ଗୋଟେ କଅଁଳ ପିଠି ଚାଟିବା ଦୃଶ୍ୟ ବ୍ୟତୀତ । ଶେଖର ଆଦୌ କହିପାରନ୍ତା ନାଇଁ, ଏଇ ଦୃଶ୍ୟଟି ତାକୁ ଏତେ ତୃପ୍ତି ଦିଏ କାହିଁକି । କେବେ ସେ ଅବସାଦ ଅନୁଭବ କରି ନାଇଁ । ଏହାକୁ ଯେତେ ଦେଖୁଥିଲେ ମଧ୍ୟ ପ୍ରତ୍ୟେକ ମୁହୂର୍ତ୍ତ ତାକୁ ଜଣାପଡ଼େ ନୂଆ ଓ ଅସାଧାରଣ ।

ବାପା ହଁ ବୋଲି କହିଲେ ନାଇଁ । ନୀରବ ଅନୁମତି ଦେଲେ ନାଇଁ । ଶେଖର ଗୁହାଳ ଦରଜା ପାଖରେ ଠିଆ ହୋଇ ରହିଲା ଏବଂ ଠିଆ ହୋଇ ପଡ଼ିଲା ଜେମା । ସେ ଅସନ୍ତୋଷ ପ୍ରକାଶ କଲା ଏଇ ଭଳି ଗରଗର ହେବାରେ– "ସବୁଦିନ ସକାଳେ ଏଇ ନବରଙ୍ଗ ଚାଲିଥିବ । ବାଛୁରୀ ଏଣେ ଛଟପଟ ହେଉଥିବ ।

ବିକଳ ହେଉଥିବ ଗାଈ । ଦୁହିଁବା ପାଇଁ କେହି ଆସୁ ନ ଥିବେ । ହମ୍ବାରଡ଼ି ଶୁଣି ଶୁଣି ମଣିଷ କେତେ କଲବଲ ହେବ ?''

—''ତୁ ଯାଉଚୁ କୁଆଡ଼େ ?'' ହାଡ଼ିବନ୍ଧୁର ଏ ସ୍ୱରରେ କେବଳ ଧମକ ନ ଥିଲା । ତା' ସହିତ ମିଶିଥିଲା ଆଶଙ୍କା ।

—''ପଘା ଖୋଲିବାକୁ ।'' ଗେରସ୍ତ ଆଡ଼େ ନ ଚାହିଁ ଜେମା ଆଗେଇ ଯାଉଥିଲା ପ୍ରତିଜ୍ଞାବଦ୍ଧ ପଦକ୍ଷେପ ନେଇ ।

—''ଶୁଣ ।'' ପାଟି କଲା ହାଡ଼ିବନ୍ଧୁ— ''ସେମିତି କର ନା, କହିଦେଉଛି । ଆଉ ଟିକେ ଅପେକ୍ଷା କର ।''

ସତକୁ ସତ ଅଟକି ଗଲା ଜେମା । ଏଥର ବିରକ୍ତି ଓ ରାଗ ସହିତ ତା' ସ୍ୱର ପ୍ରକାଶ କଲା ଲୁହର ସ୍ପର୍ଶ— ''କ'ଣ ନା, ଆଉ ଟିକେ ଅପେକ୍ଷା କର ! ତୁମେ ନିଜେ କହୁନ, କେତେ ସମୟ ଆଉ ଅପେକ୍ଷା କରାଯିବ ?'' ସେ ବାସ୍ତବିକ ନୟାନ୍ତ ଦେଖାଗଲା । ଫେରିଆସିଲା କୁଲା ପାଖକୁ ।

ଏବଂ ସେତିକିବେଳେ ବାଲ୍‌ଟିଏ ପାଣି ଧରି ପହଞ୍ଚିଗଲା ମୂରଲୀ । ଗାଁର ପ୍ରତିଷ୍ଠିତ ପରିବାର, ସୁଧାକର ମିଶ୍ରଙ୍କ ଘରେ କାମ କରୁଥିବା ମୂରଲୀ । ତାକୁ ଦେଖି ଏ ତିନିଜଣ ଆଶ୍ୱସ୍ତ ହେଲେ ଟିକିଏ; ମାତ୍ର ଅସନ୍ତୋଷ ନିର୍ବାପିତ ହେଲା ନାହିଁ । ପ୍ରତିବାଦର ମୁହଁ ନେଇ ସେମାନେ ଦେଖିବେ, ହରିଜନ ଘରେ ଥିବା ଗାଈର କ୍ଷୀରକୁ କିପରି ବିଶୁଦ୍ଧ ଓ ତ୍ରୁଟିହୀନ କରାଯିବ, ମିଶ୍ରପରିବାରରେ ବ୍ୟବହାର ଯୋଗ୍ୟ ହେବା ପାଇଁ । ମାଣିକର ପଛ ଦୁଇଗୋଡ଼ ବନ୍ଧା ଯିବ । ବାଛୁରୀକୁ ଅନୁମତି ମିଳିବ, କ୍ଷୀର ପିଇବା ପାଇଁ । ତାହାକୁ ପୃଥକ୍ କରାଯିବା ପରେ ମାଣିକର ପହ୍ନା ଧୁଆଯିବ । ଅବଶିଷ୍ଟ ପାଣି ଛିଞ୍ଚାଯିବ, ଗୁହାଳରୁ ରାସ୍ତା ପର୍ଯ୍ୟନ୍ତ । ଏଇ ବାଗରେ ହରିଜନ ବୋଲି ଜୀବାଣୁ ନଷ୍ଟ କରାଯିବ । ପରେ ପରେ ବାଲ୍‌ଟି ଭିତରକୁ ଆସିଯିବ ଦୁଇ ଲିଟର କ୍ଷୀର । ସେତକ ଦରକାର ମିଶ୍ର ପରିବାର ପାଇଁ । ସେ ଯିବା ପରେ ହାଡ଼ିବନ୍ଧୁ ନେବ ପ୍ରାୟ ଦେଢ଼ ଲିଟର କ୍ଷୀର । ତଥାପି ଯଥେଷ୍ଟ କ୍ଷୀର ଗଚ୍ଛିତ ଥାଏ ବାଛୁରୀ ପାଇଁ ।

—''ଆଜି ଏତେ ଡେରି ହେଲା ଯେ ମୂରଲୀ ?'' ଯଥେଷ୍ଟ ନମ୍ର ହୋଇ, କ୍ଷମା ମାଗିବା ସ୍ୱରରେ ପଚାରିଲା ହାଡ଼ିବନ୍ଧୁ ।

—''ଏତେ ଡେରି ଆଉ କେଉଁଠି ହେଲା ?'' ନିରାସକ୍ତ ସ୍ୱରରେ ଜବାବ ଦେଲା ମୂରଲୀ— ''ସବୁଦିନ ତ ପ୍ରାୟ ଏତିକିବେଳେ ମୁଁ ଆସୁଚି । ହଁ, ଆଜି ଘରେ ଟିକେ କାମ ପଡ଼ିବାରୁ ମିନିଟିଏ ଡେରି ହୋଇଯାଇଥିବ ।''

ଆଉ ଟିକେ ଉପରକୁ ଓଢ଼ଣା ଟାଣି ଜେମା କହିଲା— "ତୁମର କାମ ଅଛି ବୋଲି ଡେରି କରିବ । ଏଣେ ଗାଈ-ବାଛୁରୀ ଦରମଲା ହୋଇ ଯାଉଥିବେ । ଆଉ ଟିକେ ଚଞ୍ଚଳ ନ ଆସିଲେ— ।" ଜେମା ସଂଯତ କଲା ନିଜକୁ । ଶୁଣେଇ ପାରିଲା ନାଇଁ ଚେତାବନୀ ।

—"ଚଞ୍ଚଳ ନ ଆସିଲେ କ'ଣ ହେବ, ଆଗ କୁହ ।" ମୂରଲୀ ଚାଲେଞ୍ଜ କଲା ଏବଂ ଜବରଦସ୍ତ ଟାଣିଆଣିଲା ଗୋଟେ ନୀରବ, ସ୍ତବ୍ଧ ପରିସ୍ଥିତିକୁ । ସୃଷ୍ଟି ହୋଇଗଲା ଟେନ୍‌ସନ୍ ।

—"ଆରେ, ନାଇଁ ମ !" ହାଡ଼ିବନ୍ଧୁ ଚେଷ୍ଟା କଲା ସହଜ କରିବା ପାଇଁ ଉତ୍ତେଜନା— "ହେବ ପୁଣି ଗୋଟେ କ'ଣ ? ତା' କଥାରୁ କ'ଣ ମିଳିବ ?"

ମୂରଲୀ ଅଣ୍ଟାରୁ ଗାମୁଛା ଖୋଲି ମୁହଁ ପୋଛିହେଲା । ହାଡ଼ିବନ୍ଧୁର ନମ୍ରତା ସନ୍ତୋଷଜନକ ନ ଥିଲା ତା' ପାଇଁ । କହିଲା— "ତୋ ଦିମାକ୍ ବହୁତ ବଢ଼ି ଯାଇଚି ହାଡ଼ିଆ । ତୁମ ସାହିର କୌଣସି ଲୋକ ଏମିତି କଥା କହି ନ ଥିଲେ ଯା ପୂର୍ବରୁ । ଜଣେ ବ୍ରାହ୍ମଣ ଘରେ ଠାକୁର ପୂଜା ହେବ । ତୁ କ'ଣ ଭାବୁଚୁ ତୁମେ ଦୁହିଁଥିବା କ୍ଷୀର ନେଇ ଏ କାମ ହେବ ?"

—"ନାଇଁ, ନାଇଁ, ଆମେ କ'ଣ ସେକଥା କହୁଚୁ ?" ହାଡ଼ିବନ୍ଧୁ ଆତ୍ମସମର୍ପଣ କରିସାରିଥିଲା ସେତେବେଳକୁ ।

—"କହୁଚ ତ; ଆଉ ପୁଣି କିପରି କୁହନ୍ତ ? ବଡ଼ କଥା ହେଉଚି, ତୁମେ କ୍ଷୀର ନ ଦେବ ଯଦି ମନା କରିଦିଅ । ମୁଁ ଯାଇ ବାବୁଙ୍କୁ ଏ କଥା କହିଦେବି ।" ଏଥର ସ୍ୱର ନିମ୍ନମୁଖୀ କରି ଯୋଗ କଲା— "ଯୁଗ ଖରାପ ହୋଇଗଲାଣି । ମୁହଁ ବଢ଼ିଯାଉଚି ଛୋଟଲୋକମାନଙ୍କର ।"

ସେ ପଳେଇଗଲା ପରେ ଶେଖର ଚାହିଁଲା ବାପାଙ୍କୁ, ମା'ଙ୍କୁ ଏବଂ ଜାଣିପାରିଲା ନାଇଁ ସେମାନେ ଛୋଟଲୋକ ହେଲେ କିପରି ଏବଂ କାହିଁକି । ଗୋଟେ ନୁହେଁ; ଅଗଣିତ ତୀକ୍ଷ୍ଣ କଣ୍ଟା ସତେଯେପରି ଉଠି ଆସିଲା ତା' ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ । ବାରମ୍ବାର ତାକୁ ସଚେତନ କରି ଦିଆଯାଉ ଥିଲା ଯେ, ସେମାନେ ହରିଜନ । କୌଣସି ପ୍ରତିବାଦ କିମ୍ବା ଅଭିଯୋଗ ସେମାନଙ୍କ ଚରିତ୍ରରେ ରହିବା ବିପଜ୍ଜନକ ଓ ପରଂପରା ବିରୋଧୀ ।

ସ୍କୁଲ ଯିବା ପାଇଁ ପ୍ରସ୍ତୁତ ହେଉଥିଲା ଶେଖର ଏବଂ ସବୁଦିନ ଭଳି ମା' କୁଣ୍ଡେଇ ଦେଉଥିଲା ତା' ମୁଣ୍ଡ । ପଚାରିଲା— "ଏଇ ଯେଉଁ ନୂଆ ମାଷ୍ଟ୍ର ଆସିଚନ୍ତି ତୁମ ସ୍କୁଲକୁ; ସେ କୁଆଡ଼େ ଭାରି ରାଗୀ ଲୋକ ?"

—"କାଇଁ ? ନାଇଁ ତ !" ଶେଖର ଉତ୍ତର ଦେଇ ପଚାରିଲା— "ତୋତେ କିଏ କହିଲା ଏ କଥା ?"

ତା' ମୁହଁ, ବେକ ଓ କାନରୁ ତେଲଚିକିଟା ପଣତରେ ପୋଛିବା ବେଳେ ଜେମା ଜବାବ ଦେଲା— "ଏମିତି ଶୁଣୁଥିଲି । ପିଲାମାନଙ୍କୁ ବହୁତ ପିଟୁଚନ୍ତି ବୋଲି କିଏ ଜଣେ କହୁଥିଲା ।"

—"ହଁ । ପାଠ ନ ପଢ଼ିଥିଲେ ପିଟନ୍ତି ।" ଶେଖର ସେତେବେଳକୁ ଛାଟିପିଟି ହେଲାଣି ସ୍କୁଲ ଯିବ ବୋଲି । ମୁହଁ, ବେକ ପୋଛା ହେବାବେଳେ ସେ ସବୁଦିନ ଅଣନିଃଶ୍ୱାସୀ ହୋଇପଡ଼େ । ମା'ର ଦୁଇ ହାତ ଠେଲିବାକୁ ଅସଫଳ ଚେଷ୍ଟା କରେ ।

ପ୍ରାୟ ପନ୍ଦରଟି ଛୋଟ ପରିବାରକୁ ନେଇ କେଉଁ ମାନ୍ଧାତା ଅମଳରୁ ଗଢ଼ି ଉଠିଥିବା ହରିଜନ ସାହିରୁ ଶେଖର ବାହାରିପଡ଼ିଲା ସ୍କୁଲ ଯିବା ପାଇଁ । ପରିଷ୍କାର ପେଣ୍ଟ-କମିଜ । ପଚାଶ କିଲୋମିଟର ଦୂର ଜିଲ୍ଲା ସଦର ସହରୁମାରୁ କିଣା ଯାଇଥିବା ସ୍କୁଲ ବ୍ୟାଗ୍ । ଦୁଇ କାନ୍ଧ ଉପର ଦେଇ ଏହାର ଫିତା ବ୍ୟାଗ୍‌କୁ ଧରି ରଖେ ଶେଖରର ପିଠି ଉପରେ ।

ଶେଖର ଗାଁର ମୁଖ୍ୟ ରାସ୍ତା ଉପରେ ପାଦ ଦେବାବେଳେ ଦେଖିବ ତା' ଆଗରେ ଦଳେ ସ୍କୁଲ ପିଲା ବିପୁଳ ଉତ୍ସାହର ସହିତ କଥାବାର୍ତ୍ତା, ହସଖୁସି ହୋଇ ଯାଉଥିବାର । ତା' ପଛରେ ମଧ୍ୟ ସେମିତି ସ୍କୁଲ ପିଲା ଥାଆନ୍ତି । ଏମାନେ ସ୍କୁଲ ଯାଆନ୍ତି, ଫେରନ୍ତି ସଂଘବଦ୍ଧ ଭାବରେ, ପରସ୍ପରକୁ ଡକାଡକି ହୋଇ । ଶେଖରର କୌଣସି ସଂପର୍କ ନ ଥାଏ ଏମାନଙ୍କ ସହିତ ସେତେବେଳେ । ସେ ସଚେତନ ଥାଏ ଯେ ଏକ ଅଲଂଘନୀୟ ବିଭାଜନକାରୀ ଘେର ଭିତରେ ସେ ସୀମାବଦ୍ଧ । ତେବେ ଯେଉଁଦିନ ଏମାନେ ତା'ର ନୂଆ ସ୍କୁଲ ବ୍ୟାଗ୍ ଦେଖିଥିଲେ, ସେ'ଦିନ ସେମାନେ ଲୁଚେଇ ପାରି ନ ଥିଲେ କୌତୂହଳ ଓ ଅନୁସନ୍ଧିତ୍ସା । କେହି ଜଣେ ନାହିଁ ନ ଥିବା ଜିନିଷଟେ ଆବିଷ୍କାର କଲା ଭଳି ଚିଲେଇ ଉଠିଥିଲା— "ଆରେ, ଏଣେ ଦେଖ ! ଶେଖରର ନୂଆ ସ୍କୁଲ ବ୍ୟାଗ୍ ।"

—"କାଇଁ ?" ପାଞ୍ଚ-ଛ ଜଣଙ୍କର ଜିଜ୍ଞାସା । ପର ମୁହୂର୍ତ୍ତରେ ରାସ୍ତା ଉପରେ ସୃଷ୍ଟି ହୋଇ ଯାଇଥିଲା ଗୋଟେ ବଳୟ, ଶେଖରକୁ କେନ୍ଦ୍ର କରି । "ବ୍ୟାଗ୍‌ଟା ତଳେ ରଖ । ଆମେ ଟିକିଏ ଦେଖିବୁ ।" ଶେଖର ହାତରୁ କୌଣସି ଜିନିଷ ସିଧାସଳଖ ନେବା ନିଷେଧ ଥିବାରୁ ସେ ତାହାକୁ ତଳେ ରଖିଥିଲା ଆଦୌ ଅପମାନିତ ନ ହୋଇ । ବରଂ ତା' ମୁହଁ ଉପରେ ସ୍ପଷ୍ଟ ହୋଇ ପଡ଼ିଥିଲା ଏକ ବିଭୋର, ତୃପ୍ତ ଭାବ ।

—"କଳା ରଙ୍ଗର ବ୍ୟାଗ୍ । ଛୁଇଁଲେ କିଛି ଦୋଷ ନାହିଁ ।" କେହି ଜଣେ କହିଥିଲା ଏଇ ବିଜ୍ଞ କଥା । ସେମାନେ ତାହାକୁ ତନ୍ନ ତନ୍ନ କରି ଦେଖିଥିଲେ । ଚେନ୍ ଖୋଲିଥିଲେ, ବନ୍ଦ କରିଥିଲେ । କଲମ-ପେନ୍‌ସିଲ୍ ରଖିବା ସ୍ଥାନ ଦେଖିଥିଲେ । କେହି ଜଣେ ପଚାରିଥିଲା— "ବାହାର ପାଖରେ ପକେଟ ଭଳି ଦେଖା ଯାଉଥିବା ଏଇଠି କ'ଣ ରଖାଯିବ ?"

—"ଟିଫିନ୍ ।" ଗମ୍ଭୀର ହୋଇ ଶେଖର ଜବାବ ଦେଇଥିଲା ଏବଂ ଅନ୍ୟମାନଙ୍କର ନିର୍ବୋଧ, ମୂର୍ଖ ମୁହଁଗୁଡ଼ିକୁ ଚାହିଁ ବେଶ୍ ଆମୋଦିତ ହୋଇଥିଲା ।

ବୈଶିଷ୍ଟ୍ୟହୀନ ସ୍କୁଲ । ବଙ୍କା ହୋଇଯାଉଚି ଗୁଅ, ବତା । ଭାଙ୍ଗି ଯାଉଚି ସିମେଣ୍ଟ ଟାଇଲ । ଢଳି ପଡୁଚି ଦ୍ୱାର ବନ୍ଧ । ଦରଜା ଓ ଝରକା କବାଟ ଲାଗୁ ନାହିଁ ଠିକ୍ ଭାବରେ । ଚକଡ଼ା ଚକଡ଼ା ହୋଇ ଉଠିଯାଉଚି ସିମେଣ୍ଟ ଚଟାଣ । କ୍ଲାସ୍‌ରୁମ୍ କାନ୍ଥ ଉପରେ ମୁଣ୍ଡ ଘଷି ହୋଇ ତେଲ ଚିକିଟା ଚିହ୍ନ । କେଉଁଠି କେମିତି ଦୁଃଖୀ, ମୁମୂର୍ଷୁ ଫୁଲ ଗଛଟେ । ପ୍ରଥମେ ସ୍କୁଲ ଘର ଓ ରାସ୍ତା ସଫେଇ । ତା'ପରେ ପ୍ରାର୍ଥନା ।

ଦ୍ୱିତୀୟ ପିରିଅଡ଼ରେ ବାଇଧର ମାଷ୍ଟ୍ରେ ସତେଯେପରି ସମ୍ମୁଖୀନ ହେଲେ ଏକ ମାରାତ୍ମକ ଦୁର୍ବିପାକର । ଶେଖରକୁ ଛାଡ଼ିଦେଲେ ଆଉ କେହି ଗଣିତ କରି ନାହାନ୍ତି । ତାଙ୍କର ମୁହଁ ଝାଳେଇଲା, ଦେଖାଗଲା ଲାଲ । ବିଭତ୍ସ ହୋଇଗଲା । ଶୋଷ ବଢ଼ି ଯାଇଥିବା, ହୃତ୍‌ସ୍ପନ୍ଦନ ପ୍ରାୟ ଭୂମିକମ୍ପରେ ପରିଣତ ହୋଇ ଯାଇଥିବା ପିଲାମାନେ ଦେଖିଲେ, ତାଙ୍କ ସାମନାରେ ମାଷ୍ଟ୍ର ଠିଆ ହୋଇ ନାହାନ୍ତି । ତାଙ୍କ ସ୍ଥାନରେ ଠିଆହୋଇଚି ଗୋଟେ ଦୁର୍ଦ୍ଦାନ୍ତ ଆତଙ୍କ ।

—"ଗଣିତ କାହିଁକି କରିନୁ ?"

—"ଆସିଲା ନାହିଁ ।" ଓଠ ଓଦା କରିବାକୁ ଚେଷ୍ଟା କରି କାନ୍ଦିବା ସ୍ୱରରେ ଜବାବ ଦେଲା ପିଲାଜଣକ । ମାଷ୍ଟ୍ରଙ୍କ ଡାହାଣ ହାତ ଉପରକୁ ଉଠିବା ମାତ୍ରେ, ସେ ଦୁଇ ହାତରେ ଗାଲ କାନ ଓ ମୁଣ୍ଡ ଘୋଡ଼େଇବାକୁ ଚେଷ୍ଟା କଲା । କିନ୍ତୁ କିଛି ଘଟିଲା ନାହିଁ । ପିଲାଟି ଆଖି ଖୋଲି ଆଶ୍ୱସ୍ତ ହେଲା ଯେ, ପାଖ ପିଲାଜଣକୁ ସେଇ ପ୍ରଶ୍ନ ପଚରାଯାଉଚି ।

—"ଆସିଲା ନାହିଁ ।"

—"ତୋର କ'ଣ ହେଲା ?"

—"କାଗଜ-କଲମ-ବହି ନାହିଁ । ବାପାଙ୍କ ପାଖରେ ପଇସା ନାହିଁ । କିଣି ପାରୁ ନାହାନ୍ତି ।"

—"ଜ୍ୱର ହେଲା ।"

—"ମାମୁ ଘରକୁ ଯାଇଥିଲି ।"

ମାଷ୍ଟ୍ରେ ଡାକିଲେ ଶେଖରକୁ । ନିର୍ଦ୍ଦେଶ ଦେଲେ— "ସମସ୍ତଙ୍କ କାନ ମୋଡ଼ି ଦୁଇ ଗାଲରେ ଦୁଇଟି ଲେଖା ଚଟକଣା ଦେ ।"

ଶେଖର କେବଳ ଇତସ୍ତତଃ ନୁହେଁ; ରୀତିମତ ଭୟଭୀତ ଦେଖାଗଲା । ସେ ବାଇଧର ମାଷ୍ଟ୍ରଙ୍କ ମୁହଁକୁ ଚାହିଁଲା କାକୁସ୍ଥ ହୋଇ । ନୀରବ ପ୍ରାର୍ଥନା କଲା ଶାସ୍ତିବିଧାନର ଏଇ ପଦ୍ଧତିକୁ ବଦଳାଇବା ପାଇଁ ।

—"ଠିଆ ହେଲୁ କାହିଁକି ? ଯା ।" ଖୁବ୍ କଠୋର ଥିଲା ଏ ସ୍ୱର । ଶେଖର କହିପାରିଲା ନାହିଁ କିଛି ।

ଜଣକର କାନ ମୋଡ଼ିବା ପରେ ପ୍ରାୟ ଚିତ୍କାର କରି ପକାଇଲେ ମାଷ୍ଟ୍ରେ— "କାନ ମୋଡ଼ି ଆସୁ ନାହିଁ ତୋତେ । ଏଠିକି ଆ । ଶିଖେଇ ଦେଉଚି ।"

ଶେଖର ଆସିଲା ନାହିଁ । ଏଥରର ନିର୍ଦ୍ଦେଶ— "ମୂଳରୁ ଆରମ୍ଭ କର ଭଲ କରି । ରାସ୍ତାରେ ଯାଉଥିବା ଲୋକ ଯେମିତି ଶୁଣିପାରିବ ଚଟକଣାର ଶବ୍ଦ ।"

ଚାରିଟା । ସ୍କୁଲ ଛୁଟି । ନାରାୟଣ ପଣ୍ଡା, ସୁଧାକର ମିଶ୍ର; ତା'ପରେ ଶ୍ରୀଧର ରାଉତ, ଦେବାନନ୍ଦ ପ୍ରଧାନ ଇତ୍ୟାଦିଙ୍କର ପିଲାମାନେ ସିଧାସଳଖ ଘରେ ପଶିପାରିବେ ନାହିଁ । ଠିଆ ହୋଇ ରହିବେ ବାହାର ପାଖ ଦରଜା ନିକଟରେ । ଧୁଆ ଯାଇଥିବା ପୋଷାକ ଅଣାଯିବ ଘରୁ । ଯେଉଁ ପୋଷାକ ପିନ୍ଧି ସେମାନେ ସ୍କୁଲ ଯାଇଥିବେ, ତାହା ସେଇଠି ବଦଳାଯିବ ଧୁଆ ହେବା ପାଇଁ ।

ମାତ୍ର ଅଧଘଣ୍ଟାଏ ପରେ ସେ'ଦିନ ସ୍କୁଲରେ ଯେଉଁ ସର୍ବନାଶ ଘଟିଥିଲା, ତାହାର ବିବରଣୀ ପ୍ରଚାରିତ ହୋଇଗଲା ଗାଁରେ ।

—"ହରେ ରାମ, ହରେ କୃଷ୍ଣ ।" ଅସହାୟ ହୋଇ ଉଚ୍ଚାରଣ କଲେ ପୁରୋହିତ ନିତ୍ୟାନନ୍ଦ ମିଶ୍ର । କାନରେ ପଇତା ଗୁଡ଼େଇଲେ । କଂସା ଡାଳ ଧରିଲେ ଏବଂ ସ୍କୁଲରେ କାନମୋଡ଼ା-ଚଟକଣା ଖାଇଥିବା ନାତିକୁ ପରାମର୍ଶ ଦେଲେ— "ଚାଲ, ଆଗ ପୋଖରୀକୁ ଚାଲ । ଗାଧୋଇସାରିବା ପରେ ଅନ୍ୟ ବ୍ୟବସ୍ଥା କରାଯିବ ।"

ସଂଧ୍ୟାବେଳକୁ ଆପଣାଛାଏଁ ଜନ୍ମ ନେଇଥିଲା ଗୋଟେ ମିଟିଙ୍ଗ୍ ସୁଧାକର ମିଶ୍ରଙ୍କ ଅଗଣାରେ । ସମସ୍ତେ ଏକମତ ହୋଇଗଲେ ଯେ କାନମୋଡ଼ା-ଚଟକଣାର ଶିକାର ହୋଇଥିବା ପିଲାମାନଙ୍କର ଜାତି ନଷ୍ଟ ହୋଇଚି ଏବଂ ସେମାନେ ଅଛୁଆଁ ହୋଇ ପଡ଼ିଚନ୍ତି । ସେମାନଙ୍କୁ ଗୋବରପାଣି ପିଇବାକୁ ହେବ । ସେମାନଙ୍କ ଉପରେ ଛିଞ୍ଚା ହେବ ଗଙ୍ଗାଜଳ । ତାହା ନ ମିଳିଲେ, ଠାକୁରଙ୍କ ଚରଣାମୃତରେ ବିଶୋଧନ କାର୍ଯ୍ୟ ସଂପାଦିତ ହେବ ।

ଘୋର ଆପତ୍ତି ଉଠାଇଲେ ନିତ୍ୟାନନ୍ଦ ପୁରୋହିତେ । କହିଲେ– ‘‘ସତେ ? ଏତିକିରେ ଏ କାମ ହୋଇଯିବ ବୋଲି ତୁମେ ଭାବୁଚ ? କେମିତି ହେବ, ମୁଁ ପଚାରୁଚି । ସେ ପାଣଟୋକା ଅଜାଣତରେ ଏମିତି କରିଥିଲେ ଗୋବର ପାଣି କିମ୍ବା ଗଙ୍ଗାଜଳ ଯଥେଷ୍ଟ ହୋଇଥାନ୍ତା । ସେ ପାଷଣ୍ଡ କିନ୍ତୁ ଜାଣି ଜାଣି ଏମାନଙ୍କୁ ପିଟିଚି । ପ୍ରାୟଶ୍ଚିତ୍ତ ଦରକାର । ପିଲାମାନେ ଲଣ୍ଡା ହେବେ । ହୋମ ହେବ । ସେମାନେ ନୂଆ ଲୁଗା ପିନ୍ଧିବେ । ବ୍ରାହ୍ମଣ ଭୋଜନ ହେବ ।’’

–‘‘ମୁଁ କହୁଚି, ସେ ଶଳା ମାଷ୍ଟ୍ରକୁ ଦିଅ ଭଲ କରି ପାନେ ।’’ ପ୍ରସ୍ତାବ ବାଢ଼ିଲା ଜଣେ– ‘‘ତାକୁ ଆଗ ପଚରାଯାଉ, ସେ ଏଠାକୁ ପାଠ ପଢ଼େଇବାକୁ ଆସିଚି ନା ବିଭ୍ରାଟ ସୃଷ୍ଟି କରିବାକୁ । ଦଶ-ବାର ବର୍ଷ ହେଲା ସ୍କୁଲ ହେଲାଣି; କିନ୍ତୁ ଏମିତି ଅଘଟଣ ଘଟି ନ ଥିଲା କେବେ ।’’

ପଚାରିଲେ ନିତ୍ୟାନନ୍ଦ ପୁରୋହିତେ– ‘‘ସ୍କୁଲ ହେବା ବେଳକୁ ମୁଁ ତୁମ୍ଭମାନଙ୍କୁ କ’ଣ କହିଥିଲି ?’’ ଉତ୍ତର ପାଇଁ ସେ ଟିକିଏ ନୀରବ ରହିଲେ । ଚାହିଁଲେ ସମସ୍ତଙ୍କ ମୁହଁକୁ । କେହି କିଛି ନ କହିବାରୁ ନିଜ ପ୍ରଶ୍ନର ଉତ୍ତର ଦେଲେ– ‘‘ମୁଁ କହିଥିଲି, ଆମ ଗାଁରେ ସ୍କୁଲ ଫୁଲ୍ କିଛି ଦରକାର ନାହିଁ । ଭବିଷ୍ୟତରେ ଏଇଟା ଆମ୍ଭମାନଙ୍କ ପାଇଁ ଗୋଟେ କାଳ ହେବ । କେହି ଶୁଣିଲେ ସେତେବେଳେ ମୋ କଥା ? ଏଥର ସମ୍ଭାଳ । କଥା ଆସି କେଉଁଠି ହେଲାଣି, ଦେଖ । କ’ଣ ନା ପିଲାମାନେ ଶିକ୍ଷିତ ହେବେ । ଶିକ୍ଷିତ ହୋଇ କ’ଣଟେ କରିବେ ? ଘୋଡ଼ା ଡିମ୍ବ ?’’ ତିକ୍ତ ଦେଖାଗଲା ତାଙ୍କର ଲୋଚାକୋଚା ମୁହଁ । ସଦ୍ୟ ଗାଧୋଇସାରି ସେ କପାଳରେ, ବେକରେ, ଦୁଇ ହାତରେ ଚନ୍ଦନ ଲଗାଇ ଥିଲେ । ପିଣ୍ଡାରେ ଜଳୁଥିବା ଲଣ୍ଠନ ଧକେଇ ହେଉଥିଲା ବେଳେବେଳେ । କାଚର ଉପର ଭାଗ କଳା ହୋଇ ଯାଉଥିଲା । ଏହା ଏକ ଅନିବାର୍ଯ୍ୟ ଅନ୍ଧାର ଭଳି ଅଧିକାର କରିବାକୁ ଚେଷ୍ଟା କରୁଥିଲା ସମୁଦାୟ କାଚକୁ । ପ୍ରକାରାନ୍ତରେ ସୂଚେଇ ଦେଉଥିଲା ଯେ ସବର୍ଣ୍ଣମାନଙ୍କର ନିର୍ମଳତା ଘୋଡ଼େଇ ହୋଇ ପଡୁଚି ଗୋଟେ କାଳିମା ତଳେ । ନିତ୍ୟାନନ୍ଦଙ୍କର ଚନ୍ଦନ ଟିପା ଝାପ୍‌ସା ହୋଇ ଯାଉଥିଲା ଚୂଡ଼ାନ୍ତ ସମୟ ଆସିଯାଉଥିବା ଲଣ୍ଠନର ଧୂଆଁସର୍ବସ୍ୱ ଆଲୁଅରେ ।

–‘‘ଯା, ଡାକିଆଣ ସେ ମାଷ୍ଟ୍ରକୁ ।’’ ନିର୍ଦ୍ଦିଷ୍ଟ ଭାବରେ କାହାକୁ ଦିଆଯାଇ ପାରିଲା ନାହିଁ ଏ ଆଦେଶ ।

–‘‘କିରେ, ଯାଉନୁ ?’’

–‘‘ମୁଁ ଯାଇପାରିବି ନାହିଁ ।’’ ପଛଘୁଞ୍ଚା ଦେଲା ଜଣେ ।

–‘‘ହଉ, ତୁ ଯା ।’’

—"ମୁଁ ? ଦେଖୁଚ ପରା, ଚାଲିପାରୁ ନାହିଁ । କଣ୍ଟା ମାଡ଼ିଦେଇଚି ।"

—"ସନା, ତୁ ଗଲୁ । ଡାକି ଆଣିବୁ ।"

—"ମୁଁ ଏକୁଟିଆ ଯାଇପାରିବି ନାହିଁ । ଚାରି-ପାଞ୍ଚ ଜଣ ବାହାରିଲେ ଯାଇ ଯେଉଁ କଥା ।"

କୁଣ୍ଠିତ ହୋଇ ଛ'-ସାତ ଜଣ ଯିବା ପରେ ଅବଶିଷ୍ଟ ଲୋକଙ୍କୁ କାବୁ କଲା ଉଦ୍‌ବେଗ ଓ ଅସହାୟ ଭାବ । ବାଇଧର ମାଷ୍ଟ୍ରେ ପାଇଜାମା ଓ ଗାରଗାରିଆ ହାଫ୍ କମିଜ ପିନ୍ଧନ୍ତି । ପୋଲିସ୍ ଅଫିସର ଯେମିତି ଟୋପି ପିନ୍ଧନ୍ତି, ତାଙ୍କର ସେମିତି ଟୋପିଟେ ଅଛି । ତାଙ୍କର ରାଲେ ସାଇକେଲଟା କୁଆଡ଼େ ଆମଦାନି କରାଯାଇଚି ବିଲାତରୁ । ତାଙ୍କ ଭଳି ସ୍କୁଲର ଅନ୍ୟ ଦୁଇଜଣ ଶିକ୍ଷକଙ୍କ ଘର ବହୁତ ଦୂର ହୋଇଥିବାରୁ ସେମାନେ ରହନ୍ତି ସ୍କୁଲ ଅଫିସ୍‌ରେ । ରୋଷେଇବାସ ପାଇଁ ପାଖରେ ଛୋଟ ଘରଟେ ଅଛି ।

ତାଙ୍କୁ ସତକୁ ସତ ଆସୁଥିବାର ଦେଖି ଜଣେ ସଚେତନ ହେଲା ଯେ, ଅନେକବେଳୁ ସେ ପରିସ୍ରା କରି ନାହିଁ । ଅନ୍ୟ ଜଣକୁ ଶୋଷ ଲାଗିଲା । ଘରେ ଗୋଟେ ଜରୁରୀ କାମ ରହିଯାଇଚି ବୋଲି ମନେ ପଡ଼ିଗଲା ଆଉ ଜଣକର ।

—"କ'ଣ ଗୋଟେ ମିଟିଙ୍ଗ୍ ହେଉଚି ବୋଲି ଶୁଣିଲି ।" କହିଲେ ବାଇଧର ମାଷ୍ଟ୍ରେ— "କି ମିଟିଙ୍ଗ?"

ତାଙ୍କର ଶାନ୍ତ-ଭଦ୍ର ସ୍ୱର ପରିସ୍ଥିତିକୁ ଯଥେଷ୍ଟ ହାଲୁକା କରିପାରିଲା । ତେବେ କିଛି ସମୟ ପାଇଁ ସେମାନେ ଅଭିଯୋଗ ଉପସ୍ଥାପନ କରିପାରିଲେ ନାହିଁ । ଚାହିଁଲେ ପରସ୍ପରକୁ ।

—"ମାଷ୍ଟ୍ରେ ।" ଦୁଃସାହସିକ ପଦକ୍ଷେପ ନେଲେ ପୁରୋହିତ— "କଥାଟା ଠିକ୍ ହେଲା ନାହିଁ । ଛାର ଗୋଟେ ପାଣପିଲା ହାତରେ ଆମ ପିଲାଙ୍କୁ ମାଡ଼ ଖୁଆଇଲ ? ଗାଁ ଲୋକେ ତୁମ ଉପରେ ଗରମ ହୋଇ ରହିଚନ୍ତି । ଭଲ ହେବ, ତୁମେ ଯଦି ଆଉ କେଉଁ ସ୍କୁଲକୁ ପଳେଇଯାଆନ୍ତ । ତୁମ କାମ ପାଠ ପଢ଼େଇବା; ଆମ ଜାତି ନଷ୍ଟ କରିବା ନୁହେଁ ।"

କେହି ଭାବି ନ ଥିଲେ ଏ କଥାର ପ୍ରଭାବ ଓଲଟା ହେବ ବୋଲି । ବାଇଧର ମାଷ୍ଟ୍ରେ ପଚାରିଲେ— "ତୁମେ ଥାନା ଦେଖିଚ ?"

—"ହଁ ।"

—"ସେଠାରେ ପୋଲିସ୍ ଥାଆନ୍ତି ବୋଲି ଜାଣିଚ ?"

—"ଜାଣିଚୁ ।"

—"ପୋଲିସ୍ ପାଖରେ ହାତକଡ଼ା ଥାଏ ।" ପ୍ରକାଶ କଲେ ମାଷ୍ଟ୍ରେ— "ଦଉଡ଼ି ମଧ୍ୟ ଥାଏ । ମୁଁ ଥାନାରେ ଖବର ଦେବା ମାତ୍ରେ ତୁମ୍ଭମାନେ ବନ୍ଧା ହେବ, ହାତକଡ଼ା ଲାଗିବ । କ'ଣ, ବୁଝିପାରୁଚ ନା ନାହିଁ ? ତୁମର ଏଇ ଗଡ଼ଜାତି ମୂଳକ ବାସ୍ତବିକ ହେଉଚି ଅନ୍ଧାର ମୂଳକ । ରଜାଙ୍କ ଶାସନ ତୁମସମସ୍ତଙ୍କୁ ମୂର୍ଖ ଆଉ ଓଲୁଙ୍କ ବୋକଚା ବୁହା କରି ରଖିଚି । ଆଉ କେବେ ପାଣ ବୋଲି କହିବ ନାହିଁ । ତୁମେ ଜାଣିନ, ସରକାର ଏମାନଙ୍କ ପାଇଁ କ'ଣ ସବୁ କରି ସାରିଲାଣି । କ'ଣନା ଜାତି ଚାଲିଗଲା ! ଯୁଗ ଆସି କେଉଁଠି ହେଲାଣି । ଏଣେ ଏମାନେ ରହିଚନ୍ତି ଅନ୍ଧାର ଭିତରେ ।"

ଯା ପରେ ଆଉ କାହାର ସାହସ ହେଲା ନାହିଁ, କଥାଟା ଆଗକୁ ବଢ଼େଇବା ପାଇଁ । ମାଷ୍ଟ୍ରେ ଏ ବାବଦରେ ଛୋଟକାଟର ଭାଷଣଟିଏ ଦେଲେ । ମହାତ୍ମାଗାନ୍ଧୀ, ଅସ୍ପୃଶ୍ୟତା, କୁସଂସ୍କାର ଇତ୍ୟାଦି ଉପରେ । କାହା ଉପରେ ଟିକିଏ ହେଲେ ପ୍ରଭାବ ପକାଇ ପାରିଲା ନାହିଁ ଏସବୁ କଥା । ବରଂ ସେ ପଳେଇଯିବା ପରେ ଡକା ହେଲା ହାଡ଼ିବନ୍ଧୁକୁ ।

ତାକୁ ସତର୍କ କରି ଦିଆଗଲା ଯେ ଶେଖରକୁ ସେ କଣ୍ଟ୍ରୋଲ୍ କରି ରଖୁ । ମାଷ୍ଟ୍ର କହିବା ମାତ୍ରେ ଏତେଗୁଡ଼ାଏ ପିଲାଙ୍କୁ ସେ କେଉଁ ଅକଲରେ କାନମୋଡ଼ି ଚଟକଣା ବସାଇପାରିଲା ? ଏ କାମ ସେ କରିପାରିବ ନାହିଁ ବୋଲି କହିପାରିଥାନ୍ତା ସେହି ଅଖାଡୁଆ ମାଷ୍ଟ୍ରକୁ । ଏହା ଦ୍ୱାରା ତା' ପରିବାର ଅଯଥାରେ ପାପ ଅର୍ଜନ କରୁଚି ଏବଂ ନରକକୁ ଯାଇ ଘାଣ୍ଟିଚକଟି ହେବା ପାଇଁ ବାଟ ସଫା କରୁଚି । ଏଡ଼େ ସାନ ପିଲାଟା ଆଜିଠୁ ଖରାପ ହେବା ଆରମ୍ଭ କଲାଣି ।

ସେମାନେ ସମସ୍ତେ ବ୍ୟଥିତ ହେଲେ । ସେମାନେ ଦରଦୀ ଥିଲେ ଏଇ କାରଣରୁ ଯେ ହାଡ଼ିବନ୍ଧୁ ଭଳି ଜଣେ ନମ୍ର, ଶାନ୍ତ, ସଚ୍ଚୋଟ ଓ କଠୋର ପରିଶ୍ରମୀର ପରିବାର ଲାଇନ୍‌ଚ୍ୟୁତ ହେଉଚି । ଶାସ୍ତ୍ର ଅନୁସାରେ ନ ଚଳିଲେ ଧର୍ମ ରହିବ କେମିତି ?

ଜେମା ଶୁଣୁଥିଲା ମନଯୋଗୀ ହୋଇ । ହାଡ଼ିବନ୍ଧୁ ଚୁପ୍ ହେବା ପରେ ପଚାରିଲା — "ବାସ୍ ? ଏତିକି କଥା ? ତା' ପରେ ସେମାନଙ୍କ ଆଗରେ ଲମ୍ବ ହୋଇ ଗୋଡ଼ତଳେ ପଡ଼ିବା ପାଇଁ ତୁମକୁ କୁହାଗଲା ?"

—"ହଁ ।" ହାଡ଼ିବନ୍ଧୁ ସ୍ୱରରେ ଅବଶୋଷ ନ ଥିଲା । ଅପମାନିତ ହୋଇଚି ବୋଲି କ୍ଷୋଭ ନ ଥିଲା ।

—"ଆଉ, ସେମାନେ କହିବା ମାତ୍ରେ ତୁମେ ଗୋଡ଼ତଳେ ପଡ଼ିଗଲ । ନୁହେଁ ?" ଜେମାର ଏଇ କଥାରେ ଅବିଶ୍ୱାସ କିମ୍ବା ବିସ୍ମୟ ନ ଥିଲା । ଥିଲା ଗୋଟେ ପ୍ରତିବାଦ । ଅପମାନଜନକ ଆତ୍ମସମର୍ପଣର ଶିକାର ହୋଇଥିବା ଗେରସ୍ତକୁ ସେ କ'ଣ କହିବ, ତାହା ସ୍ଥିର କରିପାରିଲା ନାହିଁ । ତୁମେ କେତେ ସରଳ, ନିରୀହ, ଶିଶୁସୁଲଭ ଆଜ୍ଞାବହ ! ତୁମେ କେତେ ନିର୍ବୋଧ, କେତେ ଦୟନୀୟ ! କେଉଁ କଥା କହିଥାନ୍ତା ଜେମା ? ଏଇତ, ଗୋଟେ ବଳିଷ୍ଠ ଆବେଗରେ ସେ ଅଥୟ ହୋଇ ପଡୁଚି । ସଂପ୍ରସାରିତ ହୋଇଯାଉଚି ଯେପରି । ହାଡ଼ିବନ୍ଧୁକୁ ଦୁଇ ହାତରେ ସେ ଉଠାଇଆଣନ୍ତା ତଳୁ, ଯେମିତି କିଛି ବର୍ଷ ପୂର୍ବେ ଶେଖରକୁ ଉଠାଇ ଆଣୁଥିଲା । ଦୁଇ ହାତର ପରିଧି ମଧ୍ୟରେ ତାକୁ ଧରି ରଖନ୍ତା ଛାତି ଉପରେ ନିବିଡ଼ତାର ସହିତ ।

ରାସ୍ତାର କଣ୍ଟା, ବିଲର କାଦୁଅ, ଆକାଶର ଘଡ଼ଘଡ଼ି । ଏସବୁ ତୁମ ପାଖକୁ ନ ଆସୁ । ଏ ଗାଁର କୌଣସି ଲୋକ ତୁମ ପୌରୁଷ, ତୁମ ଆତ୍ମା, ତୁମର ଆବେଗଗତ ସତ୍ତାକୁ କ୍ଷତବିକ୍ଷତ ନ କରୁ । ତୁମେ ଏ ଯାଏଁ ପାକଳ ହୋଇପାରିନ । ତୁମେ ଏ ପର୍ଯ୍ୟନ୍ତ ମୁଁ ବୋଲି ନିଜକୁ ଜାହିର କରିପାରିନ । ତୁମଠାରେ ଏ ପର୍ଯ୍ୟନ୍ତ ରହିଚି ସବୁ କଥାକୁ ଗ୍ରହଣ କରିନେବାର, ସବୁ କଥାକୁ ବିଶ୍ୱାସ କରିବାର ସୁକୁମାର, ନରମ ମାନସିକତାଟିଏ । ତୁମକୁ ଏବେ ମଧ୍ୟ କୁହାଯାଇପାରନ୍ତା ରାକ୍ଷସ, ଭୂତ-ପ୍ରେତର କାହାଣୀ । ଦିନରେ ମେଣ୍ଢା, ରାତିରେ ଭେଣ୍ଡା କରାଯାଇପାରୁଥିବା ଅଲୌକିକ କୌଶଳ । ସାତତାଳ ପଙ୍କ, ଫରୁଆ । ତୁମେ ଏବେ ମଧ୍ୟ ପଚାରନ୍ତ, ରାକ୍ଷସ ରହୁଥିବା ଅଗ୍ନାଅଗ୍ନି ବନସ୍ତ କେଉଁଠି ଅଛି । ପ୍ରସ୍ତାବ ଦିଅନ୍ତ, ଏତେ ଗହୀର ପୋଖରୀ ଆଡୁ ଥରେ ବୁଲିଆସିବା ପାଇଁ ।

—"ତୁ କାନ୍ଦୁଚୁ କ'ଣ ପାଇଁ ?" ଭୟଭୀତ ହୋଇପଡ଼ିଥିଲା ହାଡ଼ିବନ୍ଧୁ । ସେ ଅନେକ ସମୟରେ ଠିକ୍ ଭାବରେ ବୁଝିପାରେ ନାହିଁ ଘରଣୀକୁ । ପାଖରେ ବସିଥିବ । କଥାବାର୍ତ୍ତା କରୁଥିବ, ହସୁଥିବ, ଗରଗର ମଧ୍ୟ ହେଉଥିବ । ସେତେବେଳେ ତାକୁ ବୁଝିହୁଏ, ଜାଣିହୁଏ ଠିକ୍ ଭାବରେ । ସେତେବେଳେ ସେ ସଂଯୋଜିତ ହୋଇଥାଏ ମାଟି ସହିତ, ସଂସାର ସହିତ । ଝାଡୁ, ଚାଉଳବଟା, କୁଣ୍ଡା-ତୋରାଣି, ଶାଗକଟା । ତାକୁ ସେତେବେଳେ ଅନୁଭବ କରିହୁଏ । ମାତ୍ର ଏମିତି ମୁହୂର୍ତ୍ତ ମଧ୍ୟ ଆସେ, ଯେତେବେଳେ ସେ ପାଖରେ ଅଛି; ଅଥଚ ନାହିଁ । ତା' ମନ, ଭାବନା ଅନ୍ୟ କେଉଁ ଜିନିଷ ଓ କଥା ସହିତ ସଂପର୍କିତ ହୋଇଯାଏ । ସେ ଜଣାପଡ଼େ ଦୁର୍ବୋଧ । ଖାଲି ଶାରୀରିକ ସତ୍ତାଟିଏ । ସେତିକିବେଳେ ହାଡ଼ିବନ୍ଧୁ ବିଚ୍ଛିନ୍ନ ହୋଇଯାଏ ଘରଣୀ ଠାରୁ ।

ଜେମା କିଛି କହିଲା ନାହିଁ । ପିଣ୍ଡା ଉପରକୁ ଚାଲିଆସିଲା । ନାକ ସଫା କଲା ଏବଂ ଲୁହବତୁରା ସ୍ୱରରେ କହିଲା – ''ମୁଁ ଏଣେ ବଢ଼ାବଢ଼ି କରୁଚି । ଚଞ୍ଚଳ ଆସ ।''

ସାତତାଳ ଗଭୀରର ନୀରବତା । କୈଳାଶ ନେତୃତ୍ୱରେ ଗତ ଦୁଇମାସ ହେଲା କିଣାଯାଇଚି ଗୋଟେ ମୃଦଙ୍ଗ ଓ ଝାଞ୍ଜ । ଖୁବ୍ ଅସୁବିଧା ନ ହେଲେ ଘଣ୍ଟେ-ଦୁଇ ଘଣ୍ଟା ପାଇଁ ସାହିରେ ସଂକୀର୍ତ୍ତନ ହୁଏ । ଏକଦା ଚୌକିଦାର ଥିବା ଏବଂ ଏବେ ଆପାତତଃ ଅକର୍ମଣ୍ୟ ହୋଇଯାଇଥିବା ନିଧିପାତ୍ର ଯୋଗଦିଏ ସଂକୀର୍ତ୍ତନରେ । ଚଉତିଶାରୁ ବେଶ୍ କିଛି ପଦ ଗାଏ ଭାବବିହ୍ୱଳ ହୋଇ । ବେଳେ ବେଳେ କାନ୍ଦି ପକାଏ, ବେହୋସ୍ ହେବା ଅବସ୍ଥାକୁ ଚାଲିଆସେ । ସଂକୀର୍ତ୍ତନ କରାଯାଉଥିବା ସ୍ଥାନଟି ସତେଯେପରି ମହକିଉଠେ । ଧୂପବାସ୍ନା, ଶଙ୍ଖ, ହୁଳହୁଳି ଧ୍ୱନି । ଏସବୁ ସେଠାରେ ନ ଥିଲେ ମଧ୍ୟ ଅନୁଭବ କରିହୁଏ । ପିଣ୍ଡା ଉପରେ ବସି ଏହା ଉପଭୋଗ କରୁଥିବା ହାଡ଼ିବନ୍ଧୁ ମଧ୍ୟ ଆଚ୍ଛନ୍ନ ହୋଇଯାଏ ଗୋଟେ ତନ୍ମୟ ଭାବ ଦ୍ୱାରା । ଅଜାଣତରେ ସେ ତାଳି ମାରେ । ମୁଣ୍ଡ ହଲାଏ ।

ଅନେକବେଳୁ ବନ୍ଦ ହୋଇଯାଇଚି ସଂକୀର୍ତ୍ତନ । ହାଡ଼ିବନ୍ଧୁ ଲଣ୍ଠନ ଟେକିଲା ଏବଂ ଡାକିଲା – ''ଶେଖର, ଟିକେ ଶୁଣିଲୁରେ ବାବା ।'' ସେ ଭଲ ଭାବରେ ଜାଣିଥିଲା ଯେ, ଜେମା ସହିତ ତା'ର ସମସ୍ତ କଥୋପକଥନ ଶେଖର ଶୁଣୁଥିଲା ପିଣ୍ଡା ଉପରେ ଠିଆହୋଇ ।

ସେ ଆସିଲା ଭିତରକୁ । ବାପା । ତାଙ୍କର ଅଣଓସାରିଆ ଲୁଗା ସବୁବେଳେ ଥାଏ ଆଣ୍ଠୁ ଉପରକୁ । ଅଣ୍ଟାରେ ଗାମୁଛା । ତମ୍ବା ବର୍ଣ୍ଣର ଦେହ । ଲୋମଶ ଛାତି । ସବୁବେଳେ ଭାର ବୋହୁଥିବାରୁ ଦୁଇ କାନ୍ଧରେ ଦୁଇଟି କଳା ଆବୁ । ଗାଁକୁ ସପ୍ତାହରେ ଥରେ-ଦୁଇଥର ଆସୁଥିବା ଭଣ୍ଡାରୀ ଏମାନଙ୍କର ଚୂଳ ବା କାଟନ୍ତା କିପରି ? ସାହିର କେହି ଜଣେ ଅନଭିଜ୍ଞ ଲୋକ ଏ କାମ କରେ । ନିତାନ୍ତ ହାସ୍ୟାସ୍ପଦ ଦେଖାଯାଏ ଖିଅର କରାଯାଇଥିବା ଏମାନଙ୍କର ମୁଣ୍ଡ । ବାପା ବାମ ହାତ ବୁଲଉଥିଲେ ଛୋଟ କେଶ ଥିବା ମୁଣ୍ଡ ଉପରେ ।

# ଦୁଇ

ଦିନ ଦଶଟା ସୁଦ୍ଧା ହାଡ଼ିବନ୍ଧୁ ପ୍ରସ୍ତୁତ ହୋଇ ସାରିଥିଲା । ଗତବର୍ଷ କିଣା ଯାଇଥିବା ସାଇକେଲ ଡେରାଯାଇଚି ପିଣ୍ଡାରେ । ହେଣ୍ଡଲ୍‌ରୁ ଝୁଲୁଚି ଦୁଇଟି ବ୍ୟାଗ୍ । ଗୋଟିଏ ଖାଲି । ଅନ୍ୟଟିରେ ତା'ର ଓ ଶେଖରର ଚପଲ ରହିଚି । ଗାଁ ପାର ହେବା ପର୍ଯ୍ୟନ୍ତ ସାଇକେଲ ଗଡ଼େଇ ନେବାକୁ ପଡ଼ିବ । ଦାଣ୍ଡରେ କିମ୍ୱା ପିଣ୍ଡା ଉପରେ କେହି ଗୁରୁଜନ, ଉଚ୍ଚ ଜାତିର ଲୋକ ବସିଥିବେ । ସେମାନଙ୍କ ସାମନାରେ ସାଇକେଲ ଚଢ଼ି ଯିବା ଉଚିତ କି ନୁହେଁ, ତାହା ଜଣା ନ ଥିଲା ହାଡ଼ିବନ୍ଧୁକୁ । ମାତ୍ର ବର୍ଷେ ହେଲା ଏହା କିଣିବା ପରଠାରୁ ସେ ନିଜ ପାଇଁ ଏମିତି ଏକ ଆଚରଣ ବିଧି ତିଆରି କରିଚି ।

ବହୁ ବର୍ଷ ତଳେ ତାଙ୍କ ସାହିର କାଳିଆ ପାତ୍ର ନାମକ ଜଣେ ଲୋକ ଚପଲ ପିନ୍ଧି ଗାଁ ଦାଣ୍ଡରେ ଚାଲିଯାଇଥିଲା । ମାନ୍ଧାତା ଅମଳର ବଉଳଗଛ ମୂଳେ ପଡ଼ିଥିବା ଚିକ୍‌କଣ ପଥର ଉପରେ ତାସ୍ ଖେଳୁଥିଲେ ମୁରବୀ ସ୍ଥାନୀୟ ଲୋକମାନେ । ଚାରିପାଖରେ ଥିଲେ ଦେଖଣାହାରୀ । କାଳିଆ ପାତ୍ରର ଫଟ୍ ଫଟ୍ ଚପଲ ଶବ୍ଦ କିଛି ସମୟ ପାଇଁ ମୂଢ଼ କରି ଦେଇଥିଲା ସମସ୍ତଙ୍କୁ । ଲୋକଟାର ଔଦ୍ଧତ୍ୟ ଦେଖ ! ବାତିଲ ହୋଇଯାଇଥିଲା ତାସ୍ ଖେଳ ଏଇ ସଙ୍କଟ ଯୋଗୁ ।

—"କାଳିଆ !" ଏଇ ଦୁର୍ଦ୍ଧାନ୍ତ ସ୍ୱରର ସମ୍ବୋଧନ ସତେଯେପରି କଡ଼ମଡ଼ କରିଉଠିଲା— "ଶୁଣି ଯା !"

ନିଜ ତ୍ରୁଟି ପ୍ରତି ଯେ ଅପରାଧୀ ଜଣକ ସଚେତନ ହୋଇପଡ଼ିଥିଲା, ସେଥିରେ କାହାରି ସନ୍ଦେହ ରହିଲା ନାଇଁ । ସେ ଠିଆହେଲା । ଗୋଡ଼କୁ ଚପଲ ମୁକ୍ତ କଲା । ଦୁଇହାତ ଯୋଡ଼ି ଠିଆହେଲା ସମସ୍ତଙ୍କ ଆଗରେ କ୍ଷମାପ୍ରାର୍ଥନା କଲା ଭଳି । କୈଫିୟତ ଦେଲା— "ମୋର ଭୁଲ ମାର୍ଜନା କରିବା ହେଉନ୍ତୁ ଆଜ୍ଞାମାନେ । ଗୋଡ଼ରେ ମାଛଆଖିଆ । ଚାଲି ହେଉ ନ ଥିଲା । ଏଇଥରକ ଛାଡ଼ି ଦିଅନ୍ତୁ । ଆଉ ଏମିତି ଭୁଲ ହେବ ନାଇଁ ।" ଫେରିଥିଲା ଚପଲ ପାଖକୁ । ଦୁଇ ହାତରେ ଧରିଲା । ଆଉ ମୁଣ୍ଡ ନ ଟେକି ଅତିକ୍ରମ କରିଥିଲା ଗାଁ ଦାଣ୍ଡ ।

—"କିରେ, ଆସିଲୁ ?" ଚକ, ବ୍ରେକ୍ ଇତ୍ୟାଦି ଦେଖିସାରିବା ପରେ ହାଡ଼ିବନ୍ଧୁ ସନ୍ତୁଷ୍ଟ ହେଲା ଏବଂ ଶେଖରକୁ ସଚେତନ କରିବା ଉଦ୍ଦେଶ୍ୟରେ କହିଲା— "ସେଠାରେ ଏଗାରଟା ବେଳେ ପହଞ୍ଚିବା କଥା । ପାଞ୍ଚ କିଲୋମିଟର ହେଲେ ବି ବାଜେ ରାସ୍ତା ।"

ଏଥର ଘରୁ ବାହାରିଆସିଲେ ଶେଖର ଓ ଜେମା । ହାଡ଼ିବନ୍ଧୁ ଉଦ୍ଦେଶ୍ୟରେ ସେ କହିଲା– "ତାଲିକାଟା ପକେଟରେ ରଖିଚ କି ନାହିଁ, ଭଲ କରି ଦେଖ । ଆଜି ହାଟରୁ ଜିନିଷପତ୍ର ନ ଆସିଲେ ସବୁ ଗଣ୍ଡଗୋଳ ହୋଇଯିବ ।"

–"କେତେଥର ତାଲିକା ତାଲିକା ହେଉଚୁ, କହିଲୁ ?" କିଞ୍ଚିତ ବିରକ୍ତ ହୋଇ କହିଲା ହାଡ଼ିବନ୍ଧୁ– "ତୁ ଭାବୁଚୁ ଯେ ତୋତେ ଛାଡ଼ିଦେଲେ ଆଉ କେହି ହୁସିଆର ଲୋକ ନାହାନ୍ତି ।"

ହାଡ଼ିବନ୍ଧୁ ମୁହଁ ବୁଲାଇ ସାଇକେଲ ଗଡ଼େଇବା ଆରମ୍ଭ କଲା । ତାକୁ ଅନୁସରଣ କରିବା ପୂର୍ବରୁ ଶେଖର ବୁଲିପଡ଼ି ଚାହିଁଲା ମା' ଆଡ଼େ । ପିଣ୍ଡା ଉପରେ ସେ ଠିଆହୋଇଛି ମୁଗ୍ଧ ପରିପୂର୍ଣ୍ଣତା ନେଇ । ଟିକିଏ ସ୍ମିତହସ ମଖେଇ ହୋଇ । ଶେଖର ସେଇଭଳି ହସ ଜରିଆରେ ପ୍ରତ୍ୟୁତ୍ତର ଦେଲା ଏବଂ ବାପା କାଳେ ବିରକ୍ତ ହେବେ ବୋଲି ଟିକିଏ ଧାଇଁଲା, ତାଙ୍କ ପାଖରେ ପହଞ୍ଚିବା ପାଇଁ ।

ପାଦ ଚଲା ସରୁ ରାସ୍ତା । କେଉଁଠି କେମିତି ସରୁ ପାହାଡ଼ୀ ଝରଣାର କଙ୍କାଳ । ବିଲ ହିଡ଼ । ବୁଦୁବୁଦୁକିଆ ଜଙ୍ଗଲ । ବିସ୍ତୀର୍ଣ୍ଣ ପଥର ଚଟାଣ । ପାଞ୍ଚ କିଲୋମିଟର ଅତିକ୍ରମ କରିବା ଏତେ ସହଜ ନ ଥିଲା । ବାସ୍ତବିକ ପ୍ରାୟ ଅଧେ ବାଟ ସେମାନେ ଚାଲିଚନ୍ତି ଏବଂ ସାଇକେଲ ଗଡ଼େଇବା ଗୋଟେ ସମସ୍ୟାରେ ପରିଣତ ହୋଇଚି ।

ତେବେ ପାଞ୍ଚକିଲୋମିଟର' ପରେ ଅନେକ ବିସ୍ମୟ ଅପେକ୍ଷା କରି ରହିଥିଲା ହାଡ଼ିବନ୍ଧୁ ଓ ଶେଖରକୁ । ହାଡ଼ିବନ୍ଧୁ ବିଶ୍ୱାସ କରିବା ପାଇଁ ପ୍ରସ୍ତୁତ ନ ଥିଲା ଯେ ଦୁଇବର୍ଷ ତଳେ ସେ ଏଇ ସ୍ଥାନକୁ ଆସିଥିଲା, ଜେମାର ଟାଇଫଏଡ୍ ପାଇଁ ଔଷଧ ସକାଶେ । ସେତେବେଳେ ସେ ଶୁଣିଥିଲା ସାହେବ ଡାକ୍ତର ଜଣେ ଏଠାରେ ଅଛନ୍ତି ଏବଂ ମାଗଣାରେ ଔଷଧ ଦେଉଚନ୍ତି । ସରକାରୀ ଡାକ୍ତରଖାନା ଥିଲା ଗାଁଠାରୁ ଛ-ସାତ କିଲୋମିଟର ଦୂରରେ । ଅନେକ ସମୟରେ ସେଠାରେ ଡାକ୍ତର ନ ଥାନ୍ତି । କଂପାଉଣ୍ଡର ହିଁ ଥିଲେ ସର୍ବେସର୍ବା । ତାଙ୍କ ସହିତ କଥାବାର୍ତ୍ତା ହେବା ସହଜ ନ ଥିଲା । ହାଡ଼ିବନ୍ଧୁ ଭଳି ଲୋକମାନେ ତାଙ୍କ ଦୃଷ୍ଟିରେ ଥିଲେ ରୋଗଜୀବାଣୁ ଭଳି ମାରାତ୍ମକ । ଔଷଧ ଟିକିଏ ପାଇବାକୁ ହେଲେ ପ୍ରଚୁର ଟଙ୍କା ଖର୍ଚ୍ଚ କରିବା ଦରକାର ଥିଲା । ତା' ସହିତ ଅପମାନ ତ ଥାଏ ।

ଦୁଇବର୍ଷ ତଳେ ସଂପୂର୍ଣ୍ଣ ଧଳା ପୋଷାକରେ ଆବୃତ ସାହେବ ଜଣେ ଅତ୍ୟନ୍ତ ମନଯୋଗୀ ଓ ସହାନୁଭୂତିଶୀଳ ହୋଇ ଶୁଣିଥିଲେ ତା' ସମସ୍ୟା, ଜଣେ ଇଣ୍ଟରପ୍ରିଟର୍ ସାହାଯ୍ୟରେ । ଔଷଧ ଦେବା ପରେ ତା' ପିଠି ଥାପୁଡ଼ାଇଥିଲେ ଏବଂ ଇଂରାଜୀରେ କହିଥିଲେ– ପ୍ରଭୁ ଯିଶୁଙ୍କ ଅପାର ଆଶୀର୍ବାଦ ରହିଚି ତୁମ ପାଖରେ । ତୁମ

ପତ୍ନୀ ଯଥାଶୀଘ୍ର ଆରୋଗ୍ୟ ଲାଭ କରିବେ । ସେତେବେଳେ ଖୁବ୍ ତତ୍ପରତାର ସହିତ କୋଠାବାଡ଼ି ତିଆରି ଚାଲିଥିଲା । ବର୍ତ୍ତମାନ ହାଡ଼ିବନ୍ଧୁ ସାମନାରେ ଛୋଟ ଗୀର୍ଜାଟିଏ । ପ୍ରଶସ୍ତ ଓ ତ୍ରୁଟିହୀନ ଭାବେ ପରିଚ୍ଛନ୍ନ ଇଲାକା ମଧ୍ୟରେ । ତା' ପାଖକୁ ଡାକ୍ତରଖାନା । ସପ୍ତମଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବା ପାଇଁ ସ୍କୁଲ । ଖୁବ୍ ଦରିଦ୍ର ଓ ଅନାଥ ପିଲାମାନଙ୍କର ରହିବା ସକାଶେ ଚମତ୍କାର ଘର । ସେମାନଙ୍କର ରହିବା ଓ ପଢ଼ିବା ଖର୍ଚ୍ଚ ସଂପୂର୍ଣ୍ଣ ମାଗଣା ।

ହାଡ଼ିବନ୍ଧୁ ଏମିତି ଚମତ୍କୃତ ଓ ବିମୋହିତ ହୋଇ ନ ଥିଲା ତା' ଜୀବନକାଳ ମଧ୍ୟରେ । ଭିତରକୁ ଯିବା ପାଇଁ ଆଦୌ ସାହସ ହେଲା ନାହିଁ ତା'ର । ସେ ସାଇକେଲ ରଖିଲା ପାଚେରି କଡ଼ରେ । ତା'ର ସରଳ, ନିଷ୍କପଟ ମୁହଁ ଉପରକୁ ଓହ୍ଲାଇ ଆସିଲା ଅସହାୟତା । ସେ ଚାହିଁଲା, ସଙ୍କୁଚିତ ଦେଖାଯାଉଥିବା, କିଛି ବୁଝିପାରୁ ନ ଥିବା ଶେଖର ଆଡ଼େ ।

—''ଆପଣ ହାଡ଼ିବନ୍ଧୁ କି ?'' ଏକ ହସହସ, ଅନ୍ତରଙ୍ଗ ମୁହଁ ଉପରେ ଏଇ ଭଦ୍ର ଓ ଘନିଷ୍ଠ ଜିଜ୍ଞାସା ।

ହାଡ଼ିବନ୍ଧୁ କିଛି ଉତ୍ତର ଦେବା ପୂର୍ବରୁ ଅନୁରୋଧ— ''ଆସନ୍ତୁ ମୋ ସହିତ । ଫାଦର ଯୋଶେଫ୍ ଆପଣ ଦୁହିଁଙ୍କୁ ଅପେକ୍ଷା କରୁଚନ୍ତି । ଝରକା ବାଟେ ଆପଣ ଦୁହିଁଙ୍କୁ ଦେଖି ଭିତରକୁ ଡାକିନେବା ପାଇଁ ସେ ମୋତେ ପଠାଇଚନ୍ତି ।''

ସ୍ଥାନ ଓ ବ୍ୟବହାରର ନିର୍ମଳତା ମନ୍ତ୍ରମୁଗ୍ଧ କରିସାରିଥିଲା ହାଡ଼ିବନ୍ଧୁକୁ । ଏହାସତ୍ତ୍ୱେ ସେ ଚିହ୍ନଟ କରିପାରିଲା ତାକୁ ଆଶ୍ୱାସନା ଓ ସାହସ ଦେଉଥିବା ଏକ ଅଦୃଶ୍ୟ ସ୍ରୋତକୁ । ଏଠାକାର ଅଚିହ୍ନା ଲୋକମାନଙ୍କ ଉପରେ ଭରସା କରାଯାଇପାରେ, ସେମାନଙ୍କ ଆଗରେ ନିଃସଙ୍କୋଚରେ ପ୍ରକାଶ କରାଯାଇପାରେ ବ୍ୟକ୍ତିଗତ ଦୁଃଖ ଓ ଯନ୍ତ୍ରଣାର ଶେଷହୀନ କାହାଣୀ । ସେମାନେ ସମ୍ବେଦନଶୀଳତାର ସହିତ ସବୁ ଶୁଣିବେ । ହୁଏତ ଉପାୟ କରିଦେବେ ସମସ୍ୟାର ସମାଧାନ ପାଇଁ । ଏଇଭଳି ଧାରଣାଟିଏ ପ୍ରତ୍ୟୟ ସୃଷ୍ଟି କଲା ହାଡ଼ିବନ୍ଧୁ ଭିତରେ । ସେ ଜାଣେନା, କାହିଁକି କେଜାଣି ସ୍ଥାନଟିକୁ, ଏହାର ମାଟି ଓ ପବନକୁ ସେ ତତ୍କ୍ଷଣାତ୍ ଶ୍ରଦ୍ଧା କରିବା ଆରମ୍ଭ କଲା । ତା' ଭିତରେ ଝଂକୃତ ହୋଇଗଲା ଏକ ମନମତାଣିଆ, ମିଠା ସଙ୍ଗୀତ । ଏହାର ମୂର୍ଚ୍ଛନା, ତା' ଚେତନାରେ ରହିଥିବା ଅସଂଖ୍ୟ ଫାଟ ଓ ଶୂନ୍ୟସ୍ଥାନକୁ ପୂର୍ଣ୍ଣ କରିଦେଲା ଏକ ମମତାମୟ ହାତର ସ୍ପର୍ଶନେଇ ।

ଫାଦର ଯୋଶେଫ୍ । ଦୁଇ ବର୍ଷ ତଳର ଡାକ୍ତର ! ତାଙ୍କୁ ଦେଖିବା ମାତ୍ରେ ହାଡ଼ିବନ୍ଧୁ ଭୂମିଷ୍ଠ ପ୍ରଣାମ କରିବାକୁ ଯାଉଥିଲା; ମାତ୍ର ଫାଦର ତାକୁ ଅଟକାଇ ନେଲେ । ଛାତିରେ ଜାକିଧରି ପିଠି ଥାପୁଡ଼ାଇବା ବେଳେ କହିଲେ— ''ତୁମ

ସ୍ଥାନ କାହାର ପାଦ ତଳେ ନୁହେଁ । ଏଇଠି । ଛାତି ଉପରେ । ହୃଦୟରେ ।'' ଦୁଇ ବର୍ଷ ମଧ୍ୟରେ ସେ ଏଠାକାର ଭାଷା ପ୍ରାୟ ଆୟତ୍ତ କରିସାରିଥିଲେ ।

ସେ ନଇଁପଡ଼ି ଦୁଇ ପାପୁଲିରେ ଧରି ରଖିଲେ ଶେଖରର ମୁହଁକୁ, ପୃଥିବୀର ସର୍ବଶ୍ରେଷ୍ଠ ପ୍ରାପ୍ତିକୁ ଯତ୍ନରେ ଧରିବା ଭଳି । ତା' କପାଳରେ ଗୋଟେ ସ୍ନେହ ଭିଜା ଚୁମ୍ବନ ଦେଲେ । ପରେ ପରେ ସେମାନେ ବସିଲେ ଫାଦରଙ୍କ ରୁମ୍‌ରେ । ଗୋଟେ କାଠ ଖଟ । ର୍‌ୟାକ୍ । କୋଣରେ ମାଠିଆ । ପ୍ରଚୁର ବହି । କ୍ରୁଶବିଦ୍ଧ ଯୀଶୁ ଓ ଭର୍ଜିନ୍ ମେରୀଙ୍କ ବିଶାଳ ଫଟୋ । ରୁମ୍‌କୁ ଅଧିକାର କରିଥିଲା ଔଷଧ ଗନ୍ଧ ।

ଉଚ୍ଚାରଣରେ ସଂପୂର୍ଣ୍ଣ ଶୁଦ୍ଧତା ନ ଥିଲେ ମଧ୍ୟ ତାଙ୍କର ବକ୍ତବ୍ୟ ଥିଲା ଖୁବ୍ ସରଳ ଓ ମମତାପୂର୍ଣ୍ଣ– ''ତୁମକୁ ବହୁତ କଷ୍ଟ କରିବାକୁ ପଡ଼ିଥିବ ଏଠାରେ ପହଞ୍ଚିବା ପାଇଁ । ତୁମକୁ ଡକେଇ ପଠେଇଲି ଗୋଟେ କାରଣ ପାଇଁ । ଶେଖର ମଧ୍ୟ ଇଂରାଜୀ ପରୀକ୍ଷା ପାସ୍ କଲା । ସ୍କଲାର୍‌ସିପ୍ ମଧ୍ୟ ପାଇଲା । ନୁହେଁ କି ?''

–''ଆଜ୍ଞା, ହଁ ।'' ହାଡ଼ିବନ୍ଧୁ ବିହ୍ୱଳ ହୋଇ ଯାଉଥିଲା ଶେଖର ଆଡୁ ଦୃଷ୍ଟି ଫେରାଇ । ସେ ପୁଣି ଚାହିଁରହିଲା ଫାଦରଙ୍କୁ ତନ୍ମୟ ହୋଇ ।

–''ତା' ପାଇଁ ପ୍ରଭୁ ଯୀଶୁଙ୍କର ଆଶୀର୍ବାଦ ରହିବ ସବୁଦିନ ପାଇଁ ।'' ସେ କହିଲେ ଏବଂ ଯୋଗ କଲେ– ''ତା' ପାଇଁ ଆମ ତରଫରୁ ମାମୁଲି ଉପହାରଟେ ଦୟାକରି ଗ୍ରହଣ କରିବେ । ମନା କଲେ ଆମେ ସମସ୍ତେ ଦୁଃଖିତ ହେବୁ ।''

ଶେଲଫରେ ଥିବା ଗୋଟେ ପ୍ୟାକେଟ ସେ ବଢ଼ାଇଲେ ଶେଖର ଆଡ଼େ । ଶେଖର କିଛି ବୁଝି ନ ପାରି ଚାହିଁଲା ବାପାଙ୍କ ଆଡ଼େ ଜିନିଷଟି ଗ୍ରହଣ କରିବ କି ନା ବୋଲି ସୂଚନା ପାଇବା ସକାଶେ । ତାହା ସେ ଗ୍ରହଣ କରିବା ପରେ ଫାଦର କହିଲେ– ''ଅଷ୍ଟମ ଶ୍ରେଣୀର ସମସ୍ତ ବହି, କିଛି କାଗଜ, ଦୁଇଟି କଲମ ଓ ଜ୍ୟାମିତି ବାକ୍ସ ଅଛି ସେଥିରେ । ତା' ପାଇଁ ଆମେ ପ୍ରତ୍ୟେକ ମାସ କିଛି ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରିଛୁ । ଆମେ ଚାହୁଁ, ଶେଖର ଉଚ୍ଚଶିକ୍ଷା ପାଇବା ଦିଗରେ କୌଣସି ପ୍ରତିବନ୍ଧକର ସମ୍ମୁଖୀନ ନ ହେଉ ।''

ଜଣେ କୃତଜ୍ଞ ଲୋକର ଅନୁଭବ କ'ଣ ? କୃତଜ୍ଞ ଲୋକ ଜଣେ ଦେଖାଯାଏ କିପରି ? ଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇପାରିବ ନାହିଁ ଜଣେ ଲୋକ, ଯଦି ସେ ଏଇ ମୁହୂର୍ତ୍ତରେ ହାଡ଼ିବନ୍ଧୁକୁ ନ ଦେଖିଚି । ବାସ୍ତବିକ ହାଡ଼ିବନ୍ଧୁର ସମଗ୍ର ସତ୍ତା ପରିଣତ ହୋଇଯାଇଥିଲା କୃତଜ୍ଞତାରେ । ଏହାର ଅନୁଭବ ଏତେ

ତୀବ୍ର ଓ ଯନ୍ତ୍ରଣାଦାୟକ ହୋଇପଡ଼ିଲା ଯେ ସେ ଭୁଲିଗଲା ଶେଖରର ଉପସ୍ଥିତି । ସେ କାନ୍ଦି ପକାଇଲା ଦୁଇ ପାପୁଲିରେ ମୁହଁ ଘୋଡ଼ାଇ । ପିଲାଙ୍କ ଭଳି ଅସମ୍ଭାଳ ହୋଇ । ଦୀର୍ଘ ସମୟ ପରେ ପ୍ରକୃତିସ୍ଥ ହେଲା । ଉଶ୍ୱାସ ଲାଗିଲା ତାକୁ । ଏତେ ଦିନ ଧରି ସେ ସତେଯେପରି ସୀମାବଦ୍ଧ ହୋଇ ରହିଥିଲା ଏକ ଅପରାଜେୟ କାନ୍ଥ ଘେରରେ । ଏଇ କାନ୍ଥ ଚହଲି ଯାଉଥିଲା ଏବଂ ତା' ପାଖକୁ ଅଯାଚିତ ଭାବରେ ଚାଲି ଆସୁଥିଲା ନିର୍ମଳ ଓ ମୁକ୍ତ ପବନ । ହାଡ଼ିବନ୍ଧୁ ଏତେ ଆତ୍ମୀୟତା ଜୀବନକାଳ ମଧ୍ୟରେ ପାଇବ ବୋଲି ଚିନ୍ତା କରି ନ ଥିଲା । ଜଣେ ଅପରିଚିତ ଲୋକ ଯୋଜନାବଦ୍ଧ ଭାବରେ ଶେଖରର ଭବିଷ୍ୟତ ଗଢ଼ିବା ପାଇଁ ଆଗ୍ରହୀ ହେଉଚନ୍ତି ! ସମୁଦାୟ ଅଭିଜ୍ଞତାଟି ଥିଲା ଏକ ମଧୁର ସ୍ୱପ୍ନ ଭଳି । ଯାହାକୁ ପାଇବା ପାଇଁ ମନ ହାଇଁପାଇଁ ହେଉଥାଏ; ଅଥଚ ପାଇବ ବୋଲି ବିଶ୍ୱାସ ନ ଥାଏ ।

ହାଡ଼ିବନ୍ଧୁ ଏବଂ ଶେଖରର ଏକାଗ୍ରତା ହଜି ଯାଇଥିଲା । ଏଠାରୁ ହାଟ ଛ-ସାତ କିଲୋମିଟର ଦୂରରେ । ସେଠାକୁ ଯାଇ ଜେମା ଦେଇଥିବା ତାଲିକା ଅନୁସାରେ ଜିନିଷ କିଣିବାକୁ ପଡ଼ିବ । ଶେଖର ଭଲରେ ମାଇନର ପାସ୍ କରୁ ଏବଂ ନିର୍ବିଘ୍ନରେ ଆହୁରି ପଢୁ । ଏମିତି ମାନସିକଟେ କରିଥିଲା ଜେମା ! ଘରେ ଥିବା ଠାକୁରଙ୍କ ଫଟୋ ଆଗରେ ପ୍ରାର୍ଥନା କରୁଥିଲା । ସଳିତା ଜାଳୁଥିଲା । ବ୍ରତ-ଉପବାସ କରୁଥିଲା ।

ବ୍ରାହ୍ମଣ କିନ୍ତୁ ଏ ପୂଜା ଓ ମେଳା ହାଡ଼ିବନ୍ଧୁ ଘରେ କିମ୍ବା ଅଗଣାରେ କରିବେ ନାଇଁ । ସେମିତି ବଧି ବିଧାନ ନାହିଁ । ପାହାଡ଼ ଉପରେ ଥିବା ମନ୍ଦିରରେ ବିରାଜମାନ କରନ୍ତି ମହାଦେବ । ଗାଁର ଅଧିକାଂଶ ପୂଜା-ପାର୍ବଣ ଅନୁଷ୍ଠିତ ହୁଏ ଠାକୁରଙ୍କ ନାମରେ । ଶତାଧିକ ପାଉଛ ଚଢ଼ି ମନ୍ଦିରରେ ପହଞ୍ଚିବାକୁ ପଡ଼େ । ହରିଜନ ସାହିର କେହି କେବେ ମନ୍ଦିର ପରିସରକୁ ଯାଇ ନାହାନ୍ତି । ସେମାନେ ପ୍ରଥମ ପାଉଛକୁ ସ୍ପର୍ଶ କରନ୍ତି, ତାହାର ଧୂଳି ମୁଣ୍ଡରେ ମାରନ୍ତି ଓ ଭୂମିଷ୍ଠ ପ୍ରଣାମ କରନ୍ତି । ପ୍ରଥମ ପାଉଛ କଡ଼ରେ ରହିଚି ସିମେଣ୍ଟଢଙ୍କା ମଣ୍ଡପ, କେତୋଟି ଆମ୍ବ ଏବଂ ବଉଳଗଛ ବେଷ୍ଟନ କରି । ଏଇ ମଣ୍ଡପରେ ମେଳା କିମ୍ବା ପୂଜା ହୁଏ ହରିଜନମାନଙ୍କ ପାଇଁ । ସେମାନେ କେବଳ ବ୍ରାହ୍ମଣଙ୍କୁ ଟଙ୍କା ଦେବା କଥା । ବ୍ରାହ୍ମଣ ହିଁ ଅଧିକାଂଶ ଆନୁଷଙ୍ଗିକ ଜିନିଷ କିଣିବେ ।

ନୂଆ ଲୁଗା, ନଡ଼ିଆ ସମେତ କିଛି ଫଳ ଇତ୍ୟାଦି । ଏସବୁ ସିଧାସଳଖ ପୂଜାରେ ବ୍ୟବହାର କରାଯିବ । ଏସବୁ ଅଶୁଦ୍ଧ ଏବଂ ଅପବିତ୍ର ନୁହେଁ । ଅନ୍ୟ ସମସ୍ତ ଜିନିଷ ଧରି ବ୍ରାହ୍ମଣ ଆସିଲେ । ତାଙ୍କର ମନ୍ତ୍ରଧ୍ୱନି, ହୋମର ଆହୂତି

ଶେଖରର ଭବିଷ୍ୟତକୁ ନିଷ୍କଣ୍ଟକ ଓ ଆଲୋକିତ କରୁଥିଲା । ଟିକିଏ ଦୂରରେ ସାହିର ପିଲାମାନେ ସଂକୀର୍ତ୍ତନ କରୁଥିଲେ । ସେମାନେ ଜାଣନ୍ତି, ପୂଜା ଶେଷ ହେଲେ ସେମାନେ ଅରୁଆନ୍ନ ଓ ଡାଲମା ପାଇବେ ହାଡ଼ିବନ୍ଧୁର ଅଗଣାରେ । ହାଡ଼ିବନ୍ଧୁ ହାତଯୋଡ଼ି ଭକ୍ତି ଓ ନମ୍ରତାର ପ୍ରତିମୂର୍ତ୍ତିଟିଏ ଭଳି ଠିଆ ହୋଇଥିଲା ଅନ୍ୟ ପାଖରେ । ଆଉ ଟିକିଏ ଦୂରକୁ ବସିଥିଲା ଜେମା, ଶେଖର ସହିତ । ପୂଜା-ମଉଚ୍ଛବ ଚାଲିଥିବା ବେଳେ ସେ ଶିହରିତ ଓ ପୁଲକିତ ହୋଇଯାଏ । ଆପଣାଛାଏଁ ତା' ଆଖିରୁ ଝରିଆସେ ଲୁହ । ତାହାର ହାତ ବାରମ୍ବାର ପରିକ୍ରମା କରୁଥିଲା ଶେଖର ମୁଣ୍ଡ ଉପରେ, କପାଳରେ, ପିଠି ଉପରେ । ସତେଯେପରି ଏହି ପୂଜା-ଆରାଧନାର ସୁଫଳ ପୋଡ଼ା ଘିଅ, ଅଗରବତି ଇତ୍ୟାଦିର ଗନ୍ଧରେ ପରିଣତ ହୋଇ ଚାଲିଆସୁଥିଲା ତା' ପାଖକୁ ଏବଂ ସେ ତାହା ବୋଳି ଦେଉଥିଲା ଶେଖର ଦେହରେ ଓ ଭାଗ୍ୟରେ ।

ପଚାଶ କିଲୋମିଟର ଦୂରରେ ଥିବା ଖ୍ୟାତିସଂପନ୍ନ ଜିଲ୍ଲା ସ୍କୁଲ । ଶେଖର ସେଇଠି ପଢ଼ିବ, ହଷ୍ଟେଲରେ ରହି । ଜେମା ଆଦୌ ଏକମତ ହେଉ ନ ଥିଲା ଏ ପ୍ରସ୍ତାବ ସହିତ । ଚେତାବନୀ ଶୁଣେଇଥିଲା ଯେ ଏତେ ଦୂର ସ୍କୁଲରେ ପିଲାକୁ ଛାଡ଼ିଲେ, ସେ ଘରୁ ପଳେଇଯିବ । ତା'ର ଆଶଙ୍କା ଥିଲା ଯେ, ଅଛୁଆଁ ପିଲା ବୋଲି ତା' ଉପରେ ଭଲମନ୍ଦ କିଛି ହୋଇଯାଇପାରେ । ପିଠିରେ ପଢ଼ିବା ପାଇଁ କେହି ନ ଥିବେ । ଆଠ-ଦଶ କିଲୋମିଟର ଦୂର ବ୍ଲକ୍ ଅଫିସ୍ ପାଖରେ କେତେ ବର୍ଷ ହେବ ହାଇସ୍କୁଲ ଖୋଲିଚି । ଶେଖର ସେଇଠି ପଢ଼ିଲେ ସବୁଆଡ଼କୁ ସୁବିଧା । ରୀତିମତ ସାଧନାଟିଏ ଦରକାର ହୋଇଥିଲା ମା' ପାଖରୁ ହଁ ବୋଲି ସମ୍ମତି ଆଦାୟ କରିବା ପାଇଁ । ଫାଦର ଯୋଶେଫ୍ ଏ ବ୍ୟାପାରରେ ହସ୍ତକ୍ଷେପ କରିଥିଲେ ଏବଂ କହିଥିଲେ– ଗଡ୍ ବ୍ଲେସ୍ ୟୁ, ମାଇଁ ସନ୍ । ମନ୍ଦିରରୁ ପ୍ରସାଦ କିଣାଯାଇଥିଲା । ସ୍କୁଲ ଯିବା ପୂର୍ବରୁ ଶେଖର ସେବନ କରିବ ବୋଲି ।

ହଷ୍ଟେଲରେ ରହିବାର ମାତ୍ର ଦୁଇଦିନ ପରେ ଶେଖର ଆବିଷ୍କାର କରିଥିଲା ଗୋଟେ କଥା । ସେ ଯେଉଁ ରୁମ୍‌ରେ ରହୁଚି, ସେଠାରେ କେବଳ ଅଛନ୍ତି ଆଦିବାସୀ ଓ ହରିଜନ ପିଲା । ଏଠାରେ ମଧ୍ୟ ବିଭାଜନ ! ତେବେ, ଉପର ଶ୍ରେଣୀରେ ପଢୁଥିବା ଛାତ୍ର ଜଣେ ବୁଝେଇ ଦେଇଥିଲେ– ଆମେ ଏଥିପାଇଁ କ୍ଷୁବ୍ଧ ହେବା ଠିକ୍ ନୁହେଁ । ଅବଶ୍ୟ ଏକଥା ମଧ୍ୟ ସତ ଯେ ଆମକୁ ଏମିତି ଅଲଗା ଗୋଟେ ରୁମ୍‌ରେ ରଖେଇବା ଯଥାର୍ଥ ନୁହେଁ । କୁହାଯାଏ ଯେ, ଏଇ ହଷ୍ଟେଲ କୋଠାଟା ହେଉଚି ଆଦିବାସୀ ହଷ୍ଟେଲ । ସରକାର ସେମାନଙ୍କ ସୁବିଧା ପାଇଁ, ସେମାନଙ୍କୁ ଉତ୍ସାହିତ କରିବା ପାଇଁ ଏମିତି ହଷ୍ଟେଲ କରିଚନ୍ତି ଅନେକ ସ୍କୁଲ-କଲେଜରେ ।

କ୍ଲାସ୍‌ରୁମ୍‌ରେ ନ ଥିଲା କୌଣସି ବିଭାଜନକାରୀ ରେଖା । ମାତ୍ର ସ୍କୁଲ ପରେ କୁଆଡ଼େ ବୁଲିଯିବା, ଗାଧୋଇବା, ଖାଇବା ଇତ୍ୟାଦି ବେଳେ ଶେଖର ଲକ୍ଷ୍ୟ କରୁଥିଲା ଯେ, ତାହାର ସାଙ୍ଗ ହେଉଚନ୍ତି ତା' ରୁମ୍‌ରେ ରହୁଥିବା କୌଣସି ଅନ୍ତେବାସୀ । ପୁଣି ଟିକିଏ ଅଣନିଃଶ୍ୱାସୀ ହେବା ଅଭିଜ୍ଞତା । ଏକ୍ ସୀମାବଦ୍ଧତା ମଧ୍ୟରେ ରହିବାର ଅନୁଭବ । ଖୁବ୍ ବେଶି ଭଲ ଲାଗୁ ନ ଥିଲା ଏଇ କାରଣରୁ । ଏହା ସହିତ ଗୋଟେ ପୀଡ଼ାଦାୟକ ଆକ୍ଷେପ ମଧ୍ୟ ଥିଲା ସେମାନଙ୍କ ପ୍ରତି । ସେମାନେ ଷ୍ଟାଇପେଣ୍ଡ ପାଇବେ । ଇଣ୍ଟରଭିଉରେ ଭଲ ନ କଲେ ମଧ୍ୟ ସରକାରୀ ଚାକିରି ସଂରକ୍ଷିତ ହୋଇ ରହିଚି ସେମାନଙ୍କ ପାଇଁ । ମୋଟ ଉପରେ ସରକାରଙ୍କର ଏମାନେ ହେଉଚନ୍ତି ଗ୍ବାଇଁ ପିଲା । ଏସବୁ କୁହାଯାଏ ପରିହାସ ଛଳରେ । କହୁଥିବା ପିଲାଜଣକ ବର୍ଣ୍ଣନା କରେ ନିଜ ଅବଶ୍ୟମ୍ଭାବୀ ଭବିଷ୍ୟତ ଏଇ ପ୍ରକାରେ— ଲମ୍ବା ଧାଡ଼ି ସବୁଠାରେ । ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜ ହେଉ ବା ଭଲ କଲେଜରେ, ୟୁନିଭର୍ସିଟିରେ ସ୍ଥାନଟିଏ ପାଇବା ପାଇଁ ହେଉ । ଆଉ ଚାକିରି ! ତା' ପାଖକୁ ଆଉ ହାତ ପାଉ ନାଇଁ ଅନେକଙ୍କର । ଚାଲିଚି ପଢ଼ାପଢ଼ି । ଗୋଟେ ଗହଳି ଭିତରେ ଆମେ । ସେ ଗହଳି ଯାଉଚି କୁଆଡ଼େ, କାହିଁକି ତାହା ଜାଣିବା ଦରକାର ନାଇଁ । ଅନ୍ଧ, ମସ୍ତିଷ୍କବିହୀନ ସୁଅଟିଏ । ଖାଲି ଭାସିଯିବା କଥା । ତଳକୁ ଗୋଡ଼ ପାଉ ନ ଥିବ । ଠିଆ ହେବାର ଉପାୟ ନ ଥିବ । ଭାସି ଯାଅ । ଉଡୁଥାଅ । ଦମ୍ଭ ନ ଥିବା, ଚେର ନ ଥିବା ସତ୍ତାଟିଏ ହୋଇଯାଅ । ଏଣେ ଗହଳି ବଢୁଥାଉ । କୋଳାହଳ ଯୋଗୁ ଆଉ କିଛି କଥା ନ ଶୁଭୁ । ଗରମ ହୋଇଯାଉ ସମାଜ । ବିସ୍ଫୋରକ ଉତ୍ତେଜନା ବିଛେଇ ହୋଇ ରହିଥାଉ ସବୁଆଡ଼େ । ଏଇ ହେଲା ଆମ୍ଭମାନଙ୍କର ଜାତକର ଭାଷା । ଆମେ ପଢୁଚୁ । କାହିଁକି ପଢୁଚୁ କେଜାଣି ? ଏ ବୟସରେ ଆଉ କିଛି କାମ କରିବାକୁ ଆମେ ବୋଧହୁଏ ଯୋଗ୍ୟ ନୋହୁ । ସେଇଥିପାଇଁ ।

ଘଟଣାଟା ଘଟିଲା ସଂସ୍କୃତ କ୍ଲାସ୍‌ରେ । ଆଉ ଅଳ୍ପ କେତୋଟି ବର୍ଷ ପରେ ରିଟାୟାର କରିବେ ଗଙ୍ଗାଧର ପତି । ସମସ୍ତଙ୍କ ପାଖରେ ପଣ୍ଡିତ ବୋଲି ପରିଚିତ ଏଇ ବାଙ୍ଗରା ଶିକ୍ଷକ ପିନ୍ଧନ୍ତି ଧୋତି, ଫୁଲ୍ ସାର୍ଟ ଓ ଦେହରେ ପକାଇଥାନ୍ତି ପତଳା ଧଳା ଚଦର । ଅଧିକାଂଶ ସମୟରେ କଠୋର ଓ ବିଦ୍ରୂପାତ୍ମକ ମନ୍ତବ୍ୟ ଦେବାରେ ଖ୍ୟାତି ଅର୍ଜନ କରିଥିଲେ ସେ । ସମସ୍ତେ ତାଙ୍କୁ ସମ୍ମାନ ଓ ଭୟ ପ୍ରଦର୍ଶନ କରନ୍ତି । ବହୁବର୍ଷ ଧରି ପଢ଼ଉଥିବାରୁ ପାଠ୍ୟପୁସ୍ତକ ତାଙ୍କର ମୁଖସ୍ଥ ହୋଇଯାଇଥିଲା । ଏଥିପାଇଁ କ୍ଲାସ୍‌କୁ ସେ ବହି ଆଣନ୍ତି ନାଇଁ ।

ହଷ୍ଟେଲର ଗୋଟିଏ ରୁମ୍‌ରେ, ପାଖାପାଖି ଖଟରେ ରହୁଥିବା ସୁରେନ୍ଦ୍ର ସହିତ ଆନ୍ତରିକତା ବୃଦ୍ଧି ପାଇଥିଲା ଶେଖରର । ପଣ୍ଡିତେ କେତୋଟି ପ୍ରଶ୍ନ ପଚାରିଥିଲେ ଏବଂ ସୁରେନ୍ଦ୍ର କୌଣସି ଉତ୍ତର ଦେଇ ପାରି ନ ଥିଲା । ପଣ୍ଡିତଙ୍କ ମୁହଁ ବିକୃତ ହୋଇଯାଇଥିଲା । ସେ ତିରସ୍କାର କରିଥିଲେ – "ସଂସ୍କୃତ ହେଉଚି ଦେବଭାଷା । ତୁ ଯେତେ ଚେଷ୍ଟା କଲେ ମଧ ଏ ଭାଷାକୁ ଆୟତ୍ତ କରିପାରିବୁ ନାହିଁ । ଡିଫେକ୍‌ଟଟା ତୋର ନୁହେଁ; ତୋ ଜାତିର । ବିଧାତା ତୋ ମୁଣ୍ଡ ତିଆରି କରିଚି ଫୁଟ୍‌ବଲ୍ ହେଡ୍ କରିବା ପାଇଁ; ସଂସ୍କୃତ ଭାଷା ଶିଖିବା ପାଇଁ ନୁହେଁ ।"

ଏକଥା ସତ ଯେ, ପଣ୍ଡିତେ ନୟାନ୍ତ ଓ ହତାଶ ହୋଇ ପଡ଼ିଥିଲେ ସୁରେନ୍ଦ୍ରକୁ ସଂସ୍କୃତ ଭାଷାର ସହଜ ବ୍ୟାକରଣ ବୁଝାଇବାରେ । ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଥିଲା । ମାତ୍ର ଏହା ସତ୍ତ୍ୱେ ସୁରେନ୍ଦ୍ର ପ୍ରତି ତାଙ୍କର ମନ୍ତବ୍ୟ ଥିଲା ହୃଦୟହୀନ ଓ ଅମାନୁଷିକ । ସେ ଟିଙ୍ଗା ପ୍ରକୃତିର ଲୋକ ବୋଲି ଏମିତି କଥା କହିବା ପାଇଁ ନିଶ୍ଚୟ ଲାଇସେନ୍‌ସ୍ ପାଇ ନାହାନ୍ତି ।

ଏହି ପିରିଅଡ୍ ପରେ ସୁରେନ୍ଦ୍ର କ୍ଲାସ୍ ଛାଡ଼ି ଚାଲିଆସିଥିଲା ହଷ୍ଟେଲକୁ । ସ୍କୁଲ ପରେ ଶେଖର ଦେଖିଲା, ଆଦିବାସୀ ସଂପ୍ରଦାୟର ଏଇ ବଳିଷ୍ଠ ସହପାଠୀ ଜଣକ ପରିଣତ ହୋଇଯାଇଚି ଗୋଟେ ବାରୁଦ ଗଦାରେ । ବିସ୍ଫୋରଣର ମୁହୂର୍ତ୍ତଟେ ଦରକାର କରୁଥିଲା ସେ । ଅଳ୍ପଦିନ ମଧ୍ୟରେ ଫୁଟବଲ୍ ଖେଳାଳି ଭାବରେ ନାମ ଅର୍ଜନ କରିସାରିଥିବା ସୁରେନ୍ଦ୍ର ପ୍ରସ୍ତୁତ ରଖିଥିଲା ନିଜର ଦୁଇଗୋଡ଼କୁ । ଘୋଷଣା କଲା ସେ – "ଗୋଟେ ଫୁଟ୍‌ବଲ୍ ଭଳି ଏ ପଣ୍ଡିତକୁ, ସଂସ୍କୃତ ଭାଷାକୁ, ଏ ସ୍କୁଲକୁ କିକ୍ କରିବା ପାଇଁ ମୁଁ ଯାଉଚି । ସେ ଫୁଟ୍‌ବଲ୍ ଠୋ କରି ଫାଟିଯିବ ପବନରେ । ତା'ର ଚିହ୍ନବର୍ଣ୍ଣ ଆଉ ମିଳିବ ନାହିଁ ।"

ଘଟଣାଟା ଚପେଇ ଦେବା ପାଇଁ ବହୁତ ଚେଷ୍ଟା କରିବାକୁ ପଡ଼ିଥିଲା । ଏ ବ୍ୟାପାରରେ ହେଡ୍‌ମାଷ୍ଟରଙ୍କ ପାଖକୁ ସୁରେନ୍ଦ୍ର ଯେଉଁ ଦରଖାସ୍ତ ଲେଖିଥିଲା, ତାହାକୁ ସେ ଚିରିଲା ସମସ୍ତେ ତାକୁ ପ୍ରବର୍ତ୍ତେଇବା ଫଳରେ । କହିଲା – "ପଣ୍ଡିତେ ମୋ ସଂପ୍ରଦାୟର ଲୋକଙ୍କୁ ଚିହ୍ନନ୍ତି ନାହିଁ । ଆମେ ଅପମାନ ସହି ପାରୁନା । ପ୍ରତିଶୋଧ ନେଉ । କଠୋର ପ୍ରତିଶୋଧ ।" ଶେଖର ଆଡ଼େ ଚାହିଁ ଯୋଗକଲା – "ତୁମ ସମ୍ପ୍ରଦାୟ ଯଥେଷ୍ଟ ଆଜ୍ଞାବହ, ନମ୍ର । ତୁମେ ଅପମାନ ହଜମ କରିପାର, ଗ୍ରହଣ କରି ନେଇପାର । ଆତ୍ମସମର୍ପଣ କରିପାର । ଆମେ କିନ୍ତୁ ପ୍ରତିରୋଧ କରୁ । ଆମକୁ ଆଘାତ ଦେଲେ ଆମେ ଆଘାତ ଦେଉଁ । ଠିକ୍ ଅଛି । ଏଇ ଥରକ ମୁଁ ସବୁ କଥା ଭୁଲିଯିବା ପାଇଁ ଚେଷ୍ଟା କରୁଚି । ତା'ମାନେ, ପଣ୍ଡିତକୁ କ୍ଷମା କରିଦେଉଚି ।"

କୌଣସି ବିପ୍ଳବ, ପ୍ରତିବାଦ ପ୍ରକାଶିତ ହେଲା ନାହିଁ । ମାତ୍ର କିଛିଦିନ ପରେ ପଣ୍ଡିତେ ପୁଣି ଏକ ଭୁଲ କରି ପକାଇଲେ । ଏଥର ତାଙ୍କ ମନ୍ତବ୍ୟ ଥିଲା – ‘‘ଶେଖର ଭଳି ଗୋଟେ ପିଲା ସଂସ୍କୃତ ଭାଷାରେ ଧୁରନ୍ଧର ହୋଇପାରୁଚି । ଦେଖିଲା ବେଳକୁ, ତୁମେ ସବୁ ଘୋଡ଼ାମୁହାଁ ଭଳି ଚୁପ୍ ହୋଇ ବସିରହୁଚ ! ଧିକ୍ ତୁମ୍ଭମାନଙ୍କୁ !’’

ଏତକ କହିସାରିବା ପରେ ସେ ସମସ୍ତଙ୍କୁ ବସିବା ପାଇଁ ନିର୍ଦ୍ଦେଶ ଦେଲେ ଏବଂ ବ୍ଲାକ୍‌ବୋର୍ଡ଼ରେ କିଛି ଲେଖିବା ପାଇଁ ଉଦ୍ୟତ ହେଲେ । ସଚେତନ ହେଲେ ଯେ ଶେଖର ଠିଆ ହୋଇ ରହିଚି । ବିଦ୍ରୂପର ହସ ହସି କହିଲେ – ‘‘ଏଥର ବସ । ଠିଆ ହୋଇ ରହିଲ କାହିଁକି ? ତୁମେ ଉତ୍ତର ଦେଇପାରିଚ ବୋଲି ସମସ୍ତେ ଜାଣିସାରିଲେଣି ।’’

–‘‘ସାର୍, ମୋର ଗୋଟେ ପ୍ରଶ୍ନ ଥିଲା ।’’ ନିଜକୁ ଯଥାସମ୍ଭବ ସଂଯତ ଓ ନମ୍ର କରିବାକୁ ଚେଷ୍ଟା କରୁଥିବା ଶେଖର ସ୍ୱରରେ ରହିଥିଲା ଉତ୍ତେଜନା । ତା’ ମୁହଁ ଲାଲ୍ ଦେଖାଗଲାଣି ସେତେବେଳକୁ ।

ବହୁଦିନ ହେବ ଶେଖରକୁ ଜଣେ ଧୀରସ୍ଥିର, ଆଜ୍ଞାବହ ପିଲା ବୋଲି ଜାଣିଥିଲେ ପଣ୍ଡିତେ । କିନ୍ତୁ ସେ ଅଲଗା ଦେଖା ଯାଉଥିଲା । ମୁକାବିଲା କରିବା ଭଳି ଦୁଃସାହସ ଦେଖାଗଲା ତା’ଠାରେ । ପଣ୍ଡିତେ କେବଳ ଚାହିଁରହିଲେ ଜିଜ୍ଞାସୁ ମୁହଁ ନେଇ ।

–‘‘ଅବିକା ଆପଣ କହିଲେ ।’’ ଶେଖର ଆରମ୍ଭ କଲା – ‘‘ଶେଖର ଭଳି ଗୋଟେ ପିଲା ସଂସ୍କୃତ ଭାଷାରେ ଧୁରନ୍ଧର ହୋଇପାରୁଚି । ଏଇ ବାକ୍ୟର ତାତ୍ପର୍ଯ୍ୟ ଟିକିଏ ବୁଝେଇ ଦିଅନ୍ତୁ ।’’

ନିତାନ୍ତ ରକ୍ଷଣଶୀଳ, ବୃଦ୍ଧ ସଂସ୍କୃତ ଶିକ୍ଷକ ଜଣକ ଏମିତି ଚାଲେଞ୍ଜଟେ ଆଶା କରି ନ ଥିଲେ । ସେ ଅପ୍ରତିଭ ହୋଇ ପଡ଼ିଲେ ଏବଂ ସେଇ କାରଣରୁ କ୍ରୋଧାନ୍ୱିତ ହୋଇଗଲେ । କହିଲେ – ‘‘ବସ, ବସ । ମୋ ସମୟ ନଷ୍ଟ କରନା ।’’ ସେ ବ୍ଲାକ୍‌ବୋର୍ଡ଼ ଆଡ଼େ ମୁହେଁଇଲେ ।

ଶେଖର ବସିଲା ନାହିଁ । କହିଲା – ‘‘ଆପଣ ଯଦି ବୁଝେଇ ନ ପାରିବେ, ତେବେ ବାଧ୍ୟ ହୋଇ ମୋତେ ହେଡ୍‌ମାଷ୍ଟର, ସ୍କୁଲ ଇନ୍‌ସପେକ୍ଟର, ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ଯିବାକୁ ପଡ଼ିବ । ଆପଣ ଏଇ ବାକ୍ୟ ଜରିଆରେ କ’ଣ କହିବାକୁ ଚାହିଁଥିଲେ, ତାହା ମୋର ଜାଣିବା ଦରକାର । ଆପଣ ବାରମ୍ବାର ଏପରି ଆକ୍ଷେପ କରିପାରିବେ ନାହିଁ ।’’

ଏତେ ସହଜରେ ପଣ୍ଡିତେ ଧସକି ପଡ଼ିବେ, ପରାଜିତ ଦେଖାଯିବେ ବୋଲି କେହି ଭାବି ନ ଥିଲେ । ସେ ଦୟନୀୟ ଜଣାପଡ଼ିଲେ ମଧ୍ୟ କହିଲେ– "କୌଣସି ଆକ୍ଷେପ କରାଯାଇ ନାହିଁ । ଭଲ ପଢୁଚ ବୋଲି ତୁମେ ନିଜକୁ କ'ଣ ବୋଲି ଭାବୁଚ କି ? ଶିକ୍ଷକ ପ୍ରତି, ବୟସ୍କ ଗୁରୁଜନମାନଙ୍କ ପ୍ରତି ଏଇ ତୁମର ସମ୍ମାନବୋଧ ? ଏଇ ଔଦ୍ଧତ୍ୟ ଦେଖାଇବ ବୋଲି ପାଠ ପଢୁଛ ?"

ଶେଖର କିଛି କହିବା ପୂର୍ବରୁ ସୁରେନ୍ଦ୍ର ଉପସ୍ଥାପନ କଲା ତା' ଅଭିଯୋଗ । କୌଣସି ଉତ୍ତର ନ ଥିଲା ପଣ୍ଡିତଙ୍କର । ସେ ପ୍ରକୃତରେ ଶ୍ରେଣୀର ଅନ୍ୟ ପିଲାଙ୍କ ଆଡ଼େ ଚାହିଁଲେ ଅସହାୟ ହୋଇ । ସୂଚେଇ ଦେଲେ ଯେ ସେ ବୁଡ଼ି ଯାଉଚନ୍ତି ଗଭୀର ସୁଅରେ । ଅନ୍ୟମାନେ ତାଙ୍କୁ ଉଦ୍ଧାର କରିବା ଏକାନ୍ତ ଜରୁରୀ । ମାତ୍ର କ୍ଲାସ୍‌ରୁମ୍‌ର ବେଙ୍କ ସତେଯେପରି ରହିଥିଲା ଅସାଧାରଣ ନିସ୍ତବ୍ଧତା ଓ ଉପାୟହୀନତାର ଦୃଢ଼ ଜାବ ମଧ୍ୟରେ ।

ପ୍ରଥମେ ଶେଖର କ୍ଲାସ୍‌ରୁମ୍ ଛାଡ଼ିଲା । ପରେ ପରେ ସୁରେନ୍ଦ୍ର । ଏତେ ଯୁଗ ଧରି ନିର୍ଯାତନା ଓ ଅପମାନର ଶିକାର ହୋଇଥିବା ଶକ୍ତିଟେ ପ୍ରକାଶ କଲା ନିଜକୁ । ଏହା ଅନ୍ୟମାନଙ୍କୁ ଦେଖାଇଲା ନିଜର କ୍ଷତବିକ୍ଷତ ଦେହ । ଘୋଷଣା କଲା ଯେ ଅଧିକ ଆଘାତ ସହିବା ସମ୍ଭବ ନୁହେଁ ତା' ପକ୍ଷେ ।

ରିସେସ୍ ବେଳକୁ ବ୍ୟାପାରଟା ଆଲୋଡ଼ନ ଓ ଚାଞ୍ଚଲ୍ୟ ସୃଷ୍ଟି କରିସାରିଥିଲା ସ୍କୁଲ ପରିସରରେ । ସେତେବେଳକୁ ଶେଖର ଲେଖିସାରିଥିଲା ଦରଖାସ୍ତ । ପଞ୍ଚମଶ୍ରେଣୀରେ ପଢୁଥିବା ବେଳେ ଶିକ୍ଷକଙ୍କ ନିର୍ଦ୍ଦେଶରେ ପିଲାମାନଙ୍କର କାନମୋଡ଼ି ଚଟକଣା ଦେଇଥିଲା ଏବଂ ଏଥିପାଇଁ ବାପାଙ୍କୁ ଗାଁ ଲୋକଙ୍କ ସାମନାରେ ଗୋଡ଼ତଳେ ପଡ଼ିବାକୁ ହୋଇଥିଲା । ସେ ବିସ୍ମିତ ହେଉଥିଲା ଏଇ କାରଣରୁ ଯେ, ସେ ମେଧାବୀ ହୋଇଥିବାରୁ ହିଁ ସମସ୍ୟା ସୃଷ୍ଟି ହେଉଥିଲା । ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ହୋଇପଡୁଥିଲା । ମାତ୍ର ଏଥର ଏଇ ସମସ୍ୟାର ସନ୍ତୋଷଜନକ ସମାଧାନଟେ ଦରକାର ।

ହେଡ୍‌ମାଷ୍ଟର ପଢ଼ିଲେ ଦରଖାସ୍ତଟା । ବିଚଳିତ ଦେଖାଗଲେ । ସହାନୁଭୂତିର ସହିତ ଚାହିଁଲେ ଶେଖରକୁ । କଲିଙ୍ଗ୍‌ବେଲ୍ ଟିପିଲେ । ପିଅନ ଆସିବା ମାତ୍ରେ ନିର୍ଦ୍ଦେଶ ଦେଲେ– "ମୋ ଅଫିସ୍ ଭିତରକୁ କାହାରିକୁ ଛାଡ଼ିବ ନାହିଁ ।"

ପିଅନ ଯିବା ପରେ ହେଡ୍‌ମାଷ୍ଟର କହିଲେ– "ଯଦି ତୁମକୁ ଏପରି କୁହାଯାଇଥାଏ, ତେବେ ଏହାକୁ ମୁଁ ଏକ ଦୁର୍ଭାଗ୍ୟଜନକ ଘଟଣା ବୋଲି କହିବି । ଏନି ୱେ, ତୁମେ ଶେଖର ମୋଠାରୁ କେଉଁ ପ୍ରକାର ପ୍ରତିକାର ଚାହଁ ?"

—"ସାର୍, ମୁଁ— ।" ଶେଖର ଶେଷ କରିପାରିଲା ନାହିଁ ନିଜ ବକ୍ତବ୍ୟ ।

—"ତୁମେ ସନ୍ତୁଷ୍ଟ ହେବ କି ?" ହେଡ୍‌ମାଷ୍ଟର ପଚାରିଲେ— "ଯଦି ସେ ମୋ ସାମନାରେ ନିଜର ଦୋଷ ସ୍ୱୀକାର କରନ୍ତି ଏବଂ ତୁମଠୁ କ୍ଷମା ପ୍ରାର୍ଥନା କରନ୍ତି ? କିମ୍ବା କ୍ଲାସ୍‌ରେ, ସମସ୍ତଙ୍କ ଆଗରେ ତୁମଠୁ କ୍ଷମା ପ୍ରାର୍ଥନା କରନ୍ତି ? ଅନ୍ୟ ଉପାୟ ମଧ୍ୟ ଅଛି । ତାଙ୍କୁ ଚାକିରିରୁ ସସ୍‌ପେଣ୍ଡ କରାଯାଇପାରେ । ତାଙ୍କ ନାମରେ ମୋକଦ୍ଦମା ମଧ୍ୟ କରାଯାଇପାରେ ।" ଟିକିଏ ଦମ୍ ନେଲେ ସେ । ଶେଖର ମୁହଁର ଭାବନା ପଢ଼ିବା ପରେ କହିଚାଲିଲେ— "ତାଙ୍କ ବିରୋଧରେ କେଉଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ତୁମେ ଶାନ୍ତି ପାଇବ ? ମନେରଖ, ଅଳ୍ପ କେତେଟା ଦିନ ପରେ ସେ ରିଟାୟାର୍ କରିବେ । ତାଙ୍କର ନାତିମାନେ ମଧ୍ୟ ତୁମଠାରୁ ବୟସରେ ବଡ଼ ।"

ଦୀର୍ଘ ନୀରବତା । ଶେଖର ଚାହିଁଲା ହେଡ୍‌ମାଷ୍ଟରଙ୍କୁ । ଅନୁଭବ କଲା ଯେ ତା' ଅନ୍ତରାତ୍ମା ପ୍ରକମ୍ପିତ ହୋଇ ଯାଉଚି ଏବଂ କରୁଣ ବିଳାପର ସୁଅ ପ୍ରଖର ହୋଇ ପଡୁଚି । ତା' ଭିତରେ ରହିଥିବା କ୍ରୋଧ ଓ ପ୍ରତିଶୋଧ ଉତ୍ତାପ ହରାଉଚି । ପ୍ରଥମେ ସେ ପାପୁଲି ପିଠିରେ ଝରି ଆସୁଥିବା ଲୁହ ପୋଛିଲା । କିଛି କହିବା ପାଇଁ ଚେଷ୍ଟା କରି କୃତକାର୍ଯ୍ୟ ହୋଇ ପାରିଲାନାହିଁ । ଭୁଶୁଡ଼ି ଗଲା ତା' ମୁହଁ । ପରେ ଦୁଇ ପାପୁଲିରେ ମୁହଁ ଢାଙ୍କି ସେ କାନ୍ଦି ପକାଇଲା ।

ହେଡ୍‌ମାଷ୍ଟର ଅପେକ୍ଷା କଲେ । ଦରଦୀ ହୋଇପଡ଼ିଲେ ସ୍କୁଲର ଏଇ ମେଧାବୀ ଛାତ୍ର ପ୍ରତି । ସେ ଦେଖାଗଲା ନିଃସଙ୍ଗ ଓ ଅସହାୟ । ତା' ପ୍ରତି ହୋଇଥିବା ଅନ୍ୟାୟ ପାଇଁ ସେ ପ୍ରତିକାରର ବାଟ ପାଉ ନାହିଁ । ଦୀର୍ଘ ସମୟ ପରେ ସେ ପ୍ରକୃତିସ୍ଥ ହେଲା । ତା' ମୁହଁ ଫେରି ପାଉଥିଲା ସ୍ୱାଭାବିକ ଆକାର । ସେ ହାତ ବଢ଼ାଇଲା । ପେପରୱେଟ୍ ତଳେ ରହିଥିବା ଦରଖାସ୍ତ ଉଠାଇ ନେଲା । ଦ୍ୱାରଆଡ଼େ ଯିବାବେଳେ ଦରଖାସ୍ତ ପରିଣତ ହୋଇ ଯାଇଥିଲା ଅସଂଖ୍ୟ ଟୁକୁରା କାଗଜରେ ।

ମାଟ୍ରିକ୍ ପରୀକ୍ଷା ଶେଷ ହେବା ବେଳେ ବେଶ୍ କେତୋଟି ଆଖିଦୃଶିଆ ପରିବର୍ତ୍ତନ ଘଟିସାରିଥିଲା ଗାଁରେ, ବିଶେଷତଃ ହରିଜନ ସାହିରେ । ସାହି ଭିତରେ ଖୋଳା ଯାଇଥିଲା ଗୋଟେ ଟିଉବ୍ ୱେଲ । ଲୋକମାନେ ସରକାର ପ୍ରତି କୃତଜ୍ଞତାରେ ଓଦା ହୋଇ ଯାଇଥିଲେ । ଶୁଖିଲା, ପାହାଡ଼ୀ ଅଞ୍ଚଳ । ବ୍ୟକ୍ତିଗତ ସ୍ତରରେ କୂଅ ଖୋଳିବା ସହଜ ନ ଥିଲା । ଯେଉଁ ତିନୋଟି ସରକାରୀ କୂଅ ଥିଲା, ତାହାକୁ ଅଧିକାର କରିଥିଲେ ସବର୍ଣ୍ଣମାନେ । କୂଅ ପାଖକୁ ଯିବା ସ୍ୱପ୍ନ ଥିଲା ହରିଜନମାନଙ୍କ ପାଇଁ । ଏକମାତ୍ର ପୋଖରୀରେ ଲୋକମାନେ ସମସ୍ତ କାମ

କରନ୍ତି । ଖରାଦିନେ ଧୋବା ତୁଠ କରେ । ଗୋରୁଗାଈ ପାଣି ପିଅନ୍ତି । ଏଇ ପୋଖରୀପାଣି ହରିଜନ ସାହିର ଲୋକମାନେ ଘରେ ବ୍ୟବହାର କରିବା ସତ୍ତ୍ୱେ ଅନ୍ୟମାନଙ୍କ ଭଳି କିପରି ଆପାତତଃ ସୁସ୍ଥ ଓ ନିରୋଗ ହୋଇ ରହିଥିଲେ ତାହା ଏକ ବିସ୍ମୟ ।

ଏମ୍.ଏଲ୍.ଏ. ବୋଲି ଜଣେ ଲୋକ ଅଛନ୍ତି । ଗାଁର ଅଧିକାଂଶ ଲୋକ ଜାଣି ନ ଥିଲେ ଏକଥା । ଅନ୍ୟମାନେ କହିବା ଅନୁସାରେ ସେମାନେ ଭୋଟ ଦେଉଥିଲେ; ମାତ୍ର ଏହାର ଗୁରୁତ୍ୱ କ'ଣ, ଏହାଦ୍ୱାରା ସେମାନଙ୍କର କିଛି ଉପକାର ହେଉଚି କି ନା, ସେ ବିଷୟରେ ପ୍ରାୟ ସମସ୍ତେ ଅଜ୍ଞ ଥିଲେ । ତେବେ ଭୋଟ ପୂର୍ବରୁ କାନ୍ଥ-ପାଚେରି ଉପରେ ଲଗେଇ ଦିଆଯାଉଥିଲା ପୋଷ୍ଟର । ଗାଡ଼ି-ମୋଟର ଧାଁ ଦଉଡ଼ କରୁଥିଲା । ଗର୍ଜନ କରୁଥିଲା ମାଇକ୍ । ଦେଶର ସମସ୍ତ ସମସ୍ୟାର ଶେଷ ମୁହୂର୍ତ୍ତ ପହଞ୍ଚିଗଲାଣି ବୋଲି ଗୁଡ଼ାଏ କୋଳାହଳ ସୃଷ୍ଟି ହୋଇ ଯାଉଥିଲା । ତା'ପରେ କ'ଣ ସବୁ ହୁଏ କେଜାଣି ? ବର୍ଷା—ପବନ ମାଡ଼ରେ ହଜିଯାଏ ପୋଷ୍ଟର । ଭୋଟ ଦେବା ବେଳେ ଦିଆଯାଉଥିବା ଆଙ୍ଗୁଳି ଉପରର କଳା ଚିହ୍ନ ଲୋପ ପାଇଯାଏ ।

ଟିଉବ୍ ୱେଲ୍ ଉଦ୍‌ଘାଟନ ଉତ୍ସବ । ସ୍କୁଲ୍‌ରୁ ଅଣାଯାଇଥିଲା ଟେବୁଲ୍, ତିନୋଟି ଚେୟାର । ଏମ୍.ଏଲ୍.ଏ., ବି.ଡ଼ି.ଓ. ଏବଂ ଓଭରସିଅର ବସିଲେ । ସାମନାରେ ଅଧା ଲଙ୍ଗଳା ମଇଳା ପିଲାଗୁଡ଼ିଏ । କିଛି ଗୋଟେ ଅଲୌକିକ ଘଟଣା ଦେଖିବେ ବୋଲି ଉଦ୍‌ବିଗ୍ନତା । ଦଶ-ପନ୍ଦର ଜଣ ବୟସ୍କ ଲୋକ । ଘର ପିଣ୍ଡାରେ, ତାଟି କୋଣରେ ଲୁଚେଇ ରଖିଥିବା ସ୍ତ୍ରୀଲୋକ । ଭାଷଣର ସାରାଂଶ ଥିଲା, ଯେଉଁ ସରକାର ଗାଁ ଗହଳର ଲୋକଙ୍କ ପାଇଁ ଏତେ କାମ କରୁଚି, ସେମାନଙ୍କର ଉନ୍ନତି ପାଇଁ ଅଗଣିତ ଯୋଜନା କରୁଚି, ବିଶେଷତଃ ଆଦିବାସୀ ହରିଜନମାନଙ୍କ ମଙ୍ଗଳ ପାଇଁ ବିଶେଷ ଧ୍ୟାନ ଦେଉଚି, ତାହା ପ୍ରତି ସମସ୍ତେ କୃତଜ୍ଞ ରହିବା ଉଚିତ । ଅମୁକ ଚିହ୍ନରେ ଲୋକମାନେ ସବୁବେଳେ ଭୋଟ ଦେଇ ସରକାର ଗଢ଼ିବା ଦିଗରେ ଅଂଶ ଗ୍ରହଣ କରନ୍ତୁ । ସେହି ଦଳ ବ୍ୟତୀତ ଅନ୍ୟ କେହି ଏମାନଙ୍କ ପାଇଁ ଏତେ ତ୍ୟାଗ କରିପାରିବେ ନାହିଁ ।

ଏମ୍.ଏଲ୍. ଏ. ହେଣ୍ଡଲ୍ ମାରିଲେ । ବି.ଡି.ଓ. ଏବଂ ଓଭରସିଅର ସଂଗ୍ରହ କଲେ ଉଚ୍ଛୁଳି ଆସିଥିବା ପାଣି । ଏ ପାଣିର ମାଲିକ ହରିଜନ ସାହିର ସମସ୍ତ ଲୋକ । ତାଙ୍କ ପିଲାମାନେ ମାଗଣାରେ ପଢ଼ିବେ, ଷ୍ଟାଇପେଣ୍ଡ ପାଇବେ, ଚାକିରି କରିବେ, ନିର୍ମଳ ପାଣି ସେବନ କରିବେ ଏବଂ ବିଜୁଳି ଆଲୁଅ ବ୍ୟବହାର କରିବେ । ଏହାର ମାତ୍ର ଅଳ୍ପଦିନ ପରେ ଗାଁ ମୁଣ୍ଡରେ ତିଆରି ହେଲା ସବ୍‌ଷ୍ଟେସନ୍ । ସେଇଠୁ ତାର ଟଣାଗଲା । ପ୍ରଥମେ

ଦୁଇଟି ଟିଉବ୍ ଲାଇଟ୍ ଜଳିଲା ହରିଜନ ସାହିରେ । ସରକାର ମାଗଣାରେ ଯୋଗାଇଦେଲେ ଆଲୁଅ, ପାଣି, ଶିକ୍ଷା ଏବଂ ଚାକିରି ।

—"ଏ ଶଳା ପାଣଙ୍କର ମୁହଁ ବହୁତ ବଢ଼ିଗଲାଣି ।" ପରିବର୍ତ୍ତନର ଧାରାକୁ ଠିକ୍ ଭାବରେ ବୁଝି ନ ପାରୁଥିବା ଲୋକ ଜଣେ ମନ୍ତବ୍ୟ ବାଢ଼ିଲା— "ମୋର ଡର ହେଉଚି, ଏମାନଙ୍କ ମଧ୍ୟରୁ ଜଣକୁ ସରକାର ଚାକିରି ଦେବ ମନ୍ଦିରରେ । ସେ ଠାକୁର ପୂଜା କରିବ ।"

—"ହରେ ରାମ, ହରେ କୃଷ୍ଣ ।" ନିତ୍ୟାନନ୍ଦ ପୁରୋହିତ ଆର୍ତ୍ତନାଦ କରି ଉଠିଲେ ଏବଂ ଘୋଷଣା କଲେ ଯେ ସଂହାର ବେଳ ଆଉ ବେଶି ଦୂରରେ ନାହିଁ । ଶାସ୍ତ୍ର ଅନୁସାରେ ତୁମେ ଆଉ ଚଳିପାରିବ ନାଇଁ । ଚଳିବ ସରକାରୀ ନିୟମ ଅନୁସାରେ । ତାହା ହେଉଚି ବେଦର ଗାର । ଯେଉଁ ଲୋକ ପାଦ ପାଖରେ ରହିବା କଥା, ସେ ଏଥର ରହିବ ମୁଣ୍ଡ ଉପରେ । ସେମାନଙ୍କୁ ଏବେ ପାଣ ବୋଲି କହିପାରିବ ନାଇଁ ତୁମେ । ଜେଲ୍ ହୋଇଯିବ । ସେମାନେ ସରକାରୀ ଜମି, ଗୋଚର, ସବୁ ଦଖଲ କରିବେ । ପାଟି ଖୋଲିପାରିବ ନାଇଁ । ଏସବୁର ମାନେ ହେଉଚି ସେମାନେ ଶାସନ କରିବେ ଏଣିକି । ଏବେ ଆରମ୍ଭ ହେବ ଶୂଦ୍ରମାନଙ୍କର ଉତ୍ପାତ । କେଡ଼େ ଖରାପ ହୋଇଗଲା ଏ ଯୁଗ ! ଓଲଟା ଯୁଗ ଇଏ । ଏଇ ଦେଖୁନ, ଦେଖ ! ସେ ଟୋକାର ଫେସନ, ଫୁଟାଣି ଦେଖ !

ସାଇକେଲ୍‌ରେ ପେଡ଼ଲ ମାରି ଶେଖର ଯାଉଥିଲା ଗାଁ ଦାଣ୍ଡରେ । ବଉଳଗଛ ମୂଳ ଚିକ୍‌କଣ ପଥର ଉପରେ ବସିଥିଲେ ଗାଁର କେତେଜଣ ବୟସ୍କ ଲୋକ । ପୃଥିବୀ ବିକଳାଙ୍ଗ ଓ ନୀତି ବିଚ୍ୟୁତ ହୋଇ ପଡୁଚି ବୋଲି କ୍ଷୋଭ ଓ ଅସହାୟତା ପ୍ରକାଶ କରୁଥିଲେ ।

—"ଆରେ, ଇଏ କିଏ ? ହାଡ଼ିଆ ପୁଅ ଯାଉଚି ନା ଆଉ କିଏ ?" କେହି ଜଣେ ଅନିଶ୍ଚିତତା ପ୍ରକାଶ କଲେ । ଅସଲ କଥା ହେଉଚି, ହାଡ଼ିଆ ପୁଅ ଏମିତି ଆଚରଣ ଦେଖାଇବା ସ୍ପୃହଣୀୟ ନୁହେଁ ବୋଲି ଏଇ ପ୍ରଶ୍ନ ଜରିଆରେ ପ୍ରକାଶ କରାଗଲା ।

ସାଇକେଲ ବୁଲାଇଲା ଶେଖର । ସେମାନଙ୍କ ସାମନାରେ ରାସ୍ତା ମଝିରେ ଅଟକିଗଲା । ସାଇକେଲ୍ ସିଟ୍‌ରୁ ନ ଓହ୍ଲାଇ ପ୍ରଶ୍ନ କଲା— "ମୋତେ କିଛି କହିଥାନ୍ତେ କି ? ମହାଶୟ, ହାଡ଼ିଆ ପୁଅର ମଧ୍ୟ ଗୋଟେ ନାମ ଅଛି । ମୋ ନାମ ଶେଖର ।"

ସେ ପିନ୍ଧିଥାଏ ଜିନ୍ ପେଣ୍ଟ । ଗାରଗାରିଆ କମିଜ । ସାମ୍ପୁ କରାଯାଇଥିବା କେଶ । ରିଷ୍ଟ ୱାଚ୍ । ଗାଁ ପିଲାଙ୍କ ମଧ୍ୟରେ ସବୁଠାରୁ ବେଶି ସ୍ମାର୍ଟ, ବେଶି ବିଚକ୍ଷଣ ଓ ଚାଲାକ, ଏଇ ପିଲାଟି ହରିଜନ ବୋଲି ଜାଣି ନ ଥିବା ଲୋକ ଜଣେ ସହଜରେ ବିଶ୍ୱାସ କରନ୍ତେ ନାହିଁ ।

ଆଶ୍ଚର୍ଯ୍ୟ କଥା, କେହି କିଛି କହିପାରିଲେ ନାହିଁ । ସେ ସାଇକେଲରୁ ଓହ୍ଲାଇବ, ପାଦରୁ ଚପଲ ଖୋଲି ମୋର ଭୁଲ ହୋଇଯାଇଚି ବୋଲି କହିବ । ନା ସେମିତି ମାନସିକତା ହଜିଯାଉଚି । ଏମାନଙ୍କୁ ଆଉ କିଛି କହି ହେବ ନାହିଁ । ଏମାନେ ଆଉ କାହାର ଆୟତ୍ତରେ ନ ଥିଲେ ।

ଶେଖର ବି.ଏ. ପରୀକ୍ଷା ପରେ ଗାଁରେ ଥିବା ଅବସରରେ ଯେଉଁ ଘଟଣା ଘଟିଲା, ତାହାର ତାତ୍ପର୍ଯ୍ୟ ଓ ଗୁରୁତ୍ୱ ଥିଲା ବିବିଧ ଏବଂ ଜଟିଳ । ଏଇ ଘଟଣାକୁ ବିଶ୍ଳେଷଣ କଲେ ହରିଜନସାହିର ଲୋକମାନଙ୍କର ମାନସିକତାରେ କି ପ୍ରକାର ପରିବର୍ତ୍ତନ ଘଟୁଚି, ତାହା ନିର୍ଣ୍ଣୟ କରିବା ସହଜ ହେବ । ଯୁଗ ଯୁଗ ଧରି ଏଇ ମାନସିକତା ରହିଥିଲା ବନ୍ଦୀ ହୋଇ, ସାମାଜିକ ବ୍ୟବସ୍ଥାର ସୁଦୃଢ଼ ଘେର ମଧ୍ୟରେ । ଏହାକୁ ନିୟନ୍ତ୍ରଣ କରୁଥିଲା ଏକ ସମର୍ପଣ ଭାବ, ବିନା ପ୍ରତିବାଦରେ ସବୁ କଥା ଗ୍ରହଣ କରିନେବାର ଆଜ୍ଞାବହତା । ଏ ମାନସିକତାର ହୃଦ୍‌ବୋଧ ହୋଇଥିଲା ଯେ ଅନ୍ୟମାନଙ୍କର ଦୟା ଓ ସହାନୁଭୂତି ଏହାର ପ୍ରାପ୍ୟ । ନିଜର ଅଧିକାର ନୁହେଁ, ନିଜର ନ୍ୟୂନବୋଧ ଯୋଗୁ ହିଁ ଏହା ହାସଲ କରାଯିବ । ଜୋର କରି ନୁହେଁ, ଭିକ୍ଷା କରି । ନିଜକୁ ସାବ୍ୟସ୍ତ କରି ନୁହେଁ; ନିଜକୁ କରୁଣାର ପାତ୍ର ବୋଲି ପ୍ରମାଣିତ କରି । ସଳଖ ଭାବରେ ଠିଆହୋଇ ନୁହେଁ; ନତମସ୍ତକ ହୋଇ । ସେମାନେ ଆହୁରି ମଧ୍ୟ ଜାଣିଥିଲେ ଯେ ସେମାନଙ୍କୁ ଜୀବିକା ନିର୍ବାହ କରିବାକୁ ହେବ ଅସୀମ ସତର୍କତାର ସହିତ; ଯେପରିକି ସେମାନଙ୍କର ଜୀବନଧାରା ଅନ୍ୟମାନଙ୍କୁ ସ୍ପର୍ଶ ନ କରେ; ମୁକାବିଲା ନ କରେ । କେଉଁଠି ଅନୁପ୍ରବେଶ ନ କରେ ।

ସେମାନେ ପ୍ରଥମେ ବିଶ୍ୱାସ କରି ନ ଥିଲେ ଯେ ସେମାନଙ୍କ ଭୋଟ୍‌ର ମୂଲ୍ୟ ଯାହା, ଯେକୌଣସି ପ୍ରଭାବଶାଳୀ ଲୋକର ଭୋଟ୍‌ର ମୂଲ୍ୟ ମଧ୍ୟ ତାହା । କେବଳ ସେମିତି ନୁହେଁ । ସରକାର ବୋଲି ଜିନିଷଟେ ଅଛି, ସେମାନଙ୍କ ପିଠିରେ ପଡ଼ିବାକୁ । ତା' ନ ହୋଇଥିଲେ ଷ୍ଟାଇପେଣ୍ଡର ବ୍ୟବସ୍ଥା କରାଯାଇଥାନ୍ତା କାହିଁକି ? ସେମାନଙ୍କୁ ସହଜରେ ଚାକିରି ଦିଆଯିବ ବୋଲି ପ୍ରତିଶ୍ରୁତିବଦ୍ଧ ହୋଇଥାନ୍ତା କାହିଁକି ? ପୁଣି ଆଇନ୍ ଆଖିରେ ସମସ୍ତେ ସମାନ ।

ଏଇଟା ଥିଲା ମୁକ୍ତି ପାଇଁ ଏକ ଖସଡ଼ା । ସମାନତା ଆଣିବା ପାଇଁ ଗୋଟେ ସଂକଳ୍ପ । ହାତମୁଠା ଭିତରୁ ସେମାନେ ଯେ କେବଳ ଖସି ଯାଉଥିଲେ, ତା' ନୁହେଁ; ସେଇ ହାତମୁଠାକୁ ସେମାନେ ଚାଲେଞ୍ଜ କରୁଥିଲେ । ଏଇଥିପାଇଁ ଗାଁରେ ଥିଲା ଗୋଟେ ଅପ୍ରକାଶିତ, ଟଳମଳ ହେଉଥିବା ଉତ୍ତେଜନା । ଗୋଟିଏ ପାଖରେ ଥିଲା ଅସହିଷ୍ଣୁତା, ଯୁଗଯୁଗ ଧରି ପ୍ରତିଷ୍ଠିତ ହୋଇଥିବା ଜୀବନଧାରା ଉଜୁଡ଼ି ଯାଉଚି ବୋଲି କ୍ଷୋଭ । ଅନ୍ୟ ପାଖରେ ଥିଲା ନିଜକୁ ମୁକ୍ତ ଓ ଜାହିର କରିବା ପାଇଁ ବ୍ୟାକୁଳତା । ଅସ୍ପୃଶ୍ୟତା ବୋଲି ସଂସ୍କାର ମୂଳଦୁଆ ଅନୁଭବ କରୁଥିଲା ଧକ୍କା । ଦରକାର ଥିଲା ଏହାର ମୂଳୋତ୍ପାଟନ ।

ଗାଁର ଲୋକମାନେ ଏମିତି ହୁଏତ ବିଶ୍ଳେଷଣ କରି ନ ଥିଲେ । ମାତ୍ର ପରିବର୍ତ୍ତନର ସୁଅଟେ କ୍ରମେ ଗତିଶୀଳ ହେଉଥିବା କଥା ଅନୁମାନ କରିପାରୁଥିଲେ । ଏ ବାବଦରେ ଅନ୍ୟମାନଙ୍କଠାରେ ହୁଏତ ନୈରାଶ୍ୟ ଥିଲା । ସଂହାର ବେଳ ଆସିଯାଉଚି, ଶୂଦ୍ର ଏବଂ ମ୍ଳେଚ୍ଛମାନଙ୍କର ଆଧିପତ୍ୟ ବଢୁଚି ବୋଲି ଅସହାୟତା ଥିଲା; ମାତ୍ର ସୁଅକୁ ଅଟକାଇବା ପାଇଁ ଉପାୟ ନ ଥିଲା କାହା ପାଖରେ । ସେମାନେ ସମ୍ଭବତଃ ଅନୁମାନ କରିଥିଲେ ଯେ ଆଉ କେତେଟା ଦିନ ପରେ ଶେଖର ବସିବ କୌଣସି ଏକ ଅଫିସ୍‌ରେ । ପଞ୍ଚମ ଶ୍ରେଣୀରେ ତା'ଠାରୁ କାନମୋଡ଼ା ଖାଇଥିବା, ସ୍କୁଲରୁ ଫେରିବା ମାତ୍ରେ ଦୂଷିତ ହୋଇ ଯାଇଚି ବୋଲି ପିନ୍ଧିଥିବା ପୋଷାକ ବଦଳାଇ ଘରକୁ ପ୍ରବେଶ କରୁଥିବା କେହି ଜଣେ, ସେଇ ଅଫିସ୍‌ରେ ନିଯୁକ୍ତ ହୋଇପାରେ ପିଅନ୍ ଭାବରେ । ସେ ଶେଖରର ଆଦେଶ ପାଳନ କରିବ । ତା' ପାଇଁ ରୋଷେଇ କରିବ, ଯୋତା ସଫା କରିବ, ଅଇଁଠା ବାସନ ମାଜିବ ଏବଂ ପରବର୍ତ୍ତୀ ଆଦେଶ ପାଳନ ପାଇଁ ଅପେକ୍ଷା କରିବ ।

—"ହରେ ରାମ, ହରେ କୃଷ୍ଣ !" ଗୋଟାଏ ଆର୍ତ୍ତନାଦ ଭଳି ଶୁଭୁଥିଲା ନିତ୍ୟାନନ୍ଦ ପୁରୋହିତଙ୍କର ସ୍ୱର । ଏବେ ଏଣିକି ତାଙ୍କୁ ଭଲକରି କିଛି ଦେଖା ଯାଉ ନ ଥିଲା । ଚାଲୁଥିଲେ ବଡ଼ କଷ୍ଟରେ ବାଡ଼ିଟେ ଧରି । ଗାଁ ଦାଣ୍ଡରେ ଶିଶିରି ଫୁଟେଇ, ଫିଲ୍ମଗୀତ ଗାଇ ଯାଉଥିବା ଯୁବକ ଜଣକ ହରିଜନ ସାହିର କି ସବର୍ଣ୍ଣ ସାହିର, ତାହା ଜାଣିବା ଆଉ ସମ୍ଭବ କିମ୍ବା ଦରକାର ନ ଥିଲା । ଗାଁ ସ୍କୁଲରେ ଏବେ ଦୁଇଜଣ ଶିକ୍ଷକ ହେଉଚନ୍ତି ଅସବର୍ଣ୍ଣ । ସେମାନେ ପିଲାମାନଙ୍କୁ ମାଡ଼ ଦିଅନ୍ତି । କୌଣସି ପ୍ରତିକ୍ରିୟା ନ ଥାଏ । ହାଡ଼ିବନ୍ଧୁ ଏବେ ଚାରି-ପାଞ୍ଚୋଟି ଗାଈରୁ ପ୍ରଚୁର କ୍ଷୀର ପାଉଚି । ପାଖରେ ଥିବା ଶୀତଳ ଭଣ୍ଡାରକୁ ତାହା ନେବାରେ କିଛି ଅସୁବିଧା ନାହିଁ । ରୋକ୍‌ଠୋକ୍ ଶୁଣେଇଥିଲା ସେ— କେହି ଜଣେ ଆସି ତା' ଗାଈକୁ ଶୁଦ୍ଧ କରିବ ଏବଂ ସେତେବେଳଯାଏଁ ସେ ଗାଈ-ବାଛୁରୀକୁ ଅଲଗା କରି ରଖିଥିବ ! ସେମିତି ହୋଇପାରିବ ନାହିଁ ।

କିଛିଦିନ ପୂର୍ବେ ସୁଧାକର ମିଶ୍ରଙ୍କ ପତ୍ନୀ, ଶାନ୍ତନୁ ମା' ଖୁଡ଼ୀ, ପହଞ୍ଚି ଯାଇଥିଲା ହାଡ଼ିବନ୍ଧୁ ଘରେ । ସଞ୍ଜବେଳେ ତାଙ୍କୁ ଦେଖି ସ୍ତମ୍ଭୀଭୂତ ଓ ବିଚଳିତ ହୋଇଯାଇଥିଲା ଜେମା । ଉଲ୍ଲେଖ କରାଯାଇପାରେ ଯେ, ହାଇସ୍କୁଲରେ ପଢୁଥିବା ବେଳେ ସ୍କଲର୍ସିପ ଟଙ୍କାରେ ଶେଖର ଆଣିଥିଲା ମା' ପାଇଁ ବ୍ଲାଉଜ୍ ଓ ସାୟା । ବାପାଙ୍କ ପାଇଁ ଚପଲ ଓ ଗୋଟେ କାନ୍ଥ ଘଡ଼ି । ସେ ଗାଁରେ ଜେମା ଥିଲା ପ୍ରଥମ ସ୍ତ୍ରୀଲୋକ ବ୍ଲାଉଜ୍-ସାୟା ବ୍ୟବହାର କରିବାରେ ।

–"ଖୁଡ଼ୀ, ତୁମେ ?" ଜେମା ତଥାପି ବିଶ୍ୱାସ କରି ପାରୁ ନ ଥିଲା ଏବଂ ଏଣେ ତେଣେ ଚାହିଁଲା ଅଭ୍ୟର୍ଥନା କିପରି କରିବ, ତାହାର ସୂତ୍ର ପାଇବା ପାଇଁ ।

ଗାଁରେ ସମସ୍ତେ ଜାଣିଥିଲେ ଯେ ଏକଦା ପ୍ରତିଷ୍ଠିତ ମିଶ୍ରପରିବାର ଏବେ ଗତି କରୁଚି ଦୁର୍ଦ୍ଦିନ ମଧ ଦେଇ । ପିଲାମାନଙ୍କ ବ୍ରତ-ବାହାଘର ଇତ୍ୟାଦିରେ ବିକା ଯାଇଥିଲା ଅର୍ଦ୍ଧେକ ଜମି, ଯେଉଁଥିରୁ କିଛି କିଣିପାରିଥିଲା ହାଡ଼ିବନ୍ଧୁ । ବଡ଼ପୁଅ ଆଡ଼ପାଗଳା । ସାନଟି, ଶେଖରର ସହପାଠୀ, ମାଟ୍ରିକ୍ ଫେଲ୍ ହୋଇ ଖୋଲିଚି ଗୋଟେ ତେଜରାତି ଦୋକାନ । ସପ୍ତାହରେ ଥରେ-ଦୁଇଥର ଅନ୍ୟମାନଙ୍କ ସହିତ ମିଶି ମଦ ଓ କୁକୁଡ଼ା ଫିଷ୍ଟ କରେ ।

ଖୁଡ଼ୀ ସିମେଣ୍ଟ ଟାଇଲ ଛପର, ସିମେଣ୍ଟ ଚଟାଣ, ବିଶାଳ ଗୁହାଳ ଇତ୍ୟାଦି ଆଡୁ ଆଖି ଫେରାଇଲା । ଦୀର୍ଘଶ୍ୱାସ ତ୍ୟାଗ କଲା । ଜେମା ବ୍ୟସ୍ତ ହୋଇ ଭିତରୁ ନେଇଆସିଲା ନାଇଲନ୍ ବୁଣା ଚେୟାରଟେ । ପଣତରେ ଧୂଳି ଝାଡ଼ି କହିଲା– "ଖୁଡ଼ୀ, ଏଇଠି ବସ । ମୋର କେଡ଼େ ଭାଗ୍ୟ । ତୁମ ପାଦ ପଡ଼ିଲା ମୋ ଦୁଆରେ । ଆମେ ସମସ୍ତେ ତଥା ଏ ଘରଦ୍ୱାର ପବିତ୍ର ହୋଇଗଲା । କାହା ହାତରେ ଖବରଟେ ପଠେଇ ପାରିଥାନ୍ତ । ମୁଁ ତୁମ ପାଦ ପାଖକୁ ଯାଇଥାନ୍ତି ।"

ଜେମା ଏମିତି ପ୍ରଗଲ୍‌ଭ ହେବାର କାରଣ, ଏଇ ଖୁଡ଼ୀ ଥିଲା ଦରଦୀ ମଣିଷ ଜଣେ । ସୁବିଧା, ଅସୁବିଧାବେଳେ ଗାଁଲୋକେ ହାତ ପାତୁଥିଲେ ଯାଙ୍କ ପାଖରେ । ଅଳ୍ପ ହେଉ, ବେଶି ହେଉ ସାହାଯ୍ୟ ମିଳୁଥିଲା । ସହାନୁଭୂତି ଝରିଆସୁଥିଲା ତା'ଠାରୁ; ଯେମିତିକି ତା' ପାଖରେ ଦୁଃଖ ବର୍ଣ୍ଣନା କରି କାନ୍ଦିଲେ ସେ ମଧ କାନ୍ଦି ପକାଉଥିଲା । ଏବେ ସେ ଦେଖାଯାଉଚି ଲିଭି ଯାଇଥିବା ଗୋଟେ ଲଣ୍ଠନ, ଶୁଖି ଯାଇଥିବା ଗୋଟେ ପୋଖରୀ ଭଳି । ସବୁ ଥଣ୍ଡା, ଧୂସର, ରସହୀନ ।

ଖୁଡ଼ୀ ବସିଲା ଅଗଣାରେ ଥୁଆ ଯାଇଥିବା ଚେୟାରରେ । ତା'ଠୁ ଟିକିଏ ଛାଡ଼ି ତଳେ ବସିଲା ଜେମା । ଅପେକ୍ଷା କଲା ଗୋଟେ ଅବକ୍ଷୟ କେଉଁ ଭାଷା କହିବ, ତାହା ଶୁଣିବା ପାଇଁ ।

—"ଜେମାଲୋ, ତୋ ପାଖରେ ଟଙ୍କା ଅଛି ?" ଗୋଟେ କୁଣ୍ଠିତ ଓ କଂପିତ ସ୍ୱର । ଖୁଡ଼ୀ ଚାହିଁଲା ଜେମା ମୁହଁକୁ ।

—"ହଁ । ଅଛି । ନେବ ?" ଗୋଟେ ସ୍ୱତଃସ୍ଫୁର୍ତ୍ତ ସ୍ୱର । ଖୁଡ଼ୀ ଭଳି ଗୋଟେ ଲୋକକୁ ଟଙ୍କା ଦେବାରେ ହିଁ ସତେଯେପରି ଅଛି ମୋକ୍ଷ ଓ ନିର୍ବାଣ ।

ଏହାକୁ ମାମୁଲି ଦୀର୍ଘଶ୍ୱାସ ବୋଲି କୁହାଯିବ ନାହିଁ । ଖୁଡ଼ୀର ପଞ୍ଜରାହାଡ଼, ରକ୍ତ-ମାଂସ ଉପରେ ଏହା ସତେଯେପରି ଥିଲା ଗୋଟେ ତୁମୂଳ ଝଡ଼ । କହିଲା— "ଅବିକା ଖବର ପହଞ୍ଚିଲା, ବଡ଼ଝିଅ କୁଆଡ଼େ ଅଛି ଡାକ୍ତରଖାନାରେ । ତୋ ଦାଦା ଯିବେ ଦେଖିବାକୁ । ପଇସାଟେ ନାଇଁ ହାତରେ । ଦେଇପାରିବୁ, ତିନି-ଚାରିଶହ ଟଙ୍କା ? ଧାନ ବିକିବା ମାତ୍ରେ ତୋ ଟଙ୍କା ମୁଁ ନିଜେ ଦେଇଯିବି ।"

ଜେମା ଉଠିଗଲା । କେତୋଟି ମୁହୂର୍ତ୍ତ ପରେ ଫେରିଆସି ଖୁଡ଼ୀ ପାଦ ପାଖରେ ରଖିଲା ଟଙ୍କା । କହିଲା— "ନିଅ ଖୁଡ଼ୀ । ପାଞ୍ଚଶହ ଅଛି । ଫେରେଇବା ପାଇଁ ଜମା ତରତର ହେବ ନାଇଁ । ଏଇ କାଲି ଭଳି ଲାଗୁଚି । କେତେ ଲୋକ ପାଇଁ ତୁମେ ଭାତ ବାଢ଼ିଦେଇଚ । ଦାଦା ଧାନ-ବିହନ ଦେଇଚନ୍ତି । ତୁମେ ଏତିକି ଟଙ୍କା ପାଇଁ ଏତେ ବ୍ୟସ୍ତ ହେଉଚ ?"

ହଁ, ଶେଖର ବି.ଏ. ପରୀକ୍ଷା ଦେବା ପରର ଘଟଣା କୁହାଯାଉଥିଲା ।

ଜମି ଆଉ ଘର ଡିହକୁ ନେଇ ଯାବତୀୟ ଝାମେଲା । ବଚସା, ମାଡ଼ପିଟ, ମାଲି ମୋକଦ୍ଦମା ପର୍ଯ୍ୟନ୍ତ କଥା ଯାଏ । କ୍ରୋଧ ଓ ତିକ୍ତତା ସହଜରେ ପ୍ରଶମିତ ହୁଏ ନାଇଁ । କୈଳାଶ ଚଳି ଯାଉଥିଲା କୌଣସି ପ୍ରକାରେ କେଉଁଠି ମଜୁରୀ ଲାଗି, କେଉଁଠି ଇଟା ତିଆରି କରି । ଗାଁ ପାଖ ଜଙ୍ଗଲ ଧ୍ୱଂସ ପାଉଥିଲା ଏବଂ ଗାଁର ସମସ୍ତେ ଏଇ ଇଲାକାରେ ନୂଆ ଜମି ତିଆରୁଥିଲେ । ପୁଣି କୁହୁଉଥିଲେ ଯେ, ଦାନ୍ତକାଠିଟେ, ପତ୍ର ବିଡ଼େ ମିଳୁ ନାଇଁ । ଜାଳେଣି କାଠ ସଂଗ୍ରହ କରିବାକୁ ପଡୁଚି ଭାରି କଷ୍ଟରେ । ଗାଈ-ଗୋରୁ ଚରିବା ପାଇଁ କେଉଁଠି ହେଲେ ଦକଟେ ଜାଗା ନାଇଁ ।

କୈଳାଶ ନେତୃତ୍ୱରେ ଗଢ଼ିଉଠିଥିଲା ସଂକୀର୍ତ୍ତନ ଦଳଟେ । ବଡ଼ ଶାନ୍ତି ମିଳୁଥିଲା କୁଆଡ଼େ ସଞ୍ଜବେଳେ ଘଣ୍ଟେ-ଦୁଇଘଣ୍ଟା ପାଇଁ । ଗାଁରେ ଅଷ୍ଟପ୍ରହରୀ ହେଲେ ହରିଜନ ସାହିର ସଂକୀର୍ତ୍ତନ ଦଳଟି ଠାକୁରଙ୍କ ଆସ୍ଥାନରୁ ଯଥେଷ୍ଟ ଦୂରରେ ରହି କିଛି ସମୟ ପାଇଁ ସଂକୀର୍ତ୍ତନ କରୁଥିଲେ । କୈଳାଶ ନିଜେ ହିଁ ବନ୍ଦ କରି ଦେଇଥିଲା ଏଇ ଘଟଣାକୁ । ସେ କହିଥିଲା ଯେ ଏମିତି ହୀନିମାନ, ଅପମାନିତ ହେବା ଦରକାର କ'ଣ ? ଏ ଠାକୁରଙ୍କୁ ଛୁଇଁହେବ ନାଇଁ । ପାଖକୁ ଯାଇ

ହେବ ନାଇଁ । ପୂଜା-ଆରାଧନା କରିବାକୁ ଚାହିଁଲେ ଦୁନିଆଁ ପ୍ରତିବନ୍ଧକ । କାହା ସାଙ୍ଗେ ସାମାନ୍ୟ ଝଗଡ଼ା ହେଲେ ଜାତି ପ୍ରତି ଆକ୍ଷେପ । କିଛି ଦିନ ପୂର୍ବେ ସେ ଫେରିଥିଲା ମାମୁ ଘର ଗାଁରୁ ଗୋଟେ ଗାରଗାରିଆ ଲୁଙ୍ଗି ପିନ୍ଧି । କହିଥିଲା ଯେ, ମାମୁଙ୍କ ସାହିର ସମସ୍ତ ଲୋକ ମୁସଲମାନ ହେବାକୁ ଚିନ୍ତା କରୁଚନ୍ତି । ସେଇଭଳି ଲୁଙ୍ଗି ପିନ୍ଧିବା ଆରମ୍ଭ କଲେଣି । ତାଙ୍କ ଉପରେ ସବର୍ଣ୍ଣମାନେ କିଛି ଅତ୍ୟାଚାର କଲେ ବଡ଼ ଧରଣର ରକ୍ତାକ୍ତ ସଂଘର୍ଷ ଘଟିବ ଏବଂ ଆବହନମାନ କାଳରୁ ପୁଞ୍ଜୀଭୂତ କ୍ଷୋଭ ଭୟାବହ ପ୍ରତିଶୋଧର ରୂପନେବ ବୋଲି ପ୍ରକାଶ କରିଥିଲା କୈଳାଶ ।

ତା'ପରଠାରୁ କୈଳାଶ ସେଇଭଳି ଲୁଙ୍ଗି ପିନ୍ଧୁଚି । ଏତେ ସରାଗରେ କିଣାଯାଇଥିବା ମୃଦଙ୍ଗ ନୀରବ । ଅତୀତର ଏକ କରୁଣ ପ୍ରତୀକରେ ପରିଣତ ହୋଇଯାଉଚି । ଝାଞ୍ଜ କେତୋଟି ହଜିଗଲାଣି । ଠାକୁର, ପୂଜା ଇତ୍ୟାଦି କଥା କହିଲେ ଖାଲି ଚିଡୁଚି ।

ଗଣ୍ଡଗୋଳଟା ଘଟିଲା ନୂଆ ଜମି ତିଆରିବାର ବ୍ୟଗ୍ରତାକୁ ନେଇ । ଉଜୁଡ଼ି ଯାଇଥିବା ଜଙ୍ଗଲରେ ହିଡ଼ ତିଆରିବାରେ ସେ ବ୍ୟସ୍ତ ଥିଲା । ଏଇ ଖବର ପାଇ ଶୁକ ରାଉତ ପହଞ୍ଚିଗଲା ସେଇଠି । ଘୋଷଣା କଲା ଯେ, ତା' ଜମି ପାଖରେ ସେହି ସ୍ଥାନଟି ଥିବାରୁ, ସେଥିରେ କୈାଳାଶ ହାତ ଦେଇପାରିବ ନାଇଁ । କୈଳାଶ ଶୁଣି ନ ଥିଲା ଏ କଥା । ତା' ହାତରୁ କୋଦାଳ କିପରି ଛଡ଼ାଇବ, ଛଡ଼ାଇବା ଉଚିତ କି ନୁହେଁ ବୋଲି ଭାବୁଥିବା ଅବସରରେ ଶୁକ କୋଦାଳଟା ଫୋପାଡ଼ି ସାରିଥିଲା । ହିତାହିତ ଜ୍ଞାନ ଭୁଲି ଯାଇ କୈଳାଶ ବାଡ଼େଇଥିଲା ଶୁକକୁ । ଘଟଣାଟା ଥିଲା ଅଭୂତପୂର୍ବ ଏବଂ ଚାଞ୍ଚଲ୍ୟକର । ସେ'ଦିନ ସଞ୍ଜବେଳେ ମିଳିତ ଆକ୍ରମଣ ହେଲା କୈଳାଶ ଉପରେ । ପନ୍ଦର କିଲୋମିଟର ଦୂର ଡାକ୍ତରଖାନାକୁ ତାକୁ ନିଆଯାଇଥିଲା ମୁମୂର୍ଷୁ ଅବସ୍ଥାରେ ।

ଏଫ୍.ଆଇ.ଆର୍.ଟା ପଢ଼ିସାରିବା ପରେ ଥାନାର ଭାରପ୍ରାପ୍ତ ଅଫିସର ଚାହିଁଲେ ଶେଖରକୁ ଏବଂ ତା' ପାଖରେ ଠିଆ ହୋଇଥିବା ଅନ୍ୟ ଆଠ-ଦଶଜଣଙ୍କୁ । ପଚାରିଲେ— ''ଏତଲାଟା ଲେଖିଚି କିଏ ? ଜଣେ ଓକିଲ ?''

—''ମୁଁ ଲେଖିଚି ।'' ଘୋଷଣା କଲା ଶେଖର । ପଚାରିଲା— ''କାହିଁକି ? କ'ଣ ହେଇଚି ?''

—''ମୁଁ ବିଶ୍ୱାସ କରିପାରୁ ନାହିଁ ଯେ ଏ ଅଞ୍ଚଳର ଗୋଟେ ପାଣଟୋକା ଏମିତି ଲେଖିପାରିବ ।'' ସ୍ୱୀକାର କଲେ ଅଫିସର । ଜାଣିବାକୁ ଚାହିଁଲେ— ''ତୁମେ କ'ଣ ପଢ଼ାପଢ଼ି କରିଚ ?''

—"ବି.ଏ. ପରୀକ୍ଷା ଦେଇଚି ।" କହିଲା ଶେଖର ଏବଂ ଯୋଗକଲା— "ମୋ ବ୍ୟାପାରରେ ଏତେ ଆଗ୍ରହୀ ନ ହୋଇ ଆମକୁ ନ୍ୟାୟ ଦେବାପାଇଁ ଟିକିଏ ତତ୍ପରତା ଦେଖାନ୍ତୁ ।"

ଅଫିସର ହସିଲେ । କହିଲେ— "ତୁମେ ପଢ଼ାପଢ଼ି କରୁଚ । ସେଇଥିରେ ଧ୍ୟାନ ଦିଅ । ସରକାରଙ୍କର ତୁମେ ଗେହ୍ଲା ପୁଅ ହୋଇଥିବାରୁ କିଛି ନ ହେଲେ ବି କୋଟାରେ ଚାକିରିଟେ ତୁମକୁ ମିଳିଯିବ । କାହିଁକି ଏ ଗାଁ ରାଜନୀତିରେ ମୁଣ୍ଡ ଖେଳଉଚ ? ଏଥିରେ ବହୁତ ଅଡୁଆ ଅଛି । ତୁମ ଭବିଷ୍ୟତ ଉପରେ ଆଞ୍ଚ ଲାଗିଯାଇପାରେ ।"

—"ଆପଣ କ'ଣ ଭାବୁଚନ୍ତି ଅନ୍ୟମାନଙ୍କ ସହିତ କଂପିଟ୍ କରି ମୁଁ ଚାକିରିଟେ ପାଇବି ନାହିଁ ?" ପଚାରିଲା ଶେଖର ।

—"ମୁଁ କେମିତି ଜାଣିବି, ତୁମର ବ୍ରେନ୍ କେତେ ? ଅନ୍ୟମାନଙ୍କ ସହିତ ତୁମେ କଂପିଟ୍ କରିପାରିବ କି ନାହିଁ ?" ଖାଲି ବିଦ୍ରୁପମୟ ନୁହେଁ; ନିର୍ମମ ଦେଖାଗଲେ ଖାକି ପୋଷାକ ପିନ୍ଧିଥିବା, ମୁହଁ ଝାଳେଇ ଯାଇଥିବା ପେଟ ବାହାରି ପଡ଼ିଥିବା ଅଫିସର । ଆହୁରି କହିଲେ— "ତୁମେ ସାମାନ୍ୟ କଥାରେ ଏମିତି ଉତ୍ତେଜିତ ହୋଇଯାଉଚ କାହିଁକି ?"

—"କାରଣ ।" ବୁଝେଇବାକୁ ଚେଷ୍ଟା କଲା ଶେଖର— "ଯେଉଁ ଲୋକ ସଂସ୍ପର୍ଶରେ ମୁଁ ଆସୁଚି, ସେ ତତ୍କ୍ଷଣାତ୍ କହୁଚି ଯେ ସଂରକ୍ଷିତ ହୋଇଥିବା କୋଟାରୁ ମୁଁ ଚାକିରି ପାଇବା ନିଶ୍ଚିତ । ଅଥଚ ସରକାରର ଦୟା ଯୋଗୁଁ ନୁହେଁ; ମୁଁ ମୋ ମେରିଟ୍ ଯୋଗେ ହିଁ ଚାକିରି ପାଇବି । ଏ ବିଷୟରେ ଆପଣ ନିଶ୍ଚିତ ରହିପାରନ୍ତି । ଦ୍ଵିତୀୟ କଥାଟି ହେଉଚି ଗାଁ ରାଜନୀତି ବୋଲି ଆପଣ ଏ ଘଟଣାକୁ ବର୍ଣ୍ଣନା କରୁଚନ୍ତି କିପରି ?"

ଧୈର୍ଯ୍ୟଚ୍ୟୁତି ଘଟିଲା ଅଫିସରଙ୍କର । ତାଙ୍କର ହସହସ, ପରିହାସପୂର୍ଣ୍ଣ ମୁହଁ କଠୋର ଦେଖାଗଲା । କହିଲେ— "ବି.ଏ. ପଢୁଚ ପରା ? କେବେ ଆଉ ଜାଣିବ ଯେ ଏ ଦେଶର ରାଜନୀତିର କେନ୍ଦ୍ରବିନ୍ଦୁ ହେଉଚି ଆଦିବାସୀ-ହରିଜନ ଓ ସଂଖ୍ୟାଲଘୁ ସଂପ୍ରଦାୟ ? ତୁମ୍ଭମାନଙ୍କ ପାଇଁ ରାଜନୀତି କରୁଥିବା ସମସ୍ତେ କାନ୍ଦୁଚନ୍ତି । ବିକଳ ହେଉଚନ୍ତି ତୁମକୁ ପରିତ୍ରାଣ କରିବା ପାଇଁ । ତୁମେ ଖାଲି ଭୋଟ ଦେବା କଥା ।"

—"ଆପଣ ପରା ଅବିକା— ।" ଶେଖର ଶେଷ କରିପାରିଲା ନାହିଁ ନିଜକଥା ।

—"ବେଟା ।" ଏଥର ପୋଲିସ୍ ଅଫିସରର ସ୍ଵାଭାବିକ ରୁକ୍ଷତା ନେଇ ସେ କହିଲେ— "ବେଟା, ବେଶି ଗୁଡ଼ାଏ ବକ୍ ବକ୍ ହ'ନା ମୋ ପାଖରେ । ନ

ହେଲେ ମୋ ପାଟିରୁ କ'ଣ ନାଇଁ କ'ଣ ବାହାରିପଡ଼ିବ ।'' ଏଥର ସମସ୍ତଙ୍କ ଆଡ଼ୁ ଦୃଷ୍ଟି ଫେରାଇ ପରାମର୍ଶ ଦେଲେ– ''ତୁମେ ସବୁ ଯାଅ । ଆମେ ଇନ୍‌କ୍ୱାରିରେ ଯିବୁ । ଦେଖିବା କ'ଣ ହେଉଚି ।''

କିନ୍ତୁ କାଇଁ ? କିଛି ଘଟିଲା ନାଇଁ । କୈଳାଶଙ୍କୁ ବାଡ଼େଇବା କେତେଟା ଲୋକ ଅବଶ୍ୟ ଥରେ-ଦୁଇଥର ଧାଇଁଲେ ଥାନାକୁ । ତା'ପରେ କ'ଣ ହେଲା କେଜାଣି ? ଇନ୍‌କ୍ୱାରି ଏବଂ କାର୍ଯ୍ୟାନୁଷ୍ଠାନ ସତେଯେପରି ଶୋଇପଡ଼ିଲା ନିଘୋଡ଼ ନିଦରେ । ଚାଲିବାର, ସକ୍ରିୟ ହେବାର କୌଣସି ଲକ୍ଷଣ ମଧ୍ୟ ଦେଖାଗଲା ନାଇଁ । ଶେଖର ଗୁଡ଼ାଏ ଦରଖାସ୍ତ ପଠେଇଲା । କଲେକ୍ଟର, ଏସ୍.ପି., ପୋଲିସ ମହାନିର୍ଦ୍ଦେଶକ, ଘରୋଇ ବିଭାଗ ସଚିବ ଓ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଏବଂ କେତୋଟି ଖବରକାଗଜର ସଂପାଦକ । ଏମାନେ ତାହା ପାଇଲେ କି ନାଇଁ, ପଢ଼ିଲେ କି ନାଇଁ, ତାହା ଜାଣିବାର ଉପାୟ ନ ଥିଲା । ଶେଖର ଅନ୍ତତଃ ଆଉ ଗୋଟିଏ କାମ କରିବ ବୋଲି ଠିକ୍ କରିଥିଲା । ତାହା ହେଉଚି, କଲେକ୍ଟରଙ୍କୁ ଏବଂ ଏମ୍.ଏଲ୍.ଏ.ଙ୍କୁ ସାକ୍ଷାତ କରିବ । ଏମ୍.ଏଲ୍.ଏ. ତାଙ୍କ ସଂପ୍ରଦାୟର ହୋଇଥିବାରୁ କିଛି ଗୋଟେ ଚମତ୍କାରିତା ଦେଖାଇପାରନ୍ତି ବୋଲି ସେ ଭାବୁଥିଲା । ବାପା-ମା ତାକୁ ନିବୃତ୍ତ କଲେ ଏଥିରୁ ।

–''ତୁ ପିଲାଲୋକ ।'' କହିଲା ହାଡ଼ିବନ୍ଧୁ– ''ସହରରେ ରହି ପଢ଼ାପଢ଼ି କରୁଚୁ । ଭାବୁଚୁ ଯେ ଆଇନ-କାନୁନ ଓ ସରକାରର ଜବାବ ଅନୁସାରେ ଦେଶ ଚାଲୁଚି କିମ୍ବା ଚାଲିବା ଉଚିତ ? ବାବୁରେ, ସେମିତି ସବୁବେଳେ ହୁଏ ନାଇଁ । ଅନେକ ସାଂଘାତିକ ଘଟଣା ଚୁପ୍‌ଚାପ୍ ରହିଯାଉଚି । ଜାଣି ପାରୁ ନାହାନ୍ତି କେହି । କେବେ କେମିତି ଏ ଘଟଣା ପ୍ରକାଶିତ ହେଲେ ବି ପ୍ରତିକାର ଖୋଜୁ ଖୋଜୁ ବାଟବଣା ହୋଇଯାଏ । କୈଳାଶ ମାଡ଼ ଘଟଣାଟା ସଂସାରକୁ ଓଲଟ ପାଲଟ କରି ପକାଇବା ଭଳି ଘଟଣା ନୁହେଁ । ଯେତେ ଯାହା କଲେ ବି ଆମ ଉପରେ ଏମିତି ଚଢ଼ଉ ହେଉଥିବ । ଆମ ଘର-ଦ୍ୱାର ପୋଡ଼ି ଦିଆ ଯାଉଥିବ । ଆମ ସ୍ତ୍ରୀ ଲୋକମାନଙ୍କୁ ଲଙ୍ଗଳା କରି ବଜାର ରାସ୍ତାରେ ବୁଲେଇ ନିଆ ଯାଉଥିବ । ଏ ବାବଦରେ କାହାକୁ କେବେ ଶାସ୍ତି ମିଳିଚି କି ନାଇଁ କେଜାଣି ?''

ବାପାଙ୍କ ନୈରାଶ୍ୟ ଯେ ଯୁକ୍ତିଯୁକ୍ତ ନ ଥିଲା, ତା' ନୁହେଁ । ଏବେ ମଧ୍ୟ କଠୋର ପରିଶ୍ରମ କରୁଥିବା, ଘରେ ଟି.ଭି. ଦେଖୁଥିବା, ଖବରକାଗଜ ପଢୁଥିବା ବାପା ଜଣେ ସଚେତନ ଲୋକ ହୋଇପାରିଥିଲେ । ସେ ଜାଣିଥିଲେ, ବାରମ୍ବାର ଅବିଚାରର ଶିକାର ହେଉଚି ତାଙ୍କ ସଂପ୍ରଦାୟ; କିନ୍ତୁ ଗୋଟାଏ ବଦ୍ଧମୂଳ ମନୋଭାବକୁ ବଦଳାଇ ଦେବା ସମ୍ଭବ ବୋଲି ସେ ଭାବୁ ନ ଥିଲେ । ମନ ଓ ହୃଦୟରେ

ଏଇଥିପାଇଁ ସୃଷ୍ଟି ହୋଇଯାଉଥିଲା କ୍ଷତ । ଏ କ୍ଷତ ତାଙ୍କର; ତାଙ୍କ ସଂପ୍ରଦାୟର । ଏ ସଂପ୍ରଦାୟରେ ଜନ୍ମ ନେଇଥିବା ଭାଗ୍ୟର । ଏ କ୍ଷତ ପୋଡ଼ାଜଳା କରେ । ଅକଥନୀୟ ଯନ୍ତ୍ରଣା ଦିଏ । ତାହାକୁ ସହିବା କଥା । ଏଥିପାଇଁ ପାଟିତୁଣ୍ଡ କଲେ ବିଶେଷ କିଛି ଲାଭ ନାଇଁ । ସତର୍କତାର ସହିତ ଆଉ କେତେଟା ବର୍ଷ କଟେଇ ଦେଲେ କାମ ଶେଷ । କାହା ସହିତ ସଂଘର୍ଷର ସମ୍ଭାବନାକୁ ଏଡ଼ାଇ ଦେଇ ପାରିଲେ ହିଁ ଚାଲାକୀ । ଏହାକୁ ଭୀରୁତା ଏବଂ ପଳାୟନପନ୍ଥା ବୋଲି କେହି କହିଲେ କିଛି ଯାଏଆସେ ନାଇଁ ।

କ'ଣ କାରଣ କେଜାଣି, ମା' ଏବେ ବେଶି ଧର୍ମ କାମ, ପୂଜା-ଉପବାସରେ ସମୟ କଟାଉଚି । ସେ ଆକଟ କଲା ଶେଖରକୁ— "ତୁ ମୋଟେ ଏ ଅଡୁଆ ଭିତରକୁ ପଶିପାରିବୁ ନାଇଁ । ଘରୁ ଯଦି ପଦାକୁ ବାହାରିଚୁ ତେବେ ଚିହ୍ନିବୁ ମୋତେ ସେ'ଦିନ । ଗଦାଏ ବହି-ପତ୍ର ଧରି ଆସିଚୁ । ଘରେ ପଢ଼ାପଢ଼ି କର । ବାପାଙ୍କ ସାଙ୍ଗେ ବିଲଆଡ଼େ ଯିବା ବି ଦରକାର ନାଇଁ ।"

ସାତ-ଆଠଟା ଜାଗାରେ ସିଲେଇ ହୋଇଥିବା ଦେହ ଧରି ସଦର ଡାକ୍ତରଖାନାରୁ ଫେରିଲା କୈଳାଶ । ଆଗ ପାଖରୁ ଭାଙ୍ଗି ଯାଇଥାଏ ଦୁଇଟି ଦାନ୍ତ । ମୁଣ୍ଡରେ ସିଲେଇ ହୋଇଥିବାରୁ ଲଣ୍ଡା ହୋଇଥାଏ । ଏହାର ଅର୍ଥ ହେଲା, ଗାଁରେ ଦୁଇଜଣ ଲଣ୍ଡା ଲୋକଙ୍କୁ ଦେଖିବାକୁ ମିଳିଲା । ଅନ୍ୟ ଜଣକ ହେଉଚି ଶୁକ ରାଉତ । କୈଳାଶ ଠାରୁ ମାଡ଼ ଖାଇଥିବା ଯୋଗୁ ଶୁଦ୍ଧ ହେବାକୁ ପଡ଼ିଥିଲା ତାକୁ । ହୋମ, ବ୍ରାହ୍ମଣ ଭୋଜନ ଇତ୍ୟାଦି ଯୋଗୁଁ ତା' ଭଳି ଜଣେ ଅଭାବଗ୍ରସ୍ତ ଲୋକକୁ ଖର୍ଚ୍ଚାନ୍ତ ହେବାକୁ ପଡ଼ିଥିଲା ବେଶ୍ । ଯେଉଁ ସ୍ଥାନରେ ହିଡ଼ ତିଆରୁଥିଲା କୈଳାଶ, ତାହା ସତେଯେପରି ଅବାକ୍ ଓ ନିସ୍ପନ୍ଦ ହୋଇ ପଡ଼ିରହିଥିଲା । ତାହାକୁ ନେଇ ଏତେ ବଡ଼ ଘଟଣା ଘଟିସାରିଲାଣି ବୋଲି ବୁଝି ପାରି ନ ଥିଲା । ଏଣେ ଏ ଦୁଇଟି ଲଣ୍ଡାମୁଣ୍ଡ, ଶତ୍ରୁତା ଓ ପ୍ରତିହିଂସାର ବିଶାଳ ରେଖାଟିଏ ଟାଣିଦେଲା ସବର୍ଣ୍ଣ ଓ ଅସବର୍ଣ୍ଣଙ୍କ ମଧ୍ୟରେ ।

କୈଳାଶ ଘରକୁ ଫେରିବାର ପରଦିନ ସଞ୍ଜରେ ହରିଜନ ସାହି ପାଖରେ ଅଟକିଗଲା ଗୋଟେ ଟ୍ରେକର୍ । କୈଳାଶର ଲୁଙ୍ଗି ପିନ୍ଧା ମାମୁ ସମେତ ଆହୁରି ସାତ-ଆଠ ଜଣ ଅପରିଚିତ ଲୋକ ସେଥିରୁ ଓହ୍ଲେଇଲେ ଓ ଘର ଭିତରକୁ ଗଲେ । ଦୁଇ-ତିନିଜଣଙ୍କର ମୁହଁ ଦାଢ଼ି-ଖଚିତ ଥିଲା । ମୁଣ୍ଡରେ ଥିଲା ଟୋପି ।

—"ତୁମେ ଯାଉଚ କୁଆଡ଼େ ?" ଯଥେଷ୍ଟ ଶଙ୍କିତ ହୋଇ ଉଦ୍‌ବେଗର ସହିତ ପଚାରିଲା ଜେମା ।

ଚପଲ ପିନ୍ଧୁଥିବା ବେଳେ ହାଡ଼ିବନ୍ଧୁ କହିଲା– "କୈଳାଶ ଘରଆଡୁ ଟିକେ ବୁଲିଆସେ । ମୋତେ ସେମାନେ ଡାକୁଚନ୍ତି ।"

–"ନାଇଁ, ତୁମେ ସେଠାକୁ ଯାଇପାରିବ ନାଇଁ ।" ଦୃଢ଼ତାର ସହିତ ରାୟ ଶୁଣେଇଲା ଜେମା ।

–"କାହିଁକି ? କ'ଣ ହେଲା ?" ପଚାରିଲା ହାଡ଼ିବନ୍ଧୁ । ଟିକିଏ ନୀରବ ରହି କହିଲା– "ଖାଲିଟାରେ ଏମିତି ଛାନିଆଁ ହେଉଚୁ କ'ଣ ପାଇଁ ? ସେମାନେ କ'ଣ ସବୁ କହିବେ, ତାହା ଶୁଣିଲେ କ୍ଷତି କେଉଁଠି ?"

ତାହା ଥିଲା ଗାଁର ମୂଳଦୁଆକୁ ଭୟଙ୍କର ଭାବରେ ଦୋହଲାଇ ଦେଇପାରିବା ଭଳି ଗୋଟେ ରାତି । ଯୁଗ ଯୁଗ ଧରି ସୃଷ୍ଟି ହୋଇଥିବା ଗାଁର ଚଳଣି ପଦ୍ଧତି, ଜୀବନଧାରାର ଆକାର ଏଇ ଯେପରି ବିପର୍ଯ୍ୟସ୍ତ ହୋଇଯିବ । ସୃଷ୍ଟି ହେବ ଆଉ ଏକ ନକ୍‌ସା ଏବଂ ସମ୍ଭାବ୍ୟ ଭାରସାମ୍ୟ । ରାତି ସହିତ ବଢୁଥିଲା ଅପରିଚିତ ଏକ ଉତ୍ତାପ ଓ ଚାପା ଉତ୍ତେଜନା । ଏହା ଦଖଲ କରିଥିଲା ତମାମ୍ ଗାଁକୁ । ଅନ୍ୟ ସାହିର ଲୋକମାନେ ସତେଯେପରି ରୁନ୍ଧି ହୋଇ ପଡୁଥିଲେ ଆତଙ୍କ ଓ ହୃତ୍‌ସ୍ପନ୍ଦନ ଯୋଗୁଁ । ଗୋଟେ ଗୁଜବ କ୍ଷଣକ ମଧ୍ୟରେ ବ୍ୟାପିଗଲା । ବୋମା ଓ ମାରଣାସ୍ତ୍ର ଗୁପ୍ତ ସ୍ଥାନରେ ରଖାଯାଉଚି ଭବିଷ୍ୟତରେ ମୁକାବିଲା ପାଇଁ ।

ରାତି ବାରଟା-ଗୋଟାଏ ବେଳେ ଟ୍ରେକର ପଳେଇଲା ଗାଁକୁ ଜଡ଼ସଡ଼ କରି । ଗୁଡ଼ାଏ ଚିନ୍ତା ଓ ଆଶଙ୍କା ଛାଡ଼ିଦେଇ । ପରଦିନ ସକାଳେ ହରିଜନ ସାହି ଜଣାପଡ଼ିଲା ରହସ୍ୟମୟ ଓ ଅପରିଚିତ । ସତେଯେପରି ଏହାର ପରିଚିତି ଓ ସଂଜ୍ଞା ବଦଳିଯାଇଚି । ଏହା ଯେମିତି ଦେଖା ଯାଉଥିଲା, ଯେମିତି ଦେଖା ଯାଉଚି, ବାସ୍ତବରେ ଏହା ତାହା ନୁହେଁ । ଏହାର ପରିସରରେ ରହିଚି ସାଂଘାତିକ ଓ ମାରାତ୍ମକ ସତ୍ତାଟିଏ । ଏଇ ସତ୍ତା ଭିଡ଼ିମୋଡ଼ି ହେଉଚି । ନିଜକୁ ଠୁଳ କରୁଚି । ଏହା ପ୍ରକାଶିତ ହେବାମାତ୍ରେ ଇତିହାସ ସୃଷ୍ଟି ହୋଇଯିବ । ଏଇଭଳି ସୂଚନାଟିଏ ମିଳୁଥିଲା ସେଠାରୁ ।

ପରଦିନ ଫାଦର ଯୋଶେଫଙ୍କର ଜଣେ ଦୂତ । ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ବେଳେ ଫାଦର ଯାଇଥିଲେ କୈଳାଶ ପାଖକୁ । ଔଷଧ ଓ ଅନ୍ୟାନ୍ୟ ଖର୍ଚ୍ଚ ବାବଦରେ ଦେଇଥିଲେ କିଛି ଟଙ୍କା । ଡାକ୍ତରମାନଙ୍କ ସହିତ ଆଲୋଚନା କରିଥିଲେ । ପ୍ରାର୍ଥନା କରିଥିଲେ ତା' ପାଇଁ ଏବଂ ସ୍ୱାଭାବିକ ହସ ହସ, ସ୍ନେହ ବିଜଡ଼ିତ ମୁହଁରେ କହିଥିଲେ– ପ୍ରଭୁ ଯୀଶୁଙ୍କ ଆଶୀର୍ବାଦରେ ତୁମେ ଚଞ୍ଚଳ ଭଲ ହେବ । ପୁଣି କର୍ମଠ ହେବ ଏବଂ ପ୍ରଭୁଙ୍କ ପାଇଁ କାମ କରିବ । ପୁଣି ଆସିବେ

ବୋଲି କହିଥିଲେ; ମାତ୍ର ତାହା ସମ୍ଭବ ହୋଇ ନ ଥିଲା । ତାଙ୍କ ମିଶନାରୀର କାର୍ଯ୍ୟ ପରିସର ସଂପ୍ରସାରିତ ହେଉଥିଲା ଦ୍ରୁତଗତିରେ । ଔଷଧପତ୍ର ଓ ଶିକ୍ଷା ତ ମାଗଣାରେ ଯୋଗାଇ ଦିଆଯାଉଥିଲା । ତା' ସହିତ ଘରପୋଡ଼ି କିମ୍ବା ଅନ୍ୟ କିଛି ଦୁର୍ଘଟଣା ପ୍ରପୀଡ଼ିତ ଲୋକମାନଙ୍କ ପାଇଁ ସାହାଯ୍ୟ ତାଙ୍କଠାରୁ ପ୍ରଥମେ ପହଞ୍ଚି ଯାଉଥିଲା । ଏଣେ ସରପଞ୍ଚ, ତହସିଲ୍‌ଦାର କିମ୍ବା ବି.ଡ଼ି.ଓ.ଙ୍କର ନିଦ ଭାଙ୍ଗିଲା ବେଳକୁ ଫାଦର ହୁଏତ କୋଳେଇ ନେଇଥିବେ ସଂପୃକ୍ତ ବ୍ୟକ୍ତିକୁ । ସାହସ ଓ ଆଶ୍ୱାସନା ଦେଉଥିବେ । ଲୋକଜଣକ ଏଣେ କାଗଜପତ୍ରରେ ଦସ୍ତଖତ କରୁଥିବ । ଧାଉଁଥିବ ଏ ଅଫିସ୍‌ରରୁ ସେ ଅଫିସ୍‌କୁ । ପରେ ଆସ, ଏମିତି ଫର୍ମ ପୂରଣ କରାଯାଏ ନାଇଁ ବୋଲି ତାକୁ କୁହାଯାଉଥିବ ଏବଂ ସାହାଯ୍ୟ ପରିମାଣରୁ କେତେ କାହାକୁ ଦିଆଯିବା ଦରକାର ବୋଲି ଅଲିଖିତ ଚୁକ୍ତି ସଂପାଦନ କରୁଥିବ ।

କୈଳାଶ ପାଇଁ କିଛି ହେଲ୍‌ଥ ଡ୍ରିଙ୍କ୍ । ପ୍ରଚୁର ସାନ୍ତ୍ୱନା ଓ ଉତ୍ସାହ ପ୍ରଦାନ । ମୁଣ୍ଡ ଆଉଁଶା । କୈଳାଶର ପ୍ରତିଜ୍ଞା, ଦିନେ-ଦୁଇଦିନ ଭିତରେ ସେ ଯିବ ଫାଦରଙ୍କୁ ଦର୍ଶନ କରିବା ପାଇଁ । ତା' ଦୁର୍ଦ୍ଦିନରେ ତା' ପାଖରେ ଠିଆ ହୋଇଥିବାରୁ କୃତଜ୍ଞତା ଜଣାଇବା ପାଇଁ ।

ଯାପରେ ହାଡ଼ିବନ୍ଧୁର ଘର । ମନମତାଣିଆ ଦହି ସର୍ବତ । ଶେଖର ପ୍ରତି ଫାଦରଙ୍କର ବାର୍ତ୍ତା ଓ ଆଶୀର୍ବାଦ । ସେ ଏମ୍.ଏ.ରେ ନାମ ଲେଖାଇବା ପାଇଁ ଯାଇଚି ବୋଲି ହାଡ଼ିବନ୍ଧୁର ଘୋଷଣା । ଏଥର ବିନୟ ହୋଇ ତା'ର ଅନୁରୋଧ । ଭଗବାନ୍‌ଙ୍କ ଅପାର କରୁଣାରୁ ସେ ଚଳୁଚି ଗୋଟେ ପ୍ରକାର । ତେଣୁ ଶେଖର ପାଇଁ ଫାଦର ଅଧିକ ଆର୍ଥିକ ବ୍ୟବସ୍ଥା କରିବେ ନାଇଁ । ଅନ୍ୟ କୌଣସି ଯୋଗ୍ୟ, ଗରିବ ପିଲାର ଏହା କାମରେ ଆସିବ । ସେ ପ୍ରତିଶ୍ରୁତି ଦେଲା ଯେ, ଶେଖର ଘରକୁ ଆସିବା ପରେ ସେ ଦୁହେଁ ଯିବେ ଫାଦରଙ୍କ ପାଖକୁ ତାଙ୍କର ଶୁଭକାମନା ଓ ଆଶୀର୍ବାଦ ପାଇବା ସକାଶେ ।

# ତିନି

ଏମ୍.ଏ. ପରୀକ୍ଷା ଶେଷ ହେଲା । ସରିଗଲା ଜୀବନର ଏକ ମଧୁର ପର୍ଯ୍ୟାୟ । ହାଡ଼ିବନ୍ଧୁ ଓ ଜେମା ଆଶ୍ଚର୍ଯ୍ୟ ହେଲେ । ଏତେ ବହି, ଏତେ କାଗଜପତ୍ର ! ଆଉ କେଡ଼େ ଟିକିଏ ବିଛଣା । କମିଜ୍-ପେଣ୍ଟ ସଫାସୁତରା; କିନ୍ତୁ ଇସ୍ତ୍ରୀ କରାଯାଇ ନାହିଁ । ବି.ଏ. ପଢ଼ିବା ବେଳେ ଏ ପିଲାଟା ରହୁଥିଲା ଟିପ୍ ଟପ୍ । ପେଣ୍ଟ-କମିଜ୍‌ରେ ଟିକିଏ ବି କ୍ରିଜ୍ ସହିପାରୁ ନ ଥିଲା ସେ । ଯୋତା । ଏଇ ଯେପରି ରଙ୍ଗ ମରାଯାଇଚି । ଚୂଳ । ସଦ୍ୟ କୁଣ୍ଡା ଯାଇଚି । ଏଥର ତା' ଟ୍ରଙ୍କ୍‌ରେ ସାଂପୁ, ପାଉଡରର ଚନ୍ଦ୍ରବର୍ଣ୍ଣ ନାଇଁ । ସେଣ୍ଟ ସ୍ପ୍ରେ ନ କଲେ ସେ ବାହାରୁ ନ ଥିଲା ପଦାକୁ । ରହିଥିଲା ଚଳଚଞ୍ଚଳ । କ୍ଷିପ୍ର ଗତିଟେ ହୋଇ । ସବୁ ବଦଳିଯାଇଚି । ଏବେ ଦେଖାଯାଉଚି ଗମ୍ଭୀର ଓ ସତର୍କ । ତା ସହିତ ଜଣାପଡୁଚି ଉଦାସୀନ, ନିର୍ବିକାର । ପ୍ରଥମେ ଚେୟାରର ଧୂଳି ଝାଡୁଥିଲା । ତା'ପରେ ବସୁଥିଲା । ଏବେ ବସିପଡୁଚି ବାରନ୍ଦା ଉପରେ । ହସୁଚି ଓ କଥା କହୁଚି ମାପିଚୁପି । ଯେତିକି ଦରକାର । ଆଗ ଭଳି ପ୍ରଗଲ୍‌ଭ, ଖଳଖଳ ହୋଇ ଗତିଶୀଳ ଦେଖାଯାଉ ନାଇଁ ।

– "କିରେ, ତୋର କ'ଣ ହେଇଚି କହୁନୁ ?" ଦିନେ ମା' ପଚାରିଲା ବ୍ୟସ୍ତ ହୋଇ ।

ଦିନ ଦଶଟା ପାଖାପାଖି । ବାପାଙ୍କୁ ବିଲକାମରେ ସାହାଯ୍ୟ କରି ସେ ସଦ୍ୟ ଫେରିଥାଏ । କୋଦାଳ ରଖି, ରୋଷେଇ ଘର ବାରନ୍ଦା ଉପରେ ବସି କାଦୁଅ ଲାଗିଥିବା ଗୋଡ଼ ଧୋଇ ହେଉଥାଏ । କହିଲା– "ଦେଲୁ ସେ ଗାମୁଛାଟା ।" ପୋଛି ହେବା ବେଳେ ସେ ଚାହିଁଲା ଚାରିଆଡ଼କୁ ଏବଂ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କହିଲା– "ଭଲ ଫସଲ ହେବ ଏବର୍ଷ ।"

– "ତୋତେ ପରା କ'ଣ ପଚାରୁଚି !" ସେ ବ୍ୟସ୍ତ ହେଲା ।

– "କେତେ ଥର ତୁ ସେଇ କଥାଟା ପଚାରିବୁ, ଆଉ କେତେ ଥର ମୁଁ କହିବି ଯେ ମୋର ବିଲ୍‌କୁଲ କିଛି ବି ହୋଇ ନାଇଁ ?" ଶେଖର କହିଲା କିଞ୍ଚିତ ଅଧୈର୍ଯ୍ୟ ହୋଇ । ପୁଣି କହିଲା– "ମୁଁ ସବୁଦିନ ଥାନ୍ତି, ପ୍ରାଇମେରୀ ସ୍କୁଲରେ ପଢ଼ିବା ବେଳର ପିଲାଟେ ହୋଇ । ମୁଁ କାହିଁକି ଆଗ ଭଳି ଛାଣ୍ଟକାଣ୍ଟ ହେଉନି । ଅମୁକଟା ଖାଇବି ବୋଲି ବରାଦ କରୁନି । ଏମ୍.ଏ. ପଢ଼ିଥିଲେ ବି କାହିଁକି ମୁଁ ବିଲକୁ ଯାଉଚି । ବାରିରେ ମାଟି ହାଣି ମଞ୍ଚି କିମ୍ବା ଗଛ ଲଗଉଚି । ମୋ ମୁଣ୍ଡ କୁଣ୍ଡେଇ ଦେବା ପାଇଁ, ମୁହଁ ପୋଛି ଦେବା ପାଇଁ କାହିଁକି ତୋତେ ସୁଯୋଗ ଦେଉ ନାହିଁ । ଏୟା କହିବୁ ନା ଆଉ କିଛି ?"

ଶେଖର ଗଲା ନିଜ ରୁମ୍‌କୁ । ଫ୍ୟାନ୍ ସୁଇଚ୍ ଟିପିଲା । ଖଟ, ଚେୟାର, ଶେଲ୍‌ଫ୍ । ଏ ପର୍ଯ୍ୟନ୍ତ ଖୋଲା ଯାଇ ନ ଥିବା ବହି-ଖାତା ପ୍ୟାକେଟ୍ । ଝରକା ବାଟେ ଚାହିଁଲେ ସବୁଜ ରଙ୍ଗ ମାଖି ହୋଇଥିବା ବିଶାଳ ବାରି; ଯେଉଁଠି ଘିକୁଆଁରି ଠାରୁ ଆରମ୍ଭ କରି ଅଁଳା ପର୍ଯ୍ୟନ୍ତ, ଅଦାଠୁ ଆରମ୍ଭ କରି ସର୍ବୋତ୍କୃଷ୍ଟ ଆମ୍ବ ମିଳିଯାଇପାରେ । କୂଅ । ଟୁଲୁପମ୍ପ ! ଗୋଟେ ଭରପୂର ଇଲାକା । ପ୍ରତିଶ୍ରୁତି ଓ ଆତ୍ମୀୟତା ପରିପୂର୍ଣ୍ଣ ।

ଯା ପରେ କ'ଣ ? ରିସର୍ଚ୍ଚ ଏବଂ ଅଧ୍ୟାପନା ? ଅଫିସ୍ କିମ୍ବା ବ୍ୟାଙ୍କ୍‌ରେ ଚାକିରି ? ଏ ସଂପର୍କରେ କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନ ଥିଲା ତା'ଠାରେ । କେବଳ ତା'ର ଆତ୍ମବିଶ୍ୱାସ ଥିଲା ଯେ, ଖୁବ୍ ସୁଦୃଢ଼ ତା'ର କେରିଅର୍ । କେଉଁଠି କିଛି ଗୋଟେ ଭଲ ବ୍ୟବସ୍ଥା ହୋଇଯିବ । ତା' ପୂର୍ବରୁ କିଛି ଦିନ ପାଇଁ ଅଧ୍ୟାପନା କରାଯାଇପାରେ, କେଉଁଠି ଭଲ କଲେଜରେ, ବିନା ଡୋନେସନ୍‌ରେ ନିଯୁକ୍ତି ପାଇଲେ । ସେ ଜାଣେ, ପଚିଶ୍-ତିରିଶ୍ ହଜାର ଟଙ୍କାରେ ଏହା ନିଲାମ ହେଉଚି । ନିଯୁକ୍ତି ମିଳୁଚି । ମାସରେ ପାଞ୍ଚଶହ କିମ୍ବା ତା'ଠାରୁ କମ୍ ଦରମା ଦିଆଯାଉଚି । ମୋଟେ ଦରମା ଦିଆଯାଉ ନାହିଁ ।

ମା' ବଢ଼େଇ ଦେଲା ତା' ହାତକୁ ଚା' କପେ । ଏ ମଣିଷଜଣକ ଅଲୌକିକ ଶକ୍ତିସଂପନ୍ନ । ତା' ନ ହୋଇଥିଲେ ମନ ଖୋଜୁଥିବା ଜିନିଷଟେ ସେ ମାଗିବା ପୂର୍ବରୁ ତା' ପାଖକୁ ଆସିଯାଆନ୍ତା କିପରି ? ଚା' ହେଉ, କଦଳି ମଞ୍ଜା ରାଇ ହେଉ, ଓଲୁଅ ଭର୍ତ୍ତା ହେଉ ବା କଖାରୁ ଡଙ୍କ ଶାଗ ବା ସଜନା ଶାଗ ହେଉ ।

କିନ୍ତୁ, ମାତ୍ର କେତୋଟି ଦିନ ପରେ ସେ ଅନୁଭବ କଲା ଯେ, ତା'ର ଧୈର୍ଯ୍ୟଚ୍ୟୁତି ଘଟୁଚି । ତାକୁ କବଳିତ କରୁଚି ସଂଶୟ, ଆଶଙ୍କା ଏବଂ କିଛି ହରାଉଥିବାର ଅନୁଶୋଚନା । ସେ ବିଚ୍ଛିନ୍ନ ହୋଇପଡ଼ିଚି ସବୁଆଡୁ । ଭଲ ଚାକିରି ପାଇବା ସଂକ୍ରାନ୍ତୀୟ ଖବର ସଂଗ୍ରହ ଓ ପ୍ରସ୍ତୁତି ଏଠାରେ ସମ୍ଭବ ନୁହେଁ । ପରୀକ୍ଷା ସରିବା କ୍ଷଣି ହଷ୍ଟେଲ୍ ଛାଡ଼ିବା ବୋଧହୁଏ ଠିକ୍ ହେଲା ନାହିଁ । ପୋଷ୍ଟ ଗ୍ରାଜୁଏସନ୍ ଶେଷ କରିବା ପରେ ମଧ୍ୟ ବର୍ଷ ବର୍ଷ କରି କେତେକ ହଷ୍ଟେଲ ରୁମ୍ ଅଧିକାର କରି ରହିଥାନ୍ତି । କ'ଣ ନା, କଂପିଟେଟିଭ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଚନ୍ତି । ଆଉ କେତେକ ରହିଥାନ୍ତି ଭଡ଼ାଘରେ । ସଂପର୍କୀୟଙ୍କ ଘରେ । ସତେଯେପରି ସେଠାରେ ରହିବା ଜରୁରୀ । ତାହାହିଁ ଭିତ୍ତିଭୂମି ସୁଯୋଗ ପାଇବା ସକାଶେ । ସମସ୍ତ ସୁଯୋଗ ଏବଂ ଖବରର ସୂତ୍ର ସେଇଠି । ତାହାର ସାମାନ୍ୟତମ ଇଙ୍ଗିତ ଏଇ ଅପନ୍ତରାରେ ମିଳିବା ଅସମ୍ଭବ ।

ଅଥଚ ସେ କ'ଣ ବା କରିଥାନ୍ତା ? ତା'ଭଳି ଅନେକେ ପରୀକ୍ଷା ପରେ ପରେ ହଷ୍ଟେଲ ଛାଡ଼ିଲେ । ଜବରଦସ୍ତ ହଷ୍ଟେଲରେ ରହିଥାନ୍ତା ଏବଂ କେହି ଜଣେ ଯନ୍ତ୍ରଣାଦାୟକ ମନ୍ତବ୍ୟଟେ ଦେଇଥାନ୍ତା । ନା, ସହିପାରନ୍ତା ନାହିଁ ସେ । ଖୁବ୍ ସତର୍କତାର ସହିତ, ସଙ୍କୁଚିତ ଜୀବନ କଟେଇଚି ହଷ୍ଟେଲ୍‌ରେ । ତୁମ ଘର କେଉଁଠି, ବାପା କ'ଣ କରନ୍ତି, କେଉଁ ଜାତି ? ସବୁବେଳେ ଆଭଏଡ୍ କରିବା ପାଇଁ ଚେଷ୍ଟା କରିଆସିଚି ଏସବୁ ପ୍ରଶ୍ନକୁ । ଏଥିପାଇଁ ଏକାନ୍ତ ଭାବେ ଘନିଷ୍ଠ ସାଙ୍ଗ ଜଣେ ସେ ପାଇପାରି ନାହିଁ । ପୁଣି ତା'ର ବା କେଉଁ ଆତ୍ମୀୟ ଜଣେ ସେଠାରେ ଅଛନ୍ତି ଯେ, ତାଙ୍କ ଘରେ ରହିପାରନ୍ତା ? ଚାକିରି ଖୋଜୁଚି ବୋଲି ଘର ଭଡ଼ା ମଧ୍ୟ ନେଇପାରନ୍ତା ନାହିଁ ସେ ।

ହଷ୍ଟେଲ ଛାଡ଼ିଲା ବୋଲି ସେ ଅନୁତପ୍ତ ନ ଥିଲା । ସେ ନିରୁପାୟ ହୋଇ ପଡୁଚି ବୋଲି ଅନୁଭବ କରୁଥିଲା ଅବସନ୍ନ ଭାବ । କ୍ଲାନ୍ତି । ଅଳ୍ପ କିଛି ବର୍ଷ ପୂର୍ବେ ତା'ଠାରେ ଯେମିତି ଥିଲା ଜଣେ ବିପ୍ଳବୀର ପ୍ରତିବାଦ ଓ ଚଳଚଞ୍ଚଳ ଭାବ, ତାହା କ୍ରମେ ଉଭେଇ ଯାଉଥିବାର ଅନୁଭବ କରୁଥିଲା ସେ । ଯତେଯେପରି ଗଦାଏ ପାଉଁଶ ହିଁ ଅଛି ତା' ଉପରେ । ସବୁ ଅଣ୍ଡା ଓ ଅଦରକାରୀ ।

ତେବେ, ପରୀକ୍ଷା ଫଳ ବାହାରିବା ପୂର୍ବରୁ ଏମିତି ଅଧୈର୍ଯ୍ୟ ଓ ଛଟପଟ ହେବାରେ କିଛି ମାନେ ନାହିଁ । ଦୁଇ-ତିନିମାସ ଅପେକ୍ଷା କରିବାକୁ ପଡ଼ିବ । କେବେ କିପରି ରାଜଧାନୀକୁ ଯାଇ ସର୍ବଶେଷ ଖବର ସଂଗ୍ରହ କରିବାକୁ ପଡ଼ିବ । ସଂଗ୍ରହ କରିବାକୁ ହେବ କଂପିଟେଟିଭ ପରୀକ୍ଷା ପାଇଁ ଫର୍ମ । ସେସବୁର ପରୀକ୍ଷା କେବେ ଓ କେଉଁଠି ହେବ, ସେବିଷୟରେ ସତର୍କ ରହିବାକୁ ପଡ଼ିବ ।

ପରୀକ୍ଷା ଫଳ । ଏହାକୁ ଅଶାନୁରୂପ କୁହାଯାଇପାରେ । ଶେଖର ଅସନ୍ତୁଷ୍ଟ ହୋଇ ନ ଥିଲା । ଯା ପରେ ପୁଣି ଚୁପ୍‌ଚାପ୍ ଅବସ୍ଥା । ଆଖି ଆଗରେ ସବୁଜ ଧାନକ୍ଷେତରେ ଫସଲ କଟାଗଲା । ଖଳାକୁ ଅଣାଗଲା ଏବଂ ଜମି ନିସ୍ତେଜ ହୋଇ ପଡ଼ି ରହିଥିଲା ସଦ୍ୟ ପ୍ରସବ କରିଥିବା ଜଣେ ମା' ଭଳି । ଗ୍ରୀଷ୍ମ ଋତୁ ଏବଂ ପ୍ରାୟ ଦେଢ଼ଶହ କିଲୋମିଟର ଦୂର କ୍ରମବର୍ଦ୍ଧିଷ୍ଣୁ ଶିଳ୍ପସମୃଦ୍ଧ ସହରରେ ଥିବା ବେସରକାରୀ କଲେଜରେ ଇଣ୍ଟରଭିଉ ।

ଏତେ ଦିନ ପର୍ଯ୍ୟନ୍ତ ସୁଖପ୍ରଦ ବିସ୍ମୟ ଅପେକ୍ଷା କରିଥିଲା ତା' ପାଇଁ । ତାକୁ ନିଯୁକ୍ତିପତ୍ର ମିଳିଯାଇଚି । ସହରରେ ସରକାରୀ କଲେଜ ଥିଲେ ମଧ୍ୟ ଆଶାୟୀ ଛାତ୍ରଙ୍କ ଭିଡ଼କୁ ଆଖି ଆଗରେ ରଖି ଏ କଲେଜ ଖୋଲାଯାଇଥିଲା । ଏ କଲେଜର ଇନ୍‌ଫ୍ରାଷ୍ଟ୍ରକ୍‌ଚର ଥିଲା ଉଚ୍ଚକୋଟୀର । ପଢୁଥିବା ବେଳେ ଏ କଲେଜ ବିଷୟରେ ଶୁଣିଥିଲା ସେ ।

ମଝିରେ ବିଶାଳ ଆୟତାକାର ପଡ଼ିଆ । ଚାରିପଟେ ଦୁଇମହଲା କୋଠା ଘର । ଚଉଡ଼ା ବାରନ୍ଦା । ବାରନ୍ଦା ତଳକୁ ପଡ଼ିଆ କଡ଼େ କଡ଼େ ଗଛ । ଡ୍ରୁପିଙ୍ଗ୍ ଦେବଦାରୁ, କୃଷ୍ଣଚୂଡ଼ା, କ୍ରୋଟନ୍, ଏପରିକି ନଡ଼ିଆଗଛ ଇତ୍ୟାଦି । ଗୋଟିଏ ପାଖରେ ଆର୍ଟସ୍ ବ୍ଲକ୍ । ସାମନାଟା ସାଇନ୍ସ । ଅଫିସ୍, କମନ୍‌ରୁମ୍ ଆଉ ଗୋଟିଏ ପାଖରେ । ତା' ସାମନାଟା ପରୀକ୍ଷାଗାର । କୋଣମାନଙ୍କରେ ପାନଛାପ, ବୁଢ଼ିଆଣୀ ଜାଲର ଚିହ୍ନବର୍ଣ୍ଣ ନାହିଁ । କବାଟ-ଝରକାରେ ଲେଖାଯାଇ ନାହିଁ ଅଶ୍ଳୀଳ କଥା । ସବୁ ଥିଲା ପରିଷ୍କାର ଓ ରୁଚିସଂପନ୍ନ । ଅଫିସ୍ କାଉଣ୍ଟରରେ ସମ୍ଭବତଃ ଫର୍ମ ବିକ୍ରି ଚାଲିଚି । ଏତକ ବାଦ ଦେଲେ ପ୍ରାୟ ସମସ୍ତ ରୁମ୍‌ରେ ଝୁଲୁଥିଲା ତାଲା । ଏ ତାଲା ଅପସାରିତ ହେବ ଗୋଟେ ପର୍ଦ୍ଦା ଭଳି ଏବଂ ଶିକ୍ଷାଦାନର ନାଟକ ଆରମ୍ଭ ହେବ, କଲେଜର ପରମ୍ପରା ଅନୁଯାୟୀ ଗୁରୁବାରଠାରୁ । ଆଉ ତିନି ଦିନ ପରେ ।

ପ୍ରିନ୍‌ସିପାଲ୍‌ଙ୍କ ଅଫିସ –

–''ମେ ଆଇ କମ୍ ଇନ୍, ସାର୍ ?'' ହାଣ୍ଡଲୁମ୍ ପର୍ଦ୍ଦାଟା ଟିକିଏ ଆଡ଼େଇ ଶେଖର କହିଲା, ଜଣେ କଲେଜ ଛାତ୍ରର ତ୍ରସ୍ତତା ଓ ନମ୍ରତା ନେଇ ।

କିଛି ଲେଖୁଥିବା ପ୍ରିନ୍‌ସପାଲ୍‌ଙ୍କ ଏକାଗ୍ରତା ଟିକିଏ ଦୋହଲିଗଲା । ସେ ଗୋଟିଏ ମୁହୂର୍ତ୍ତ ପାଇଁ ଦ୍ୱାର ଆଡ଼େ ଚାହିଁ, ପୁଣି ବିସ୍ତାରିତ କାଗଜ ଉପରକୁ ଆଖି ଫେରାଇବା ବେଳେ ଶେଖର ପହଞ୍ଚିଯାଇଥିଲା ଟେବୁଲ ପାଖରେ; ଯଦିଓ ସେ ଭିତରକୁ ଯାଇପାରିବ କି ନା, ସେ ସଂକ୍ରାନ୍ତରେ କୌଣସି ସୂଚନା ମିଳି ନ ଥିଲା ତାଙ୍କ ଠାରୁ ।

–''କ'ଣ ଦରକାର ? ହ୍ୱାଟ୍ ଡୁ ୟୁ ୱାଣ୍ଟ ?'' ବିରକ୍ତ ହୋଇପଡ଼ିଲେ ପ୍ରିନ୍‌ସପାଲ । ଜଣେ ଅପରାଧୀକୁ ଚାହିଁବା ଭଳି ସେ ଚାହିଁଲେ ଶେଖରକୁ ।

–''ସାର୍, ମୁଁ ଆସିଥିଲି ଜଏନ୍ କରିବା ପାଇଁ ।'' ବେଶ୍ ଶଙ୍କିତ ହୋଇ ପଡ଼ିଲା ଶେଖର, ପ୍ରଥମ ସାକ୍ଷାତରେ ଏମିତି ବ୍ୟବହାର ମିଳିବାରୁ ।

ସେ କଲମ ଥୋଇଲେ କାଗଜ ଉପରେ । ଭଲକରି ଥରେ ଦେଖିଲେ ଶେଖରକୁ । ଆପାତତଃ ଗୋରା, ପତଳା ଗଢ଼ଣର ସାଢ଼େ ପାଞ୍ଚଫୁଟ ଉଚ୍ଚତା ବିଶିଷ୍ଟ ଯୁବକ ଜଣେ । ବୋଧହୁଏ ତିନିଚାରିଦିନ ହେବ ଦାଢ଼ି କଟା ଯାଇ ନାହିଁ । ଗହଳିଆ, ଅବିନ୍ୟସ୍ତ କେଶ ଘୋଡ଼େଇ ରଖିଚି କପାଳର ଅର୍ଦ୍ଧାଧିକ । ପିନ୍ଧିଚି କୁର୍ତ୍ତା-ପଞ୍ଜାବି । କାନ୍ଧରୁ ଝୁଲୁଚି ଶାନ୍ତିନିକେତନ ବ୍ୟାଗ୍ । ମୁହଁରେ ରହିଚି ଚପଳତା ଓ ନରମ ଭାବ । ଏ ମୁହଁକୁ ଶ୍ରଦ୍ଧା ଓ ସ୍ନେହ କରାଯାଇପାରେ । ଭକ୍ତି କିମ୍ବା ଭୟ ନୁହେଁ ।

—"କିଏ ଜଏନ୍ କରିବେ ? ଆପଣ ?" ସେ ପଚାରିଲେ, ଶେଖର ଚାକିରି କରିବା ବୟସର ଲୋକ ଜଣେ ଭଳି ଦେଖାଯାଉ ନ ଥିବାରୁ ।

—"ହଁ, ସାର୍ ।"

—"ଆଇ ସି ।" କହିଲେ ପ୍ରିନ୍‌ସପାଲ୍ । ଏଥର ତାଙ୍କର ସ୍ୱର ଯଥେଷ୍ଟ ନରମ ଓ ବନ୍ଧୁଭାବାପନ୍ନ ହୋଇ ଯାଇଥିଲା— "ବସନ୍ତୁ । କେଉଁ ବିଭାଗ ଆପଣଙ୍କର ?"

—"ପଲିଟିକାଲ୍ ସାଇନ୍‌ସ ।" ସାମନା ଚେୟାରଟେ ଅଧିକାର କଲାବେଳେ ଶେଖରର ଉତ୍ତର ।

ପ୍ରିନ୍‌ସପାଲ ବୋଧହୁଏ ଆଉ ଟିକେ ବିସ୍ମିତ ହେଲେ । ତାଙ୍କର ଧାରଣା ଥିଲା, ଆଗନ୍ତୁକ ଜଣକ ହୁଏତ ଲାବରେଟରି ଆସିଷ୍ଟାଣ୍ଟ କିମ୍ବା ଷ୍ଟୋରକିପର ଭାବେ ସଦ୍ୟ ନିଯୁକ୍ତ ହୋଇଚନ୍ତି । ସେ କଲିଙ୍ଗ୍ ବେଲ୍ ଟିପିଲେ । ପଚାରିଲେ— "ଆପଣଙ୍କ ନାଁ ଟା— ।"

—"ଶେଖର ।" ସେ କହିଲା । ବହୁବର୍ଷ ହେଲା ସେ ନିଜର ସଂପୂର୍ଣ୍ଣ ନାମ କହିପାରୁ ନାହିଁ ।

ଜଣେ ପିଅନ୍ ପହଞ୍ଚିସାରିଥିଲା ସେତେବେଳେ । ତାକୁ ନିର୍ଦ୍ଦେଶ ଦିଆଗଲା, ଗ୍ରୀଷ୍ମ ଛୁଟିରେ ଯେଉଁ ଇଣ୍ଟରଭିଉ ହୋଇଥିଲା, ତାହାର ଫଳାଫଳ ଥିବା ଫାଇଲ ଏବଂ ଶେଖରବାବୁଙ୍କର ସାର୍ଟିଫିକେଟ୍ ଇତ୍ୟାଦିର ଜେରକ୍‌ସ କପି ତାଙ୍କ ପାଖକୁ ଆଣିବା ପାଇଁ ।

ସେ ଯିବା ପରେ ପ୍ରିନ୍‌ସପାଲ କହିଲେ— "ଗ୍ରୀଷ୍ମ ଛୁଟିରେ ଆପଣମାନଙ୍କର ଇଣ୍ଟରଭିଉ ହେଲା । ସେଥିରେ ମୁଁ ଉପସ୍ଥିତ ରହିବା କଥା । ମାତ୍ର ବଡ଼ପୁଅ ଆକ୍‌ସିଡେଣ୍ଟରେ ଆହତ ହୋଇ ଡାକ୍ତରଖାନାରେ ଭର୍ତ୍ତି ହେଲା ଠିକ୍ ସେଇଦିନ ।"

—"ମୁଁ ସାର୍, ଦୁଃଖିତ ଆପଣଙ୍କର ଏଇ ଦୁଃଖ ପାଇଁ ।" ଶେଖର କହିଲା ଗମ୍ଭୀର ହୋଇ, ଚିନ୍ତା ପ୍ରକଟ କରି । ପଚାରିଲା— "ବର୍ତ୍ତମାନ ଅବସ୍ଥା କିପରି ଅଛି, ସାର୍ ?"

ପ୍ରିନ୍‌ସପାଲ ଟିକିଏ ହସିଲେ, ଧନ୍ୟବାଦ ଜଣେଇଲେ ଶେଖରର ସହାନୁଭୂତି ପାଇଁ । ପୁଣି କହିଲେ— "ଥ୍ୟାଙ୍କ୍ ଗଡ୍, ସ୍କୁଟରର ଗତି ବେଶି ନ ଥିଲା । ନ ହେଲେ, ଆଜିକାଲି ଯୁବକମାନେ ଯିମିତି ସ୍କୁଟର ଚଲଉଚନ୍ତି ! ନିଜର ସ୍ମାର୍ଟନେସ୍ ଆଉ ଆଧୁନିକତା ଦେଖାଇବା ପାଇଁ ଏଇଟା ଗୋଟେ ବିପଜ୍ଜନକ ଉପାୟ । ମୋର କହିବା କଥା ହେଉଚି, ଅନ୍ୟର ଦୃଷ୍ଟି ଆକର୍ଷଣ କରିବା ପାଇଁ, ପ୍ରଶଂଷା

ପାଇବା ପାଇଁ ହଜାରେ ବାଟ ଅଛି । ନୁହେଁ କି ? ବିଚରା ସ୍କୁଟରକୁ ଅତ୍ୟାଚାର କରି ଏମିତି ଅବଜ୍ଞାଭାବ ଦେଖାଇଲେ କେହି କେବେ ହିରୋ ହୋଇପାରିବ ? ଏତିକି କଥା ପ୍ରତି ଏ ଯୁବକମାନେ ଗୁରୁତ୍ୱ ଦେଉ ନାହାନ୍ତି ।'' ହଠାତ୍ ନିରବ ହୋଇଗଲେ ସେ । ସମ୍ଭବତଃ ସଚେତନ ହେଲେ ଯେ ଶେଖର ଭଳି ସଦ୍ୟ ପରିଚିତ ଜଣେ ଅଧସ୍ତନ କର୍ମଚାରୀ ପାଖରେ ସେ ଅଯଥାରେ ବେଶିଗୁଡ଼ାଏ ଗପୁଚନ୍ତି । ପଚାରିଲେ– ''ମୁଁ ଭାବୁଚି ଆପଣ ସତର୍କତାର ସହିତ ସ୍କୁଟର ଚଳଉଥିବେ । ଆପଣ ଭାରି ଧୀରସ୍ଥିର, ଗମ୍ଭୀର ପ୍ରକୃତିର ଯୁବକ ଜଣେ ବୋଲି ଦେଖାଯାଉଚନ୍ତି ।''

–''ଆପଣଙ୍କ ଅନୁମାନ ଠିକ୍ ନୁହେଁ, ସାର୍ ।'' ଶେଖର ଆମୋଦିତ ହୋଇ କହିଲା– ''ମୋତେ ସ୍କୁଟର ଚଳେଇଆସେ ନାଇଁ ।''

–''ଆସେ ନାଇଁ !'' ଅବାକ୍ ଦେଖାଗଲେ ପ୍ରିନ୍ସପାଲ । କହିଲେ– ''ମୁଁ ବିଶ୍ୱାସ କରିପାରୁନି । ସ୍କୁଟର ନ ଥିଲେ କ'ଣ ହେଲା ? ଆଜିକାଲି କିଏ ଏହା ଚଲେଇ ନ ଜାଣିଚି ?''

ଶେଖର ଜାଣିପାରିଲା ନାଇଁ କି ଉତ୍ତର ଦେବ; କିଛି କହିବ କି ନାଇଁ । ଯା ସତ୍ତ୍ୱେ କହିଲା– ''ମୁଁ ସାର, ଅନ୍ୟ କାହାରି ଜିନିଷ ବ୍ୟବହାର କରିବା ସପକ୍ଷରେ ନୁହେଁ । ହଷ୍ଟେଲରେ ଅନେକଙ୍କର ପେଷ୍ଟ, ତେଲ, ସାବୁନ ସରିଯାଇ ଥାଏ । କେତେକ ଏସବୁ ଜମା କିଣନ୍ତି ବି ନାଇଁ । ଚାନ୍ଦା ଉଠାନ୍ତି ଅନ୍ୟମାନଙ୍କଠାରୁ । ମୁଁ କୌଣସି ଦିନ ଏମିତି କରି ନାଇଁ ।''

କିଛି ସମୟର ନିରବତା । କ୍ଲର୍କ ଜଣେ ଫାଇଲ୍‌ଟେ ଥୋଇସାରିଥିଲା ଟେବୁଲ ଉପରେ । ପ୍ରିନ୍ସପାଲ୍ ଖୋଲିଲେ । ଶେଖରର ନାମ ପାଇବା ପରେ ସନ୍ତୁଷ୍ଟ ଓ ଆଶ୍ୱସ୍ତ ଦେଖାଗଲେ । ଆଉ କିଛି କାଗଜ ଦେଖିବା ପୂର୍ବରୁ କହିଲେ– ''ହଁ, କହୁଥିଲି କ'ଣ କି ପୁଅର ଆକ୍‌ସିଡେଣ୍ଟ ଯୋଗୁ ଆପଣମାନଙ୍କ ଇଣ୍ଟରଭିଉ ଦିନ ମୁଁ ଉପସ୍ଥିତ ନ ଥିଲି । ତେଣୁ ଆପଣଙ୍କୁ ଦେଖି ମୁଁ ପ୍ରଥମେ ବିରକ୍ତ ହୋଇଥିଲି ଯେ, ସମ୍ଭବତଃ କୌଣସି ଛାତ୍ର ମୋତେ ଡିଷ୍ଟର୍ବ କରିବା ପାଇଁ ପହଞ୍ଚିଯାଇଚି । ଆପଣ ଅଧ୍ୟାପକ ଭଳି ଦେଖାଯାଉ ନାହାନ୍ତି । ଯେ କେହି ଭାବିବ, ଆପଣ ଜଣେ ଅଣ୍ଡର ଗ୍ରାଜୁଏଟ୍ ଷ୍ଟୁଡେଣ୍ଟ ।''

ଶେଖର ଉପଭୋଗ କଲା ଏଇ ମନ୍ତବ୍ୟ । ବସିରହିଲା କିଛି ମନ୍ତବ୍ୟ ନ ଦେଇ । ପ୍ରିନ୍ସପାଲ ବେଶ୍ ଖୋଲା ଏବଂ ନରମ ଚରିତ୍ରର ଲୋକଜଣେ ହୁଏତ । ସେ ଏଥର ବ୍ୟସ୍ତ ଥିଲେ ଶେଖରର ସାର୍ଟିଫିକେଟ୍ ଓ ଅନ୍ୟାନ୍ୟ ଟେଷ୍ଟିମୋନିଆଲ୍

ଦେଖିବାରେ । ସେ କ୍ରମଶଃ ବେଶି ଗମ୍ଭୀର ଦେଖାଯାଉଥିଲେ । ତାଙ୍କର ଭ୍ରୂକୁଞ୍ଚନ ହୋଇ ଯାଉଥିଲା । ସେସବୁ ଟେବୁଲ୍‌ରେ ରଖି ସେ ଶେଖରକୁ ଚାହିଁଲେ ମୁଗ୍ଧ ଆଖିରେ । କହିଲେ– "ବ୍ରିଲିଆଣ୍ଟ କେରିଅର୍ ! ତା' ସହିତ ଡିବେଟ୍, ପ୍ରବନ୍ଧ, ଜେନେରାଲ୍ ନଲେଜ୍, କମ୍ପିଟିସନ୍‌ରେ ଏତେ ଗୁଡ଼ାଏ ପ୍ରଥମ ପୁରସ୍କାର ! ଓଣ୍ଡରଫୁଲ୍ !"

ସେ ବୋଧହୁଏ ଖୋଜିବୁଲିଲେ ଆଉ କିଛି ଉପଯୁକ୍ତ ଶବ୍ଦ ନିଜ ପ୍ରତିକ୍ରିୟା ଠିକ୍ ଭାବରେ ପ୍ରକାଶ କରିବା ପାଇଁ । ସହସା ତାଙ୍କର ମୁଗ୍ଧ ଭାବ ହଜିଗଲା । ତାଙ୍କ ପାଖକୁ ଆସିଯାଇଥିବା ଏକ ଲୋଭନୀୟ, ଆକର୍ଷଣୀୟ ଦରବ ରହିବ ନାହିଁ ତାଙ୍କ ପାଖରେ ବେଶିଦିନ ପାଇଁ । ଏମିତି ଏକ ଅବଶୋଷର ଭାଷା ଲେଖି ହୋଇଗଲା ତାଙ୍କ ମୁହଁର କାଗଜ ଉପରେ । କହିଲେ– "ଆପଣଙ୍କ କେରିଅର୍ ସଂପର୍କିତ ଏଖ କାଗଜପତ୍ର ଦେଖିବା ପରେ ମୁଁ ଜୋରଦେଇ କହିପାରେ ଯେ ଆପଣ ଆମ ପାଖରେ ବେଶିଦିନ ରହିବେ ନାହିଁ ।"

–"ଆପଣ ସେମିତି କାହିଁକି ଭାବୁଚନ୍ତି, ସାର୍ ?" ଶେଖର ପଚାରିଲା, ପ୍ରିନ୍‌ସପାଲ୍‌ଙ୍କ ଉତ୍ତର ଅନୁମାନ କରିପାରିଥିଲେ ମଧ୍ୟ ।

–"ଏତେ ଭଲ କେରିଅର ସଂପନ୍ନ ଜଣେ ପ୍ରାର୍ଥୀଙ୍କୁ ଆହୁରି ଭଲ ଚାକିରି ସବୁବେଳେ ଅପେକ୍ଷା କରିଥାଏ ।" ସେ କହିଲେ ଏବଂ ଯୋଗ କଲେ– "ଆପଣ ମାଇଣ୍ଡ୍ ନ କଲେ ମୁଁ ଆଉ ଗୋଟେ କଥା କହିବି । ଆପଣଙ୍କ ସଂପ୍ରଦାୟ ସୁରୁଖୁରୁରେ ଆପଣଙ୍କୁ ପହଞ୍ଚେଇଦେବ ଗୋଟେ ମର୍ଯ୍ୟାଦାଜନକ ଅଫିସର ଚେୟାର ପାଖରେ ।"

ଶେଖର ଅପମାନିତ ହେଲା ନାହିଁ ଏ କଥାରେ । ଟିକିଏ ରହି କହିଲା– "ସାର୍, ବି.ଏ. ପରେ ମୁଁ ଷ୍ଟାଇପେଣ୍ଡ ଗ୍ରହଣ କରି ନାହିଁ । ଏମ୍.ଏ. ରେ ସିଟ୍ ପାଇବା ପାଇଁ ହରିଜନ ସଂପ୍ରଦାୟର ସାର୍ଟିଫିକେଟ୍ ଉପରେ ଭରସା କରି ନାହିଁ । କଂପିଟେଟିଭ୍ ପରୀକ୍ଷା ଦେବି ଜଣେ ସାଧାରଣ ପ୍ରାର୍ଥୀ ଭାବରେ । କିଛି ବର୍ଷ ତଳେ ଜଣେ ପୋଲିସ୍ ଅଫିସରଙ୍କୁ ଏ କଥା କହିଥିଲି । ବର୍ତ୍ତମାନ ଦ୍ୱିତୀୟଥର ପାଇଁ ଆପଣଙ୍କ ଆଗରେ କହୁଚି ।"

–"ଆଇ ଆମ୍ ସରି, ଆପଣଙ୍କ ମନରେ କଷ୍ଟ ଦେଇଥିବାରୁ ।" ପ୍ରିନ୍‌ସପାଲ ବାସ୍ତବିକ ଦେଖାଗଲେ କ୍ଷମାପ୍ରାର୍ଥୀ– "ବିଶ୍ୱାସ କରନ୍ତୁ, ଆପଣଙ୍କୁ ଆଘାତ ଦେବା ପାଇଁ ମୁଁ ସେମିତି କହି ନ ଥିଲି । ତେବେ ମୋର ମତ ହେଉଚି, ସରକାର ଗୋଟେ ସୁଯୋଗ ଆପଣଙ୍କୁ ଦେଉଚନ୍ତି । ତାହାକୁ ଅଗ୍ରାହ୍ୟ କରିବାରେ ବିଶେଷ

ବିଜ୍ଞତା ନାହିଁ, ଶେଖରବାବୁ ! ଏମିତି ଗୋଟେ ଜିଦ୍, ସଂକଳ୍ପର ଫାଇଦା ନାହିଁ କିଛି । ମୁଁ ଚାହେଁ, ଆପଣ ଜଣେ ବଡ଼ ଅଫିସର ହୁଅନ୍ତୁ । ଏ ଦିଗରେ ମୋର ହାର୍ଦ୍ଦିକ ଶୁଭକାମନା ଗ୍ରହଣ କରିବେ ।''

ଶେଖର କିଛି କହିଲା ନାହିଁ । ହସିବାକୁ ଚେଷ୍ଟା କଲା । ସୂଚେଇ ଦେଲା ଯେ, ଏ ବିଷୟରେ ଆଉ ଅଧିକ ଆଲୋଚନା ନ କଲେ ସେ ବରଂ ଖୁସି ହେବ । ଆସି ଯାଇଥିଲା ଦୁଇକପ୍ ଚା' । ଗୋଟିଏ କପ୍ ଶେଖର ଆଡ଼େ ବଢ଼େଇ ପ୍ରିନ୍ସପାଲ କହିଲେ – ''ମୁଁ ଜାଣେ ନାହିଁ, ଆପଣ ଆମ ସହିତ କେତେ ଦିନ ରହିବେ । କିନ୍ତୁ ଯେତିକି ଦିନ ରହିବେ, ଆମ ପିଲାମାନେ ଆପଣଙ୍କଠାରୁ ଯଥାସମ୍ଭବ ସାହାଯ୍ୟ ପାଇବେ ବୋଲି ମୁଁ ଆଶାକରେ ।''

–''ଆପଣ ଏ ସଂକ୍ରାନ୍ତରେ ମୋ ଉପରେ ଭରସା ରଖିପାରନ୍ତି, ସାର୍ ।'' ଶେଖର ଦୃଢ଼ ପ୍ରତିଶ୍ରୁତି ଦେଲା ।

–''କଥା ହେଉଚି ।'' କହିଲେ ପ୍ରିନ୍ସପାଲ – ''ଅଳ୍ପ କିଛି ବର୍ଷ ହେଲା ଏ କଲେଜ ହୋଇଚି, ଲୋକମାନଙ୍କର ଏବଂ ଏଠାକାର ବଡ଼ ବଡ଼ ଇଣ୍ଡଷ୍ଟ୍ରିମାନଙ୍କର ସହଯୋଗରେ । ଏ କଲେଜ ବିଶ୍ୱାସ କରେ ଏକ୍ସ୍‌ଲେନ୍ସରେ । ନିଯୁକ୍ତି ବାବଦରେ ଧରାଧରି ଇତ୍ୟାଦି କାମ କରେ ନାହିଁ ଏଠାରେ । ଏ କଲେଜ ଅଧ୍ୟାପକମାନଙ୍କୁ ସମ୍ମାନ ଦେଖାଏ । ସେମାନଙ୍କର ଆବଶ୍ୟକତା ପ୍ରତି ସତର୍କ ଥାଏ । ଆପଣମାନଙ୍କୁ ସରକାରୀ ବେତନ ଦିଆଯିବ । ଅନ୍ୟ କଲେଜ ଭଳି ଏଠାରେ ଡୋନେସନ ଦେବାକୁ ପଡ଼ିବ ନାହିଁ । ମୁଁ ଭାବୁଚି, ଆପଣ ନିଶ୍ଚୟ ଅବିବାହିତ ।''

–''ସିଓର !'' କହିଲା ଶେଖର ଏବଂ ପ୍ରିନ୍ସ୍‌ପାଲଙ୍କ ସହିତ ଯୋଗଦେଲା ମନଖୋଲା ହସରେ ।

–''ତେଣୁ ।'' କହି ଚାଲିଲେ ପ୍ରିନ୍ସପାଲ – ''ଦଶ ରୁମ୍ ବିଶିଷ୍ଟ ବାଚେଲର୍ ହଷ୍ଟେଲ୍‌ଟେ ଅଛି କଲେଜରେ । ଆପଣଙ୍କର କିଛି ଅସୁବିଧା ନ ଥିଲେ ସେଠାରେ ରହିପାରନ୍ତି । ରୋଷେଇ ପାଇଁ ତ ବ୍ୟବସ୍ଥା ଅଛି । ତା' ସହିତ ଅଛି ବ୍ୟାଡ୍‌ମିଣ୍ଟନ୍ ଓ ଟେବୁଲ୍‌ଟେନିସ୍ ଖେଳିବା ପାଇଁ ସୁବିଧା ।''

–''ମୁଁ ସାର୍, ଏଇ ହଷ୍ଟେଲ୍‌ରେ ରହିବାକୁ ଚାହୁଁଥିଲି ।'' ଅନୁରୋଧ କଲା ଶେଖର ।

–''ସିଓର ! ହ୍ୱାଏ ନଟ୍ !'' ଆଗ୍ରହ ପରିପୂର୍ଣ୍ଣ ଉତ୍ତର – '' ସେ ହଷ୍ଟେଲ ଆପଣମାନଙ୍କପାଇଁ ତିଆରି ହୋଇଚି ।''

ପୁଣି କଲିଙ୍ଗ୍ ବେଲ୍ । ଅଫିସ୍‌ର ହେଡ୍ କ୍ଲର୍କ । ପ୍ରିନ୍ସ୍‌ପାଲ ପରିଚୟ କରାଇ ଦେଲେ ବୈରାଗୀ ମେହେରଙ୍କ ସହିତ । ତାଙ୍କଠାରୁ ଜଣା ପଡ଼ିଲାଯେ, ଗୋଟିଏ

ରୁମ୍ ଖାଲି ଅଛି । ଆଉ କେହି ସେଠାରେ ରହିବାକୁ ଇଚ୍ଛା କଲେ ଶେଖର ସହିତ ସେ ରୁମ୍‌ଟି ସେୟାର କରିବେ । ପ୍ରିନ୍‌ସ୍‌ପାଲଙ୍କ ଅଫିସ୍‌ରେ ଜଏନ୍ କରିବା ପର୍ବଟି ଶେଷ ହେଲା । ଏକ ସନ୍ତୋଷଜନକ ଅନୁଭୂତି । ବେଶ୍ ହାଲୁକା ଲାଗୁଥିଲା ଶେଖରକୁ । ବାସ୍ତବିକ ଶିହରଣପୂର୍ଣ୍ଣ, ରୋମାଞ୍ଚକର ଅଭିଜ୍ଞତା ।

କମନ୍‌ରୁମ୍ ଆଡୁ ଟିକିଏ ବୁଲିଆସିବା ପାଇଁ ଇଚ୍ଛା ଥିଲା ଶେଖରର । ସାଙ୍ଗରେ ଥିବା ପିଅନ ପୂର୍ଣ୍ଣ ବହିଦାର କହିଲା ଯେ କ୍ଲାସ୍ ନ ଥିବାରୁ ଯେଉଁ ଅଳ୍ପସଂଖ୍ୟକ ସାର ଆସିଥିଲେ, ସେମାନେ ପଳେଇ ଗଲେଣି । ସେ ଆହୁରି ମଧ୍ୟ କହିଲା ଯେ, ବାଚେଲର୍ ହଷ୍ଟେଲ ମେସ୍ ଆରମ୍ଭ ହୋଇ ନାହିଁ । ପୂଝାରୀ ପିଲାଟେ ଯୋଗାଡ଼ ହେଲେ ଯାଇ ଯେଉଁ କଥା ।

ହଷ୍ଟେଲର ଗୋଟେ ରୁମ୍ ଚାବି ଖୋଲିବା ବେଳେ ପୂର୍ଣ୍ଣ ପଚାରିଲା – "ଆପଣଙ୍କ ଜିନିଷପତ୍ର କେଉଁଠି ଅଛି, ସାର ?"

ବହୁଦିନ ହେଲା ବନ୍ଦ ହୋଇ ରହିଥିବା ଗୋଟେ ରୁମ୍‌ର ନିଜସ୍ୱ ଗନ୍ଧଟେ ଥାଏ । ଶେଖର ଏଇ ଗନ୍ଧ ଭିତରକୁ ଯିବା ବେଳେ କହିଲା – "ମୁଁ କିଛି ଜିନିଷ ଆଣି ନାହିଁ ।"

– "ଆଣି ନାହାନ୍ତି !" କଥାଟା ଅସ୍ୱାଭାବିକ ଥିଲା ପୂର୍ଣ୍ଣ ପାଇଁ । ପଚାରିଲା – "ତେବେ ସାର୍, ଚଳିବେ କିପରି ?"

ବ୍ୟକ୍ତିଗତ ବ୍ୟାପାରରେ ଅନ୍ୟ କାହାରି ଆଗ୍ରହ ଏବଂ ହସ୍ତକ୍ଷେପକୁ ନାପସନ୍ଦ କରୁଥିବା, ପ୍ରଶ୍ରୟ ଦେଉ ନ ଥିବା ଶେଖର ନିରବ ରହିଲା ଟିକିଏ । ପୂର୍ଣ୍ଣ ତା' ପାଇଁ ଚିନ୍ତିତ ହୋଇଚି କେବଳ; ତା' ବିଷୟରେ ଅନୁପ୍ରବେଶ କରି ନାହିଁ । କହିଲା ଶେଖର – "ଭାବିଥିଲି କୌଣସି ହୋଟେଲରେ ରାତି କଟେଇଥାନ୍ତି । ଭଡ଼ାଘର ଖୋଜିଥାନ୍ତି । ତେବେ ଏଠାରେ ଚମତ୍କାର ବ୍ୟବସ୍ଥା ଅଛି । କିଛି ଅସୁବିଧା ହେବ ନାହିଁ ।"

ପୂର୍ଣ୍ଣ ଯିବା ପରେ ଡବଲ୍ ସିଟେଟ୍ ରୁମ୍‌କୁ ଭଲକରି ଦେଖିଲା ଶେଖର । ଫ୍ୟାନ୍ ଚାଲୁଚି । ବଲ୍‌ବ ନାହିଁ । ଗୋଟେ ଶେଲ୍‌ଫରେ ଅଗରବତିର ଖୋଳ, ଇଞ୍ଚେ ଲମ୍ୱର କ୍ୟାଣ୍ଡଲ, ବ୍ଲେଡ୍ ଗୋଟେ । ପୁରୁଣା ଖବରକାଗଜର କିଛି ପୃଷ୍ଠା । ଅନ୍ୟ ଶେଲ୍‌ଫରେ ଫଟା ପ୍ଲାଷ୍ଟିକ୍ ମଗ୍, ନିଃଶେଷ ହୋଇ ଯାଇଥିବା ବଲ୍ ପଏଣ୍ଟ୍ ପେନ୍, ଟୁଥ୍ ପେଷ୍ଟ ଖୋଳ ଇତ୍ୟାଦି । ଖଟ ଦୁଇଟି ଅସଜଡ଼ା ।

ଅପରାହ୍ଣ ପାଞ୍ଚଟା । କୋଣରେ ଅଛି ଟଏଲେଟ୍ । ବେସିନ୍ ଟ୍ୟାପ୍ ଖୋଲିଲା । ଗରମ ପାଣି । ମୁହଁ ଧୋଇ ହେଲା । ଡାହାଣ ହାତ ପାପୁଲି ଦେଖାଇ ପାଣି

ପିଇଲା । ରୁମାଲ୍‌ରେ ମୁହଁ ପୋଛି ହେବା ବେଳେ ଦେଖିଲା, ଦରଜା ପାଖରେ ଟ୍ରାଉଜର ଓ ଗଞ୍ଜି ପିନ୍ଧା ଭଦ୍ରବ୍ୟକ୍ତି ଜଣେ । ହସହସ ମୁହଁରେ ତା' ଆଡ଼େ ଅନେଇଚନ୍ତି ଆଗ୍ରହର ସହିତ ।

—"ହାଲୋ, ମୋ ନାଁ ବିମଳ । ଫିଜିକ୍‌ସ୍ ଡିପାର୍ଟମେଣ୍ଟର । ନୂଆ ଜଏନ୍ କଲେ ବୋଧହୁଏ ।"

ସେ ହାତ ବଢ଼େଇଲେ କରମର୍ଦ୍ଦନ ପାଇଁ । ଶେଖର ଯଥାସମ୍ଭବ ସଂକ୍ଷେପରେ ନିଜର ପରିଚୟ ଦେଲା ।

—"ଆସନ୍ତୁ, ମୋ ରୁମ୍‌ରେ ଚା' ପିଇବା ।" ନିମନ୍ତ୍ରଣ କଲା ବିମଳ ।

—"ଚା' ? ଆପଣଙ୍କ ରୁମ୍‌ରେ ?" କଥାଟା ଠିକ୍ ବୁଝିପାରିଲା ନାହିଁ ଶେଖର ।

—"ମୋ ରୁମ୍‌ରେ ସମସ୍ତ ବ୍ୟବସ୍ଥା ଅଛି ।" ପ୍ରକାଶ କଲା ବିମଳ । ଆହୁରି ମଧ୍ୟ କହିଲା— "ଏଠାକାର ମେସ୍ ଉପରେ ଭରସା ନାହିଁ । ପୂଝାରୀପିଲାଟେ ମିଳିଲେ ଚୁଲି ଜଳିବ; ନ ହେଲେ ଯାବତୀୟ ଅସୁବିଧା । ପାଖ ଚା' ଦୋକାନ ଅଧ କିଲୋମିଟର ଦୂରରେ । କାରବାର ଭଲ ହୁଏ ନାହିଁ ବୋଲି କଲେଜ କ୍ୟାଣ୍ଟିନ୍ କେବେ କିପରି ଚାଲେ ଧକେଇ ହେଲା ଭଳି । ଏ ହଷ୍ଟେଲରେ ରହିଲେ ସାଇକେଲ, ଷ୍ଟୋଭ, ପ୍ରେସରକୁକର ଆଗ ଦରକାର ।"

କ୍ଷମା ମାଗି ଶେଖର ପଳେଇଲା ବିମଳ ପାଖରୁ । ଗୁଡ଼ାଏ ବାଟ ଚାଲିବା ପରେ ରିକ୍‌ସା । ବସ୍ ଷ୍ଟାଣ୍ଡ । ରୁଟି-ତରକାରି । ଖବରକାଗଜ, ବଲ୍‌ବ, ଦିଆସିଲି ଓ ମଶା ଧୂପ ଇତ୍ୟାଦି । ରାତି ପ୍ରାୟ ନ'ଟା ବେଳେ ହଷ୍ଟେଲ । ବିମଳ ରୁମ୍‌ରୁ ବାହାରିଆସୁଚି ଅଣ୍ଡା ଭଜା ହେଉଥିବାର ଗନ୍ଧ ।

ଖଟରୁ ଧୂଳି ଝାଡ଼ିବା ପରେ ପୋଷାକ ବଦଳାଇଲା ଶେଖର । ଜଳେଇଲା ମଶାଧୂପ । ପୋଷାକ ଓ ବ୍ୟାଗ୍‌କୁ ଥୋଇଲା ଗୋଟେ ତକିଆ ଭଳି । ଖବରକାଗଜ ପଡ଼ିଥିବା ଅବସ୍ଥାରେ ଶୋଇ ଯାଇଥିଲା । ରାତି ତିନିଟା ବେଳେ ସେ ସଚେତନ ହେଲା ଯେ, ସେ ଶୋଇଚି ନୂଆ ରୁମ୍‌ରେ, ଖାଲି ଖଟରେ । ସେ ଆସିଲା ବାହାରକୁ । ଶୋଷ । ବେସିନ୍‌ରେ ପାଣିପିଆ । ପୁଣି ଖଟ ।

ଆଉ ନିଦ ହେଲା ନାହିଁ । ସେଥିପାଇଁ ବ୍ୟସ୍ତ ହେଉ ନ ଥିଲା ସେ । ଖୋଲିଲା ଖବରକାଗଜ । କିଛି ପଢ଼ିବା ପୂର୍ବରୁ ଅନ୍ୟମନସ୍କ ହୋଇଗଲା । ଘୂରୁଥିବା ଫ୍ୟାନ ଆଡୁ ଦୃଷ୍ଟି ଫେରାଇ ସେ ଚାହିଁଲା ରୁମ୍‌ର କାନ୍ଥ, ଝରକା, ଶେଲ୍‌ଫକୁ । ଏସବୁ ସତେଯେପରି ସଂଯୋଜିତ ହୋଇ ଯାଉଚନ୍ତି ତା' ସହିତ । ଗାଁ, ଘର, ବାପା-ମା, ଫାଦର ଯୋଶେଫ, ସ୍କୁଲ-କଲେଜ ଅନୁଭୂତି । ଏସବୁ ତା' ଚେତନା

ଓ ଜୀବନର ଗୋଟିଏ ଗୋଟିଏ ଅଂଶବିଶେଷ । ଏଇମାନଙ୍କୁ ନେଇ ଗଢ଼ିଉଠିଚି ତା' ଜୀବନର ନକ୍ସା । ଏହା ସହିତ ଏବେ ଯୋଗ ହୋଇଯାଇଚି ଏ କୋଠରି ହଷ୍ଟେଲ, କଲେଜ ଓ ଏପର୍ଯ୍ୟନ୍ତ ଭେଟ ହୋଇ ନ ଥିବା ପିଲାମାନେ । ଗୋଟେ ଉଶ୍ୱାସ ଭାବ । ଗୋଟେ ପ୍ରତିରକ୍ଷା । ଏପରିକି ଗୋଟେ ପରିପୂର୍ଣ୍ଣତା । ଅନ୍ତତଃ ସାମୟିକ ଭାବରେ ଭଲ ବ୍ୟବସ୍ଥାଟେ । ଅନିଶ୍ଚିତ ଏବଂ ବ୍ୟାକୁଳ ହେବାକୁ ପଡ଼ିବ ନାହିଁ । ଅବଲମ୍ବନଟେ ମିଳିଯାଇଚି ।

ଅଧ୍ୟାପକ ଜୀବନର ପ୍ରଥମ କ୍ଲାସ । ସାମନାରେ ଶତାଧିକ ଛାତ୍ର-ଛାତ୍ରୀ । ଉତ୍ସୁକ, ଆମୋଦିତ । ଛୁଆ ମାଷ୍ଟ୍ର— ଶୁଭିବା ଭଳି ମନ୍ତବ୍ୟ । ଆପଣଙ୍କ ପରିଚୟ, ସାର— ଅନ୍ୟ ଏକ ସ୍ୱର । ଆପଣ କ'ଣ ସତରେ ଏମ୍.ଏ. ପାସ୍ କରିଚନ୍ତି ? — ଅବିଶ୍ୱାସ ଥିବା ଆଉ ଗୋଟିଏ ପ୍ରଶ୍ନ । ଡିବେଟ୍ ପ୍ରତିଯୋଗିତାରେ ଉଲ୍ଲେଖନୀୟ ସଫଳତା ହାସଲ କରିଥିବା ଶେଖର ସାମନାରେ ଚାଲେଞ୍ଜ । ଭଲ କରି କିଛି କହିପାରୁ ନାହିଁ ସେ । ତା'ର ଧାରଣା ହେଲା, ସାମନାରେ ଥିବା ପିଲାମାନେ ତା'ଠାରୁ ବେଶି ଜାଣିଚନ୍ତି ରାଜନୀତି ବିଜ୍ଞାନ ବିଷୟରେ । ଗୋଟେ ନୈରାଶ୍ୟଜନକ ଆରମ୍ଭ ତା' ପାଇଁ । ବୋଧହୁଏ ଗୋଟିଏ ବର୍ଷ ପରେ ସେ କ୍ଲାସ୍‌ରୁ ବାହାରିବା ବେଳେ ସଚେତନ ହେଲା ଯେ ଝାଳ ଯୋଗୁ ଓଦା ହୋଇଯାଇଚି ତା'ର ପୋଷାକ । ହୃତ୍‌ସ୍ପନ୍ଦନ ଯୋଗୁ କଥା କହିବା ଶକ୍ତି ହଜିଯାଉଚି । ତାକୁ ଘୋଡ଼େଇ ରଖିଚି ଆତ୍ମବିଶ୍ୱାସହୀନତା ।

ଯା ପୂର୍ବରୁ ନିଜକୁ ସେ ଏତେ ତିରସ୍କାର କରି ନ ଥିଲା । ତିକ୍ତ ଓ ବିଷାକ୍ତ ହୋଇଗଲା ତା' ଅଭ୍ୟନ୍ତର । ସମସ୍ତଙ୍କ ଆଗରେ ସେ ପ୍ରମାଣ କରିଦେଲାଯେ ସେ ଗୋଟେ ଜୋକର । ପିଲାମାନଙ୍କୁ ମନୋରଞ୍ଜନ ଯୋଗେଇବା ପାଇଁ ସେ ଏଠାରେ ନିଯୁକ୍ତ ହୋଇଚି । ଏତେ ଉଜ୍ଜ୍ୱଳ କେରିଅର ପରିଣତ ହୋଇ ଯାଉଚି ଗୋଟେ ପ୍ରତାରଣାରେ । ବିଚରାଟିଏ, ଅପଦାର୍ଥଟେ— କେହି ଜଣେ ତା' ଭିତରେ କହିଉଠିଲା । ଶେଖର ଚାହିଁଲା ଚାରିଆଡ଼କୁ, ଏକଥା ଆଉ କେହି ଶୁଣି ପାରିଚନ୍ତି କି ନା ଜାଣିବା ପାଇଁ । କମନ୍‌ରୁମ୍‌ର ମୃଦୁ କୋଳାହଳ, ଅନ୍ୟମାନଙ୍କର ଉପସ୍ଥିତି ଇତ୍ୟାଦି ଜଣାପଡୁଥିଲା ଝାପ୍‌ସା ଓ ଦୂରନ୍ତ । ଯାସତ୍ତ୍ୱେ ଅନ୍ୟମନସ୍କ ଭାବରେ ସେ ପରିଚିତ ହେଉଥିଲା ଅନ୍ୟ ଅଧ୍ୟାପକମାନଙ୍କ ସହିତ । ବ୍ୟସ୍ତ ହେଉଥିଲା ଯେ ଏମାନଙ୍କ ଗହଣରେ ରହିବା ପାଇଁ ସେ ଯୋଗ୍ୟ ନୁହେଁ ।

ସେଦିନର ଅନ୍ୟ ଏକ ପିରିଅଡ୍‌ରେ ସେ ଫେରିପାଇଲା କିଞ୍ଚିତ ସ୍ଥିରତା ଓ ମନୋବଳ । ଷୋଳଜଣିଆ ଦ୍ୱିତୀୟ ବାର୍ଷିକ ଅନର୍ସ କ୍ଲାସ୍ । ସମସ୍ତେ ଚୁପ୍‌ଚାପ୍ ଓ ଆଗ୍ରହୀ । ତା' କଥା ଶୁଣିବା ପାଇଁ ରହିଥିଲା ଉତ୍କଣ୍ଠା । ମାତ୍ର ସେ

କିଛି ପାଠ ପଢ଼େଇ ପାରିଲା ନାହିଁ । ପିଲାମାନଙ୍କ ସହିତ ପରିଚିତ ହେବାକୁ ପଡ଼ିଲା । ସେ ଉତ୍ସାହିତ ହେଲା ଏଇ କାରଣରୁ ଯେ ତା' କେରିଅର୍ ସମ୍ପର୍କରେ; ଡିବେଟ୍, ସାଧାରଣଜ୍ଞାନ ସଂପର୍କରେ ତା'ର କୃତିତ୍ୱ ବିଷୟରେ ଜଣେ-ଦୁଇଜଣ ସୂଚନା ପାଇଥିଲେ । ବାଧ ହୋଇ ନିଜ କଥା କହିଲା । ଜାଣିପାରିଲା ନାହିଁ ତା'ର ସ୍ୱାଭାବିକ ନମ୍ରତା, ଅହଙ୍କାର ଓ ବାହାସ୍ଫୋଟରେ ପରିଣତ ହୋଇ ଯାଉଚି କି ନା । ତେବେ ତା'ର କଥା ଯଥାସମ୍ଭବ ସଂକ୍ଷେପ ହେଉଥିଲା ଏବଂ ପିଲାମାନେ ଅସନ୍ତୁଷ୍ଟ ହୋଇ ତାକୁ ପ୍ରଶ୍ନ ପଚାରୁଥିଲେ କୌଣସି ତଥ୍ୟ ଠିକ୍ ଭାବରେ ପାଇବା ପାଇଁ ।

ମାତ୍ର ଏମିତି ଏକ ସ୍ତରରେ ସେମାନେ ପହଞ୍ଚି ଯାଇଥିଲେ, ଯେଉଁଠି ଶେଖର ବାଧ ହୋଇ ସେମାନଙ୍କୁ ନିରୁତ୍ସାହିତ କଲା । ବ୍ୟକ୍ତିଗତ କଥା ସେମାନେ ନ ଜାଣିଲେ ହିଁ ଭଲ । ଯା ପରେ ସେମିନାର ଓ ଆଗାମୀ ପରୀକ୍ଷା ସଂପର୍କରେ ପ୍ରସ୍ତୁତି ଉପରେ ଆଲୋଚନା । ସେମିନାର ହୁଏ କେବେ କିପରି । ଗଣେଶପୂଜା, ସରସ୍ୱତୀ ପୂଜା, ପିକ୍‌ନିକ ମଧ ହୁଏ । ୱେଲ୍‌କମ୍ ଓ ଫେୟାରୱେଲ ମିଟିଙ୍ଗ୍ ତ ହେବା କଥା । ନିୟମିତ ଭାବେ ହୁଏ ।

ହଷ୍ଟେଲରେ ପହଞ୍ଚି ଦେଖିଲା, ତା' ରୁମ୍ ସାମାନାରେ ଥୁଆହୋଇଚି ଗୋଟେ ଟ୍ରଙ୍କ୍, ବିଛଣା ଓ ବ୍ରିଫ୍‌କେଶ୍ । ସେ ଅନୁସନ୍ଧିତ୍ସୁ ହୋଇ ଚାରିଆଡ଼କୁ ଚାହିଁବା ବେଳେ ଟଏଲେଟ୍‌ରୁ ବାହାରି ଆସୁଥିଲା ରଂଜନ । ଇତିହାସର ଛାତ୍ର । ମେଧାବୀ, କଠୋର ପରିଶ୍ରମୀ ଓ ଉଚ୍ଚାଭିଳାଷୀ । ଅତ୍ୟନ୍ତ ସତର୍କ ନିଜ ସଂପର୍କରେ ।

ପି.ଜି. ପଢ଼ିବା ବେଳେ ସେମାନେ ରହୁଥିଲେ ଗୋଟିଏ ହଷ୍ଟେଲ୍‌ରେ ଏବଂ ମାମୁଲି ପରିଚୟ ଥିଲା । କିଛି ଦିନ ପୂର୍ବେ ଏଇ କଲେଜ ପାଇଁ ଇଣ୍ଟରଭିଉ । ଟେନ୍‌ସନ୍ ଓ ସଂଶୟ ଯୋଗୁ ପଦେ-ଦୁଇପଦ କଥାବାର୍ତ୍ତା । ନିଯୁକ୍ତିପତ୍ର ପାଇବା ପରେ ଏଥର ଗୋଟିଏ ରୁମ୍ । ଗୋଟିଏ ଅନୁଷ୍ଠାନର କର୍ମଚାରୀ ।

—"ହାଲୋ, ଶେଖର !" ଅଭିବାଦନ ଜଣେଇଲା ରଂଜନ— "ମୋତେ କୁହାଗଲା ଯେ ଏଇ ରୁମ୍‌ରେ ସିଟ୍‌ଟିଏ ଖାଲି ଅଛି ।"

—"ନିଶ୍ଚୟ ।" ଚାବି ଖୋଲିଲା ଶେଖର ଏବଂ ଜିନିଷପତ୍ର ଭିତରକୁ ନେବାରେ ରଂଜନକୁ ସାହାଯ୍ୟ କଲା ।

ଚାରିଆଡୁ ଦୃଷ୍ଟି ଫେରାଇ ରଂଜନ ପ୍ରତିକ୍ରିୟା ପ୍ରକାଶ କଲା ଏଇଭଳି-- "ମନ୍ଦ ନୁହେଁ, ଆକୋମେଡେସନ୍ ! ନା କ'ଣ କହୁଚୁ ତୁ ?"

ସେମାନେ ପୂର୍ବରୁ ପରସ୍ପରକୁ ତୁ ବୋଲି ସମ୍ବୋଧନ କରୁଥିଲେ କି ନା, ସେମାନଙ୍କର ମନେ ନାହିଁ । ଏଠାରେ କିନ୍ତୁ ଆପଣାଛାଏଁ ଗଢ଼ିଉଠିଲା ଆତ୍ମୀୟତା

ଓ ଘନିଷ୍ଠତା । ରଂଜନ ପୁଣି କହିଲା– "ମୁଁ ନିଜେ ଦେଖିଛି, ନୂଆ କଲେଜରେ ଜଏନ୍ କରିଥିବା ଅଧ୍ୟାପକମାନଙ୍କର ଦୟନୀୟ ଅବସ୍ଥା । ତାହା ତୁଳନାରେ ଏଇଟା ଗୋଟେ ପାରାଡାଇଜ୍ । ତେବେ ଅନେକ ଦିନ ଧରି ସିଙ୍ଗଲ୍ ସିଟେଟ୍ ରୁମ୍‌ରେ ରହିବା ଅଭ୍ୟାସ ଥିଲା । ଏବେ ଗୋଟିଏ ରୁମ୍‌ରେ ଆଡ୍‌ଜଷ୍ଟ କଲାବେଳକୁ ଅଡୁଆ ଲାଗିପାରେ । ନୁହେଁ କି ?"

–"ଅଡୁଆ ଆଉ କ'ଣ ? ଚଳିବ ।" ଶେଖର ସୂଚେଇ ଦେଲା ଯେ ରଂଜନ ସହିତ ରହିବା ଆଦୌ ଏକ ସମସ୍ୟା ନୁହେଁ; ବରଂ ତାହା ଏକ ସ୍ୱାଗତଯୋଗ୍ୟ କଥା । କିଛି ମାମୁଲି କଥା ପରେ ରଂଜନ ତରତର ହୋଇ ବାହାରିଗଲା ଅଫିସକୁ ଜଏନ୍ କରିବା ପାଇଁ । ପ୍ରିନ୍‌ସପାଲଙ୍କ ସଂପର୍କରେ ଧାରଣାଟିଏ ପାଇ ପାରିଥିଲା ଶେଖର ଠାରୁ । ସେ ବସିରହିଲା ରୁମ୍‌ରେ ଏବଂ ସୌଜନ୍ୟ ଦୃଷ୍ଟିରୁ ଅପେକ୍ଷା କଲା ରଂଜନକୁ ।

ଶେଖର ସମେତ ଚାରିଜଣଙ୍କୁ ନେଇ ପଲିଟିକାଲ ସାଇନ୍‌ସ୍ ଡିପାର୍ଟମେଣ୍ଟ । ମୁଖ୍ୟ ଅଧ୍ୟାପକ ଯିବାଆସିବା କରନ୍ତି ପନ୍ଦର କିଲୋମିଟର ଦୂର ଗାଁରୁ । ସେଠାରେ ସେ ଜଣେ କୁଆଡ଼େ ମାମଲତକାର । ପଲିଟିକ୍‌ସ ସହିତ ସଂପର୍କ ରଖନ୍ତି । ନିକଟ ଭବିଷ୍ୟତରେ ଏମ୍.ଏଲ୍.ଏ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିପାରନ୍ତି ବୋଲି ଶୁଣାଯାଏ । ଅନ୍ୟ ଦୁଇଜଣ ରହନ୍ତି ଟାଉନ୍‌ରେ । ଯୁକ୍ତ ଦୁଇ ପିଲାମାନଙ୍କ ପାଇଁ ଓଡ଼ିଆରେ ଦୁଇଟି ବହି ଲେଖି ସାରିଲେଣି । ପ୍ରଶ୍ନ-ଉତ୍ତର ଢାଞ୍ଚାରେ ।

ସପ୍ତାହେ ବ୍ୟାପୀ ସେମିନାର ହେବ । ଦିନକୁ ପଢ଼ାଯିବ ଓ ଆଲୋଚିତ ହେବ ଦୁଇଟି ପେପର । ବିଶ୍ୱବିଦ୍ୟାଳୟ ପରୀକ୍ଷାର ସମ୍ଭାବ୍ୟ ପ୍ରଶ୍ନକୁ ନେଇ ଲେଖାଯିବ ଏଇ ପେପର୍‌ଗୁଡ଼ିକ । ଶେଖରର ଏଇ ପ୍ରସ୍ତାବ ଶୁଣି ଅନ୍ୟ ତିନିଜଣ ଅଧ୍ୟାପକ ଚାହିଁଲେ ପରସ୍ପରକୁ । ମନ ଭିତରେ ଆମୋଦିତ ହେଲେ ।

ମୁଖ୍ୟ କହିଲେ ଟିକିଏ ବିଦ୍ରୁପର ସହିତ– "ଭଲ ପ୍ରସ୍ତାବ । ପିଲାମାନଙ୍କୁ ସାହାଯ୍ୟ କରିବ । ଏ. ପେପର ଲେଖିବ କିଏ ?

–"ପିଲାମାନେ ।" ଉତ୍ତର ଦେଲା ଶେଖର । ଯୋଗକଲା– "ଆମେ ଟିକିଏ ସାହାଯ୍ୟ କରିବା । ସେମାନେ କେଉଁ ବହି ପଢ଼ିବେ, କିପରି ଲେଖିବେ, ଆମେ ପରାମର୍ଶ ଦେବା । ମୁଁ ସାର୍ ଭାବୁଚି, ଆମେ ଚାରିଜଣ ଚାରିଟା ପେପର ଲେଖିଲେ, ସେମିନାର ସପ୍ତାହର ମର୍ଯ୍ୟାଦା ଆହୁରି ବଢ଼ିଯା'ନ୍ତା ।"

ମୁଖ୍ୟଙ୍କ ମୁହଁ ଶୁଖିଗଲା । ଅନ୍ୟଦୁହେଁ ନିରୁତ୍ସାହିତ ଦେଖାଗଲେ । ଜଣେ କହିଲା– "ନାଇଁ, ନାଇଁ, ଆମେ ଗୋଟେ ଲେଖିବା କ'ଣ ? ପିଲାମାନେ ଲେଖନ୍ତୁ । ଆପଣ ମଧ୍ୟ ପିଲାଲୋକ । ଆପଣ ଗୋଟେ ପେପର ଲେଖନ୍ତୁ ।"

ଅନ୍ୟଜଣକର ମନ୍ତବ୍ୟ – "ଆପଣଙ୍କ ଉତ୍ସାହକୁ ଆମେ ସ୍ୱାଗତ କରୁଛୁ, ଶେଖରବାବୁ । ପିଲାମାନଙ୍କ ପାଇଁ ଆପଣ ସତରେ କେତେ ଚିନ୍ତିତ ଓ ବ୍ୟାକୁଳ । ଆପଣଙ୍କ ପୂର୍ବରୁ ଯେଉଁ ଅଧ୍ୟାପକ ଥିଲେ, ତାଙ୍କ ମନୋଭାବ ଥିଲା ବିପରୀତ । ସେ ନିଜ ପାଇଁ ପଢୁଥିଲେ । ପିଲାମାନେ ତାଙ୍କ ପାଖକୁ ଗଲେ ଚିଡୁଥିଲେ । ବେଳେବେଳେ ଖିଆଲ୍ ନାହିଁ ବୋଲି କ୍ଲାସ୍‌କୁ ଆସୁ ନ ଥିଲେ । ଅବଶ୍ୟ ଆଲାଏଡ୍ ସର୍ଭିସ୍ ପାଇଲେ । କଷ୍ଟମ୍‌ସ୍ ବିଭାଗରେ ଯୋଗେ ଦେଲେ । ଆମେ ଆରେଞ୍ଜ କରିଥିଲୁ ଗୋଟେ ଫେୟାରୱେଲ୍ ମିଟିଙ୍ଗ୍ । ଆସିବେ ବୋଲି କହି ଆସିଲେ ନାହିଁ । ସେ ମଧ୍ୟ ରହୁଥିଲେ ଆପଣଙ୍କର ବାଚେଲର୍ ହଷ୍ଟେଲ୍‌ରେ ।"

ଏତେ କଥା କାହିଁକି କୁହାଗଲା, ତାହା ଶେଖର ବୁଝିପାରିଲା ନାହିଁ । ସମ୍ଭବତଃ ତାକୁ ଜଣେଇ ଦିଆଗଲା ଯେ ସେ ନିଜ ଭବିଷ୍ୟତ ଗଢ଼ିବା ପାଇଁ ଚିନ୍ତିତ ହେବା ଉଚିତ । ଏସବୁ ଝାମେଲା ଭିତରେ ପଶି ସେ ଏକାଗ୍ରତା ଓ ସମୟ ହରଉଚି କାହିଁକି ? ଅନ୍ୟମାନଙ୍କୁ ଅଡୁଆ ଭିତରକୁ ଟାଣିବା ପାଇଁ ଚେଷ୍ଟା କରୁଚି କାହିଁକି ? କଲେଜ ଚାଲିଚି ତା' ବାଟରେ । ପିଲେ ପରୀକ୍ଷା ଦେବେ । ପାସ୍ କରିବେ, ଫେଲ୍ ହେବେ । ଜଣେ ଅଧେ ଜୀବନରେ କିଛି କରିବେ । ଅନ୍ୟମାନେ ହତାଶ ହୋଇ ଦୀର୍ଘଶ୍ୱାସର ଜୀବନ ବିତେଇବେ । ଏଇ ହେଉଚି ପ୍ୟାଟର୍ଣ୍ଣ । ଶେଖର ଏହାକୁ ବଦଳେଇବା ପାଇଁ ମିଛଟାରେ ଝଡ଼େଇ ହେବା ଦରକାର କ'ଣ ?

– "ଭଲ ହୁଅନ୍ତା, ଯଦି ୟୁନିଭର୍ସିଟିର ପ୍ରଫେସର ଏହାକୁ ଉଦ୍‌ଘାଟନ କରନ୍ତେ ।" ଶେଖରର ଅନ୍ୟ ଏକ ପ୍ରସ୍ତାବ ।

ତୀବ୍ର ବିରୋଧ କଲା ଜଣେ – "ମୋଟେ ନୁହଁ । ସେଇଟା ଗୋଟେ ଶୈତାନ । ତାକୁ ଚବିଶ୍ ଘଣ୍ଟା ତେଲ ମାଲିସ୍ ନ କରୁଥିବା, ତା' ବୋଲହାକ ନ ମାନୁଥିବା ପିଲାମାନଙ୍କୁ ସେ ଭାରି ହଇରାଣ କରେ । ସେ ଦେଖୁଥିବା ପେପରରେ ମୁଁ ବହୁତ କମ୍ ନମ୍ବର ପାଇଥିଲି ।"

ତା'ଛଡ଼ା କୁହାଗଲା ଯେ, ପ୍ରଫେସରଙ୍କର ଯିବାଆସିବା ବାବଦ ଟାକ୍‌ସି ଭଡ଼ା, ଖିଆପିଆ ପାଇଁ ଯଥେଷ୍ଟ ଟଙ୍କା ଖର୍ଚ୍ଚ ହେବ । ପିଲାମାନଙ୍କ ଉପରେ ଚାନ୍ଦା ବୋଝଟେ ଲଦିଦେବା ଠିକ୍ ହେବ ନାହିଁ । ତେଣୁ ପ୍ରସ୍ତାବ ଗ୍ରହଣ କରାଗଲା ଯେ ଶେଖର ଯଦି ଆବଶ୍ୟକ ସଂଖ୍ୟକ ପେପର ସଂଗ୍ରହ କରିପାରେ, ତେବେ ସେମିନାର ସପ୍ତାହକୁ ପ୍ରିନ୍‌ସପାଲ ଉଦ୍‌ଘାଟନ କରିବେ ଅନ୍ତତଃ ଚା' ଓ ବିସ୍କୁଟ୍ ସହିତ ।

ସେ'ଦିନ ହଷ୍ଟେଲକୁ ଫେରି ଶେଖର ଦେଖିଲା, ପୂର୍ବ ନିର୍ଦ୍ଧାରିତ ମତେ ରଂଜନ ଯୋଗାଡ଼ କରିଚି ଟେବୁଲ, ଚେୟାର ଓ ଟେବୁଲ୍ ଲ୍ୟାମ୍ପ । ହଷ୍ଟେଲ କେବଳ ଖଟ ଯୋଗାଇଥାଏ । ରଂଜନ ସ୍ୱୀକାର କରିଥିଲା ଯେ ଟେବୁଲ-ଚେୟାର ନ

ହେଲେ ସେ ଠିକ୍‌ଭାବରେ ପଢ଼ାପଢ଼ି କରିପାରିବ ନାହିଁ । ତାହାର ଏଇସବୁ ପ୍ରସ୍ତୁତି ଦେଖି, ଶେଖର ଚିନ୍ତାଶୀଳ ହୋଇପଡ଼ିଲା କିଛି ସମୟ ପାଇଁ । ବହି, ଖାତା ଇତ୍ୟାଦିର ବିଶାଳ ପ୍ୟାକେଟ୍ ଏପର୍ଯ୍ୟନ୍ତ ସେ ଖୋଲି ନାଇଁ । କୌଣସି ଯୋଜନା କରିପାରି ନାଇଁ ନିଜ ଭବିଷ୍ୟତ ପାଇଁ । ଗୋଟେ ଉତ୍ସାହରେ ସେ ମାତିଚି ସେମିନାର ସକାଶେ । ସେ ବସିଲା ଖଟ ଉପରେ । ଅନୁଭବ କଲା ଯେ, ତାକୁ କର୍ମଚଞ୍ଚଳ ଓ କ୍ଷିପ୍ର କରିଥିବା ସୁଅ ହଠାତ୍ ଶୁଖି ଯାଉଚି । ତାକୁ ଚେତେଇଦେଉଚି ଯେ, ସେ ନିଜ ଲକ୍ଷ୍ୟରୁ ବିଚ୍ୟୁତ ହୋଇ ପଡୁଚି । ଏ କଲେଜରେ ପାଇଥିବା ଏଇ ଚାକିରି ତାକୁ ଅଯଥାରେ ଆତ୍ମସନ୍ତୋଷ ଓ ପରିପୂର୍ଣ୍ଣଭାବଟେ ଯୋଗେଇ ଦେଇଚି । ସେ ଇଚ୍ଛାକଲେ ଏଇ ଚାକିରିକୁ ସର୍ବଶେଷ ଅବଲମ୍ବନ ବୋଲି ଗ୍ରହଣ କରିପାରେ; ମାତ୍ର ଆହୁରି ବଡ଼ ଓ ମର୍ଯ୍ୟାଦାବନ୍ତ ଚାକିରି ସେ ପାଇପାରନ୍ତା, ନିଜ ପ୍ରତି ଯଦି ସତର୍କ ଓ ସଚେତନ ହୁଅନ୍ତା ।

କାହିଁକି କେଜାଣି ଗୋଟେ ବିଷାଦ ଓ ବ୍ୟାକୁଳ ଭାବ ଆଛନ୍ନ କରିଦେଲା ତା' ମନକୁ । ସେ ନିଶ୍ଚିତ ହୋଇଗଲା ଯେ, ଅକାରଣରେ ସେ ଶସ୍ତା ହୋଇ ପଡୁଚି ଏବଂ ଏକ ପ୍ରତିଶ୍ରୁତିପୂର୍ଣ୍ଣ ଭବିଷ୍ୟତ ଗଢ଼ିବା ପାଇଁ ଆଦୌ ଯତ୍ନବାନ ହୋଇ ପାରୁ ନାଇଁ ।

କିନ୍ତୁ ପରଦିନ ଦ୍ୱିତୀୟ ବର୍ଷ ଅନର୍ସ କ୍ଲାସ୍‌ରେ ସେ ନିଜକୁ ନିୟନ୍ତ୍ରଣ କରିପାରିଲା ନାଇଁ । ସେମିନାର ପ୍ରସଙ୍ଗ ଉଠାଇଲା ଏବଂ କେଉଁମାନେ ପେପର ଲେଖିବା ପାଇଁ ପ୍ରସ୍ତୁତ ବୋଲି ପଚାରିଲା । ମୁହଁ ପୋତିଲେ ପ୍ରାୟ ସମସ୍ତେ । ଜଣକୁ ଛାଡ଼ି । କେବଳ ଗୋଟିଏ ଝିଅ ପିଲା ହିଁ ହାତ ଟେକି ପେପର ଲେଖିବା ଆହ୍ୱାନକୁ ଗ୍ରହଣ କରିଥିଲା । ଶେଖର ଉତ୍ସାହିତ କଲା ସମସ୍ତଙ୍କୁ । ପ୍ରତିଶ୍ରୁତି ଦେଲା ଯେ ସେ ସମସ୍ତଙ୍କୁ ସାହାଯ୍ୟ କରିବ ଏ ବାବଦରେ । ପୁରୁଣା ପ୍ରଶ୍ନ ସଂଗ୍ରହ କରି, ସେ ଆଠ-ଦଶଟି ବିଷୟ ନିର୍ବାଚନ କରିଥିଲା । ପଢ଼ିଲା ସେସବୁ । ପଚାରିଲା, କିଏ କେଉଁ ବିଷୟରେ ଲେଖିବାକୁ ଚାହୁଁଚନ୍ତି । କେହି ଆଗଭର ହେଲେ ନାଇଁ, ସେଇ ଝିଅଟି ବ୍ୟତୀତ । ବହୁକଷ୍ଟରେ ତିନି-ଚାରିଜଣ ରାଜି ହେଲେ ଚେଷ୍ଟା କରିବା ପାଇଁ । ପେପର ଲେଖିବେ ବୋଲି କୌଣସି ଗ୍ୟାରେଣ୍ଟି ନ ଥିଲା ତାଙ୍କଠାରେ ।

ଶେଷ ବର୍ଷ କ୍ଲାସ୍‌ରେ ସେଇ ଅବସ୍ଥା । ନୈରାଶ୍ୟଜନକ ପରିସ୍ଥିତି । ଜଣେ ପିଲା କହିଲା– "ସାର୍, କ'ଣ ହେବ, ଏ ପେପର ଲେଖି ? ମୁଁ ସାର୍ ଅନ୍ୟମାନଙ୍କ କଥା କହିପାରୁନି; ମୁଁ କିନ୍ତୁ ଜାଣେ ଭଲକରି ଯେ, ମୁଁ ଜଣେ ଭଲ ଛାତ୍ର ନୁହେଁ । ୟୁନିଭର୍ସିଟିରେ ଚମକେଇଦେବା ଭଳି ରେଜଲ୍‌ଟ ଦେଖାଇବା

ମୋ ଭାଗ୍ୟରେ ନାହିଁ । ଯଦି ସାର୍ ଆମକୁ ସାହାଯ୍ୟ କରିବାକୁ ଚାହାନ୍ତି, ତେବେ ନୋଟ୍ ଦିଅନ୍ତୁ । ଆମେ ଘୋଷା ଘୋଷି କରି ପାସ୍ କରିଯାଉ । ତା'ପରେ ଦେଖାଯିବ, କ'ଣ ହେଉଚି ।''

ପିଲାମାନଙ୍କ ମଧ୍ୟରେ ଏମିତି ଏକ ନୈରାଶ୍ୟ ଓ ପରାଜୟ ମନୋଭାବ ରହିଚି କାହିଁକି ? ପେପରଟେ ଲେଖିବା ଭଳି ଗୋଟେ ନଗଣ୍ୟ ଚାଲେଞ୍ଜକୁ ମଧ୍ୟ ଗ୍ରହଣ କରିବା ପାଇଁ ନାରାଜ ସେମାନେ । କୌଣସିମତେ କାମ ଚଳିଯାଉ, ପାସ୍ କରିଗଲେ ବଡ଼ କଥା, ଦେଖାଯିବ ଭବିଷ୍ୟତରେ କ'ଣ ହେଉଚି ବୋଲି ଭାବୁଥିବା ପିଲାମାନଙ୍କଠାରୁ ବାସ୍ତବିକ ବେଶି କିଛି ଆଶା କରିବା ଅନୁଚିତ । ଶେଖର ଏଇ କଥା ଭାବିବା ବେଳେ ରଂଜନ ପଢୁଥିଲା ଗୋଟେ ପତ୍ରିକା ମନଧ୍ୟାନ ଦେଇ ଏବଂ ବଡ଼ ନୋଟ୍ ବୁକ୍‌ର ପୃଷ୍ଠା ଓଲଟପାଲଟ କରି କିଛି ଲେଖୁଥିଲା ।

ଆସନ୍ତାକାଲିଠାରୁ । ହଁ, ଆସନ୍ତାକାଲିଠାରୁ ନିଜ ପାଇଁ ପଢ଼ାପଢ଼ି । କଂପିଟେଟିଭ ପରୀକ୍ଷା ପାଇଁ ସାଧନା । କଠୋର ସାଧନା । ସେମିନାର କିମ୍ବା କଲେଜ ପାଇଁ ସେ ଆପାତତଃ ଆତ୍ମହତ୍ୟା କରିବ କାହିଁକି ? ନିଜ ପ୍ରତି ଏଇ ଅବହେଳା ଆତ୍ମହତ୍ୟା ନୁହେଁ ତ ଆଉ କ'ଣ ? ତା'ର ଆହୁରି ଗୋଟେ ଯୋଜନା ଥିଲା ଯେ କଲେଜର କେତେକ ଇଚ୍ଛୁକ ପିଲାଙ୍କୁ ସେ ତାଲିମ୍ ଦେବ, ତର୍କ ପ୍ରତିଯୋଗିତାରେ ଭାଗ ନେବା ପାଇଁ । ବାସ୍ତବିକ ଏ ବିଷୟରେ ସେ ପ୍ରାରମ୍ଭିକ ଆଲୋଚନା କରିଥିଲା ପ୍ରିନ୍‌ସପାଲଙ୍କ ସହିତ । ସେ ଉତ୍ସାହିତ କରିଥିଲେ ଶେଖରକୁ ଏଥିପାଇଁ । ଫାଷ୍ଟ ଇୟର ଆଡ୍‌ମିସନ୍ ଶେଷ ହେବା ପରେ ସେ ନୋଟିସ୍ ଦେବେ ଏବଂ ଇଚ୍ଛୁକ ପିଲାମାନେ ଶେଖର ସହିତ ଯୋଗାଯୋଗ କରିବେ ବୋଲି ସେ ପ୍ରସ୍ତାବ ଦେଇଥିଲେ । ନା, ଏଥିରେ ଆଉ ଆଗେଇବା ଠିକ୍ ହେବ ନାଇଁ । ତା' ରୁମ୍‌ରେ ରଂଜନ ଅଛି, ତା'ର ଦାୟିତ୍ୱବୋଧ ସଂପର୍କରେ ତାକୁ ସଚେତନ କରିବା ପାଇଁ । ଶେଖର ଖୋଲା ହୋଇ ନ ଥିବା ବହି-ଖାତା ଆଡୁ ଦୃଷ୍ଟି ଫେରାଇଲା ଜଣେ ଅପରାଧୀର ମନ ନେଇ । ନିଜ ସୌଭାଗ୍ୟକୁ ଏମିତି ବନ୍ଧାବନ୍ଧି କରି ବନ୍ଦୀ କରି ରଖିବା ବିଜ୍ଞତା ନୁହେଁ ।

ଶେଖର ଅଜାଣତରେ ବିଭାଗୀୟ ସହକର୍ମୀମାନଙ୍କର ଶିକାର ହୋଇ ପଡ଼ିଥିଲା । ମାତ୍ର ଅଳ୍ପଦିନ ମଧ୍ୟରେ ନିଜକୁ ଜଣେ ଦକ୍ଷ ଅଧ୍ୟାପକ ବୋଲି ପ୍ରମାଣ କରିପାରିଥିଲା ସେ । ଛାତ୍ର ଜୀବନରେ ଡିବେଟ କଂପିଟିସନ୍‌ରେ ସେ ହାସଲ କରିଥିବା ସାଫଲ୍ୟ ତାକୁ ସାହାଯ୍ୟ କରିଥିଲା ଶ୍ରେଣୀଗୃହରେ ମୁଗ୍ଧ କରିଦେବା ଭଳି ପଢ଼େଇବା ପାଇଁ । କଥାଟା ଏତିକିରେ ସୀମାବଦ୍ଧ ହୋଇ ରହିଥିଲେ ଅସୁବିଧା ହୋଇ ନ ଥାନ୍ତା ଶେଖର ପାଇଁ ।

ମାତ୍ର କ୍ଲାସ୍ ନେବା ପାଇଁ ତା'ର ଆଗ୍ରହ ଓ ଆସକ୍ତିର ଭଲ ଫାଇଦା ଉଠାଇଲେ ତା' ସହକର୍ମୀମାନେ । ଡାକ୍ତରଖାନାରେ କାମ ଅଛି, ଜରୁରୀ କାମ ପାଇଁ ଘରକୁ ଯାଉଚି ଇତ୍ୟାଦି କହି ସେମାନେ ନିଜର କ୍ଲାସ୍ ଦେଉଥିଲେ ଆଗ୍ରହୀ ଶେଖରକୁ । ବିଶେଷତଃ ଅନର୍ସ କ୍ଲାସ୍ ନେଇ ନିଜର ଜ୍ଞାନ ପ୍ରଦର୍ଶନ ଓ ପିଲାଙ୍କୁ ସାହାଯ୍ୟ କରିବା ମନୋଭାବ ଯୋଗୁଁ, ସେ ନିଜ କ୍ଲାସ୍ ସଂଖ୍ୟାରୁ ଦୁଇଗୁଣ କ୍ଲାସ୍ ନେଉଥିଲା । ପ୍ରତ୍ୟେକ କ୍ଲାସକୁ ଯିବା ପୂର୍ବରୁ ମାନସିକ ପ୍ରସ୍ତୁତ କରୁଥିଲା ଓ କଲେଜ ଶେଷ ବେଳକୁ ସଂପୂର୍ଣ୍ଣ ଭାବେ କ୍ଳାନ୍ତ ହୋଇ ପଡୁଥିଲା । ସେ ଜାଣିପାରୁ ନ ଥିଲା ଯେ ତା'ର ଏଇ ଢଙ୍ଗରୁ ଉପକାର ପାଉଥିବା ଲୋକମାନେ ହିଁ ତାକୁ ପରିହାସ କରୁଥିଲେ । ବିଚରା ନିର୍ବୋଧଟିଏ !

ଜଣେ ସହକର୍ମୀ ପ୍ରକାଶ କରିଥିଲା ପ୍ରଚୁର ଆନନ୍ଦର ସହିତ– "ଭାରି ଦେଖେଇ ହେଉଚି ! କ'ଣନା, ଉତ୍ସର୍ଗୀକୃତ ଅଧ୍ୟାପକ ଜଣେ । ଲାଭ କିନ୍ତୁ ଆମର । ମୋର ଏଇ କ୍ଲାସ୍‌ଟା ଟିକିଏ ନେଇପାରିବେ କି ବୋଲି କହିବା ମାତ୍ରେ ସେ ସତେଯେପରି ଆମ ପ୍ରତି କୃତଜ୍ଞ ହୋଇପଡୁଚି । ତା' ପାରଦର୍ଶିତାକୁ ଆମେ ସମ୍ମାନ ଜଣଉଚୁ ବୋଲି ସେ ଭାବୁଚି । ଚାଲୁ ଏମିତି, ଯେତେଦିନ ପର୍ଯ୍ୟନ୍ତ ତା' ରଙ୍ଗ ନ ଛାଡ଼ିଚି ।"

ଲାଇବ୍ରେରୀରେ ଦ୍ୱିତୀୟ ବର୍ଷ ଅନର୍ସ ଛାତ୍ରୀ ସହିତ ଦେଖା । କହିଲା– "ସାର୍, କ୍ଲାସ୍ ପରେ ଆପଣଙ୍କୁ ଖୋଜିଲି । ମୋର ଜଣେ ସାଙ୍ଗ କହିଲା ଯେ ଆପଣ ସାଇକେଲ୍‌ରେ କୁଆଡ଼େ ପଳେଇଲେଣି ।"

–"ଯିବି କୁଆଡ଼େ ?" କହିଲା ଶେଖର– "ଆମ ହଷ୍ଟେଲର ପୂଝାରୀ ପିଲାଟା ଆଜି ପଳେଇଚି ଗାଁକୁ । ମା'ର ଦେହ ଖରାପ ଖବର ପାଇ । ସାଇକେଲ ନେଇ ଯାଇଥିଲି ଖାଇବା ପାଇଁ ।"

ଟିକିଏ ଚିନ୍ତିତ ଦେଖାଗଲା ଝିଅଟି । ପଚାରିଲା– "ପାଖରେ କ'ଣ କେଉଁଠି ହୋଟେଲ ଅଛି ଯେ ଆପଣ ଖିଆପିଆ କଲେ ?"

–"କି କଥା ?" ଶେଖର କହିଲା– "ମୁଁ ଖାଇବା ପାଇଁ ଯାଇଥିଲି । ଉପାସ ଫେରିଲି ବୋଲି ତୁମେ ଭାବୁଚ ନା କ'ଣ ?"

ହସିଲା ସେ । କହିଲା– "ସେମିନାର ପାଇଁ ପେପରଟେ ଲେଖିଥିଲି । ଟିକିଏ ଦେଖିଦେବେ ସୁବିଧା ହେଲେ ?"

–"ସିଓର ! କାହିଁ, ଦେଖେ !" ଅତ୍ୟନ୍ତ ଉତ୍ସାହୀ ହୋଇପଡ଼ିଲା ଶେଖର । ପୃଷ୍ଠା ଉପରେ ଆଖି ବୁଲାଇ କହିଲା– "ଏ ହସ୍ତାକ୍ଷର ତୁମର ?"

–"ହଁ ।"

—“ବିଉଟିଫୁଲ !” ମନ୍ତବ୍ୟ ଦେଲା ଶେଖର । କହିଲା— “ତୁମେ ନାଁ ଲେଖିବା ପାଇଁ ଭୁଲିଯାଇଚ ।” ପକେଟରୁ କଲମ ବାହାର କରି କହିଲା— “ସରି, ତୁମ ନାଁଟା ଭୁଲିଯାଇଚି ।”

—“ମନିକା ରଥ ।”

—“ମୁଁ ଲେଖି ଦେଉଚି । ଯଦିଓ ମୋ ହସ୍ତାକ୍ଷର ତୁମ ଭଳି ଏତେ ସୁନ୍ଦର ନୁହେଁ ।”

—“ମୋ ଭଳି ସୁନ୍ଦର ନୁହେଁ, ନା ମୋ ହସ୍ତାକ୍ଷର ଭଳି ସୁନ୍ଦର ନୁହେଁ ?” ମନିକା ପଚାରିଲା ଏବଂ ଗୋଟେ ତଡ଼ିତ୍ ସୃଷ୍ଟି କରିଦେଲା ଶେଖରର ଅଭ୍ୟନ୍ତରରେ ।

ତା’ କଲମ ଅଟକିଗଲା ଏଭଳି ଅପ୍ରତ୍ୟାଶିତ ଓ ଦୁଃସାହସିକ ପ୍ରଶ୍ନ ଶୁଣି । ଭାବିଲା, ତା’ କଲମର ସ୍ୟାହି ଫ୍ରିଜ୍ କରି ଯାଇଚି, ଯେମିତିକି ତା’ ଭାବନା ଅଟକିଯାଇଚି ଏଇ ପ୍ରଶ୍ନ ପାଖରେ । କିଛି କହିବ ନାଇଁ ବୋଲି ଭାବିଥିଲା; କିନ୍ତୁ କହି ହୋଇଗଲା— “ତୁମେ ଯେମିତି ଭାବିବ; ଯାହା ଭାବିଲେ ବି ମୋ କଥା ଯଥାର୍ଥ ।”

—“ସାର, ମୁଁ ka ନୁହେଁ; ca ଲେଖେ, ମୋ ନାମ ପାଇଁ ।” ମନିକା ସେତେବେଳକୁ ଝୁଙ୍କି ପଡ଼ିଥିଲା ଶେଖର କଲମ ପାଖରେ । ଏତେ ପାଖରେ ସେ ଥିଲା ଯେ, ତା’ର କେତୋଟି ସାଂପୁକରା କେଶ ସ୍ପର୍ଶ କଲା ଶେଖରର ଗାଲକୁ ।

ଲାଇବ୍ରେରୀର ଗତିଶୀଳ ପଙ୍ଖା ତଳେ ସେ ବସିଥିଲା ବିଉଟିଫୁଲ୍ ହସ୍ତାକ୍ଷର ଧରି । ସେ ତାହା ମଧ୍ୟ ଠିକ୍ ଭାବରେ ଦେଖି ପାରୁ ନ ଥିଲା । ଦେଖୁଥିଲା ଗୋଟେ ବିଉଟିଫୁଲ୍ ମୁହଁକୁ । ମୁହଁ ଓ ହସ୍ତାକ୍ଷର ତାକୁ ବିଭୋର ଓ ତନ୍ଦ୍ରାଚ୍ଛନ୍ନ କରି ରଖିଲେ ଦୀର୍ଘ ସମୟ ପାଇଁ । ଲେଖାଯାଇଥିବା ପାଠ ପାଖରେ ପହଞ୍ଚି ପାରୁ ନ ଥିଲା ସେ ଏ ଦୁଇଟିର ମୁଖଶାଳା ଟପି । ସେ ବାସ୍ତବିକ ଆଗ୍ରହୀ ନ ଥିଲା ସେଥିପାଇଁ । ବରଂ ସେ ଭାବୁଥିଲା, ଏଇ ମୁହଁ ଓ ହସ୍ତାକ୍ଷର ପାଖରେ ତାହାର ଦୃଷ୍ଟି ଅଟକି ରହନ୍ତା ଏମିତି । ଆଉ କିଛି ଦେଖିବା ଦରକାର ହୁଅନ୍ତା ନାଇଁ । ଆଉ କିଛି ଦେଖିବାରେ କୌଣସି ଅର୍ଥ ନାଇଁ । ସେ ଆଶା କରି ନ ଥିଲା, ଗୋଟିଏ-ଦୁଇଟି ବାକ୍ୟରେ ମଧ୍ୟ ଏତେ କୁହୁକ ଓ ଅଲୌକିକ ଶକ୍ତି ଥାଏ ।

ଶେଖର ଲେଖାଟିକୁ ଏମିତି ଧରିଲା, ଯେମିତିକି ପଙ୍ଖା, ଟିଉବ୍ ଲାଇଟ୍, ବହି ଶେଲ୍‌ଫ ଏବଂ ଟେବୁଲ-ଚେୟାର ତାହାକୁ ଦେଖି ନ ପାରନ୍ତି । ସେଇ ହସ୍ତାକ୍ଷରର ପାଠକ ସେ କେବଳ ନିଜେ ହେବା ଦରକାର । ଏଇ ହସ୍ତାକ୍ଷର

ଯେଉଁ କେତୋଟି କାଗଜ ପୃଷ୍ଠାକୁ ମହିମାମୟ କରିପାରିଚି, ସେ ପୃଷ୍ଠାକୁ ଦୁଇ ହାତରେ ଯତ୍ନର ସହିତ ଧରିବାର ଅଧିକାର କେବଳ ତା'ର । ତା' ବ୍ୟତୀତ ଅନ୍ୟ କେହି ଏ କାଗଜର ବିଭବ ବୁଝନ୍ତେ ନାଇଁ; ଏ ହସ୍ତାକ୍ଷରର ମର୍ଯ୍ୟାଦା ଜାଣନ୍ତେ ନାଇଁ ।

ଏଇଟା ଅନୁମାନ ନ ଥିଲା । ଏହାକୁ ଆସକ୍ତି ବୋଲି କୁହାଯାଇପାରେ । ମନ ଖୋଜୁଥିବା ଇଚ୍ଛାର ପ୍ରାପ୍ତି ବୋଲି କୁହାଯାଇପାରେ । ପରଦିନ ଲାଇବ୍ରେରୀରେ, ଠିକ୍ ସେଇ ସମୟରେ ମନିକା । ଶେଖର ତାକୁ ହିଁ ଅପେକ୍ଷା କରୁଥିଲା ଶହେ ବର୍ଷ ଧରି ! ଦୁହେଁ ପରସ୍ପରକୁ ଦେଖିଲେ, ମୁଗ୍ଧ ହୋଇ ।

—"କ'ଣ ? ଆଜି ବି ମୋତେ ଚାରିଆଡ଼େ ଖୋଜିବା ପରେ ଏଠାକୁ ଚାଲିଆସିଲ । ନୁହେଁ ?" ଶେଖର ପଚାରିଲା । ବୁଝିପାରିଲା ନାଇଁ ତାକୁ ଶୋଷ ଲାଗିଲା କାହିଁକି ସହସା ।

—"ଆଜି ମୁଁ କେଉଁଆଡ଼େ ଖୋଜି ନାଇଁ ।"କହିଲା ମନିକା । ଟିକିଏ ହସି ଯୋଗକଲା— "ମୋ ମନ କହୁଥିଲା, ଆପଣ ଏଇଠି ଥିବେ ।"

—"ତୁମ ପେପରଟା ପଢ଼ିଲି ।" ଶେଖର ପ୍ରସଙ୍ଗ ବଦଳାଇଲା ।

—"ଭାରି ବାଜେ ହୋଇଚି । ନା ?" ଅପ୍ରତିଭ ହେଲା ସେ ।

—"ଜମା ନୁହେଁ ।" ଶେଖରର ସ୍ୱର କଂପିଉଠିଲା ଟିକିଏ— "ଏହା ମଧ୍ୟ ବିଉଟିଫୁଲ ! ଏହା ସତରେ ତୁମେ ଲେଖିଚ ?"

—"ମୁଁ କାହିଁକି ସତ କହିବି ? ଆପଣ ତ ନିଜେ ମିଛ କହୁଚନ୍ତି !" ନିଜକୁ ଗମ୍ଭୀର କରି ମନିକା କହିଲା ।

—"ମିଛ ? ମୁଁ ମିଛ କହିଲି କେଉଁଠି ?"

—"ଏଇ, ଯେମିତି ମୋ ହସ୍ତାକ୍ଷର, ମୁଁ ନିଜେ, ମୋ ପେପର ! ସବୁ ଆପଣଙ୍କ ପାଇଁ ବିଉଟିଫୁଲ କେମିତି ହେଲା ?" ଅଭିଯୋଗମିଶା ଏଇ ପ୍ରଶ୍ନ ପରେ ମନିକା ଚାହିଁଲା ଶେଖରକୁ । ଦୁହେଁ ନିରବ ହୋଇଗଲେ କିଛି ସମୟ ପାଇଁ ।

—"ତୁମ ପେପରଟା କିନ୍ତୁ ଆଣି ନାଇଁ ।" ସ୍ୱୀକାର କଲା ଶେଖର— "କେବଳ ପଢ଼ି ଦେଇଚି । କେତୋଟି ପାରାଗ୍ରାଫ୍‌ର ପୁନର୍ଗଠନ କଲେ ଏହା ଆହୁରି ଉଚ୍ଚକୋଟୀ ହେବ । ଆଉ କେତେଟା ରେଫରେନ୍‌ସ, କୋଟେସନ୍ ଖଞ୍ଜିବାକୁ ପଡ଼ିବ ।"

—"ମୁଁ ଆଉ ଗୋଟେ ପେପର ଆଣିଥିଲି ।" ନିବେଦନର ସ୍ୱର ଏଥର— "ଠିକ୍ ପେପର ନୁହେଁ । ନୋଟ୍ ଗୋଟେ । ଦେଖି ଦେବେ ?"

—"ହ୍ୱାଏ ନଟ୍ ?" ଶେଖର ପେପରଟା ଗ୍ରହଣ କଲା ।

—"ଆଜି ଦେଖିଲେ ନାଇଁ ତ, ମୁଁ ମୋ ନାମ ଲେଖିଚି କି ନାଇଁ ?" ସେ ପଚାରିଲା ।

—"ଏଥର କିନ୍ତୁ ତୁମେ ଜାଣି ଜାଣି ଲେଖିନ ।"

—"ହଁ । ଆପଣ ଲେଖି ଦିଅନ୍ତୁ । ca ନ ଲେଖି ka ଲେଖନ୍ତୁ ।" ଅନୁରୋଧ କଲା ସେ ।

—"ତୁମେ ପରା— ।"

—"ମୁଁ ଆପଣଙ୍କ ପାଖରେ ka ଭାବରେ ପରିଚିତ ହେବାକୁ ଚାହେଁ ।" ଶେଖରର କଥା ନ ଶୁଣି କହିଲା ମନିକା ।

ଆଜି କିନ୍ତୁ ମନିକା ଝୁଙ୍କିପଡ଼ିଲା ନାଇଁ ଶେଖରର କଲମ ପାଖରେ । ସେ ଲେଖୁଥିବା ବେଳେ ପଚାରିଲା— "ଆଜି ସାର୍, କେଉଁଠି ଖାଇଲେ ? ହୋଟେଲରେ ?"

—"ହଁ । ପିଲାଟା ଆସି ନାଇଁ ଏ ଯାଏଁ ।" କହିଲା ଶେଖର । ପୁଣିଥରେ ସ୍ୱୀକାର କଲା— "ମୋ ହସ୍ତାକ୍ଷର— ।"

—"ଗୋଟେ କଥା କହିବି । ମାନିବେ ?" ମନିକା ବାସ୍ତବିକ ବ୍ୟାକୁଳ ହୋଇ ଚାହିଁଲା ଶେଖରକୁ । ଗୁରୁତ୍ୱପୂର୍ଣ୍ଣ କଥାଟେ କହିବାକୁ ଯାଉଚି ବୋଲି ସୂଚେଇ ଦେଲା ।

—"ତୁମେ ଆଗ କୁହ ।"

—"ସଞ୍ଜବେଳେ ଆସନ୍ତୁ ଆମ ଘର ଆଡ଼େ ।" ଅନୁରୋଧ କଲା ସେ— "ଆପଣ ନିଶ୍ଚୟ ଆସୁଚନ୍ତି ବୋଲି ମୁଁ ବାପାଙ୍କୁ କହିଚି । ଆମ ଘରେ କ'ଣ ଟିକେ ଖାଇନେବେ ।"

—"ସରି, ମନିକା ।" ବାଧ ହୋଇ ଅନୁରୋଧ ପ୍ରତ୍ୟାଖ୍ୟାନ କରୁଚି ବୋଲି ଦୁଃଖିତ ଥିଲା ଶେଖର— "ନା, ଯିବା ସମ୍ଭବ ନୁହେଁ ।"

ମନିକା କାରଣ ପଚାରିଲା ନାଇଁ । ଶେଖର ମଧ୍ୟ ପଚାରିଲା ନାଇଁ ମନିକା ରହେ କେଉଁଠି, ବାପା କ'ଣ କରନ୍ତି । ଆହତ ହେବା ସତ୍ତ୍ୱେ ମନିକା ସ୍ମିତ ହସିଲା । ନମସ୍କାର କଲା । ବିଦାୟ ନେଲା । ଶେଖର ଅନ୍ୟମନସ୍କ ଭାବରେ ଓଲଟାଉଥିଲା ପେପରର ପୃଷ୍ଠା । କେଉଁଠି କିଛି ବିଶୃଙ୍ଖଳା ସୃଷ୍ଟି ହୋଇଯାଇଚି । ଶୁଭୁଚି ଗୋଟେ କୋଳାହଳ । ପୁଣି ଶୁଭିଯାଉଚି କରୁଣ ମୂର୍ଚ୍ଛନା । ହରେଇଥିବା ଜନିତ କୋହ । ଆଘାତ ପାଇଥିବା ଆଗ୍ରହର କ୍ଷତ । ଶେଖରକୁ ଘୋଡ଼େଇ

ପକାଇଲା ବିଷାଦ । ପୃଥିବୀର ସମସ୍ତ ଫୁଲ ଏଇ ଯେପରି ଝଡ଼ିଯାଉଚି ଓ ବିବର୍ଣ୍ଣ ହୋଇଯାଉଚି । ସବୁଜିମା ଉପରେ ଲିପି ହୋଇ ଯାଉଚି ଧୂସର ରଙ୍ଗ । ଶେଷ ପୃଷ୍ଠା ପାଖରେ ଅଟକିଗଲା ଶେଖର । ତଳେ ଲେଖାଯାଇଚି ମନିକାର ଠିକଣା । କାରଖାନାର ଜଣେ ବରିଷ୍ଠ ଇଞ୍ଜିନିୟର ଥିବା ଶଶାଙ୍କ ରଥଙ୍କର ଘର ନମ୍ବର ସମେତ ଟେଲିଫୋନ ନମ୍ବର ମଧ୍ୟ ଲେଖାଥିଲା ।

ଶେଖର ଫେରିଲା ହଷ୍ଟେଲକୁ । ଜାଣିପାରିଲା ନାଇଁ ଏତେ ବ୍ୟାକୁଳତା, ନୈରାଶ୍ୟ ଓ ଦ୍ୱନ୍ଦ୍ୱ ତା' ଭିତରେ ସୃଷ୍ଟି ହେଲା କାହିଁକି ? ସେ ଜନ୍ମ ହେବା ପରଠାରୁ ସତେଯେପରି ପାଣି ପିଇ ନାଇଁ ଏବଂ ଜୀବନରେ କିଛି ହେଲେ ପାଇ ନାଇଁ । ତା' ହାତ ଛୋଟ ହୋଇଯାଉଚି । ଏହାଠାରୁ ବହୁ ଦୂରରେ ରହିଯାଉଚି ମନ ଖୋଜୁଥିବା ଜିନିଷ ।

ରଂଜନ ନାହିଁ । ସଂପୂର୍ଣ୍ଣଭାବେ ନିୟନ୍ତ୍ରିତ ସମୟ କଟାଉଥିବା ଏଇ ସାଙ୍ଗ ଜଣକ ସଂଧ୍ୟାରେ ଫେରିବ । ପଢ଼ିବ । ରାତ୍ରଭୋଜନ କରିବ । ପଢ଼ିବ । କ୍ଲାସ୍ ନେବ । ପଢ଼ିବ ଏବଂ ପଢ଼ିବ । ସେ ଥରେ-ଦୁଇଥର ଶେଖରକୁ ସତର୍କ କରି ସାରିଲାଣି ଯେ, ସମୟ ଗଡ଼ିଯାଉଚି । ଚୂଡ଼ାନ୍ତ ଏକାଗ୍ରତା ନ ଥିଲେ କଂପିଟେଟିଭ ପରୀକ୍ଷା ପାଇଁ ଫର୍ମ ପୂରଣ କରିବା ଓ ପରୀକ୍ଷା ହଲରେ ବସିବାର କୌଣସି ମାନେ ନାଇଁ । ଆତ୍ମପ୍ରତାରଣାରୁ କେହି କେବେ ସୁଖ ପାଇଲାଣି ? ସେ ଏମିତି ପ୍ରଶ୍ନଟେ ପଚାରିଲା ସମ୍ଭବତଃ ଶେଖରର ଜୀବନଶୈଳୀ ଅନୁଧ୍ୟାନ କରି ।

ଏ ସମୟରେ ନ ଥାନ୍ତି କେହି ହଷ୍ଟେଲରେ । ଏହାର ପବନରେ ଛାଡ଼ି ଯାଇଥାନ୍ତି ଖାଁ ଖାଁ ସ୍ୱରଟେ । କିଏ କୁଆଡ଼େ ଯାଏ, ସେସଂପର୍କରେ ଖୁବ୍ ବେଶି ଆଗ୍ରହୀ ନ ଥାନ୍ତି କେହି । ରହୁଥିବା ପ୍ରାୟ ସମସ୍ତେ ଏକଦା ମେଧାବୀ ଓ ଦାୟିତ୍ୱବାନ୍ ଛାତ୍ର ଥିଲେ । ଭବିଷ୍ୟତ ପାଇଁ ଖସଡ଼ା ତିଆରିବାରେ ବ୍ୟସ୍ତ ଥାନ୍ତି ।

ଖାଁ ଖାଁ ସ୍ୱର । ଶୋଷ । ତୁମୁଳ ଝଡ଼ ନିଜ ଭିତରେ । ଶେଖର ଇତସ୍ତତଃ ହେଲା ରୁମ୍‌ରେ । ଅକାରଣରେ ବୁଲିଲା ବାରନ୍ଦା ଉପରେ । ରୋଷେଇଘର ଦ୍ୱାରରେ ପଡ଼ିଥିବା ତାଲା ଟାଣିଲା ଅନ୍ୟମନସ୍କ ଭାବରେ । ଚେଷ୍ଟାକଲା ନିଜ ଭିତରର କୋଳାହଳକୁ ପ୍ରଶମିତ କରିବା ପାଇଁ । ସଂଯମୀ ହେବା ପାଇଁ । ଚୁପଚାପ୍ ବସିଲା ଖଟ ଉପରେ । ଗତକାଲି ଓ ଆଜିର ଲେଖା ଦୁଇଟିକୁ ଧରିଲା । ପଢ଼ିପାରିଲା ନାଇଁ କିଛି । ରଖିଦେଲା ବିଛଣା ତଳେ ।

ସଂଧ୍ୟା ଛ'ଟା ବେଳେ ଶେଖର ପିନ୍ଧିଲା ସବୁଠାରୁ ଭଲ ପେଣ୍ଟ-କମିଜ । ଚପଲରୁ ଧୂଳି ଝାଡ଼ିଲା । ମୁଣ୍ଡ କୁଣ୍ଡେଇଲା । କିଛି ଦିନ ତଳେ କିଣିଥିବା

ସାଇକେଲ ଚକର ହାଓ୍ୱା ପରୀକ୍ଷା କଲା । ରୁମ୍ ବନ୍ଦ କରି ଆସିଲା ରାସ୍ତା ଉପରକୁ ।

ଏହାର କିଛି ସମୟ ପରେ ଅଫିସର୍ସ କଲୋନୀ । ନିର୍ଦ୍ଦିଷ୍ଟ ଗେଟ୍ ଆଗରେ ସାଇକେଲ ଅଟକାଇ ସେ ଚାହିଁଲା ଘରଆଡ଼କୁ ପ୍ରଚଣ୍ଡ ହୃତ୍‌ସ୍ପନ୍ଦନ ଓ ତଣ୍ଟିର ମରୁଭୂମିକୁ ନେଇ । ପର୍ଟିକୋ ପାଖରେ ଠିଆ ହୋଇଥିଲା ମନିକା ।

—"ସାର୍ !" ବିହ୍ୱଳ ହୋଇଯାଇଥିବା ସ୍ୱର । ଏଇ ଯେପରି ଅହଲ୍ୟା ପଥରର ଆକାର ପରିହାର କରି ରକ୍ତ-ମାଂସ ଓ ଆବେଗର କଳେବର ହାସଲ କରି ପାରିଚି । ମରୁଭୂମିର ପ୍ରତ୍ୟେକ ଧୂଳିକଣା ପରିଣତ ହେଇଗଲା ବାସ୍ନାଭିଜା ପାଖୁଡ଼ାରେ । ପୂର୍ଣ୍ଣ ହୋଇଗଲା ସମସ୍ତ ଶୂନ୍ୟସ୍ଥାନ ।

ମାତ୍ର ଗୋଟିଏ ପଦକ୍ଷେପରେ ଗେଟ୍ ପାଖରେ ମନିକା । ଗେଟ୍ ଖୋଲିବା ବେଳେ— "ସାର୍, ଆପଣ ସତରେ ଆସିଲେ ?" ଏବଂ ଶେଖର ହାତରୁ ସାଇକେଲ ନେଇ— "ଆପଣ ଚାଲନ୍ତୁ ଭିତରକୁ ।" ପରେ ପରେ ପର୍ଟିକୋ ତଳେ ବିଶ୍ରାମ ନେଉଥିବା ସୌଖୀନ୍ କାର ପାଖରେ ମନିକା ରଖିଲା ସାଇକେଲ । ଅବିଶ୍ୱାସ ଓ ତୃପ୍ତିର ସହିତ ପଚାରିଲା— "ସାର୍, ଆପଣ ସତରେ ଆସିଚନ୍ତି ଆମ ଘରକୁ ?" ଆବେଗର ହସ ହସୁ ହସୁ ସେ ଯେପରି କାନ୍ଦି ପକାଇବ ।

ଡ୍ରଇଁ ରୁମ୍ । ସୌଖୀନ ଓ ରୁଚିସଂପନ୍ନ ଆସବାବରେ ସଜ୍ଜିତ । ଗାଢ଼ ନାଲି ରଙ୍ଗର ମସୃଣ କାର୍ପେଟ, କାନ୍ଥରେ ଖଞ୍ଜା ଯାଇଥିବା ଲାଇଟ୍ ବ୍ରାକେଟ୍, ଶୋଫା । ସଙ୍କୁଚିତ ହୋଇ ବସିଥିବାବେଳେ ସେ ଶୁଣିପାରିଲା ପାଖ ରୁମ୍‌ରୁ ଆସୁଥିବା ଅଗରବତିର ବାସ୍ନା ଓ ଆଳତିର ଘଣ୍ଟଧ୍ୱନି । ବୁଝେଇଲା ମନିକା— "ବାପା ଓ ମା' ଠାକୁର ପୂଜା କରୁଚନ୍ତି । ଖୁବ୍ ଅସୁବିଧା ନ ହେଲେ ଏଇ ସମୟରେ ଓ ସକାଳେ ଏକାଠି କରନ୍ତି ।"

ୟାପରେ— "ମୁଁ ବାପା-ମା'ଙ୍କୁ କହିଚି, ଆପଣ ଆସିବେ, ଯେକୌଣସି ସମୟରେ ।"

—"କିନ୍ତୁ ମୁଁ ଆସିବି ନାହିଁ ବୋଲି କହିଥିଲି ।" ଶେଖର ମନେପକେଇଦେଲା ।

—"ସାର୍, ମୋ ମନ କହୁଥିଲା, ଆପଣ ଆସିବେ ।" ମନିକା ଏତେବେଳଯାଏ ଥିଲା ପ୍ରଗଲ୍‌ଭ— "ମୁଁ ସେଇଥିପାଇଁ ବସିଥିଲି ପର୍ଟିକୋ ପାଖରେ । ଆପଣ ଆସିବେ । ମୁଁ ପ୍ରଥମେ ଦେଖିବି ! ଡାକିଆଣିବି ଘର ଭିତରକୁ । ଆପଣଙ୍କର ଏଇ ଆସିବା ମୋତେ ଧନ୍ୟ କରିଦେଲା, ସାର ! କେତେ ଦୟା ଆପଣଙ୍କର ମୋ ପ୍ରତି !"

ଅଳ୍ପ ଦିନର ପରିଚିତ ଇଏ ଜଣେ ଛାତ୍ରୀ, ନା ଆଉ କିଛି ? ଶେଖର ଭୁଲି ଯାଉଥିଲା ସମସ୍ତ ସଂଜ୍ଞା । ଏକ ଆବେଗ ଓ ଆତୁରତାର ଘୂର୍ଣ୍ଣିବାତ୍ୟା ଭିତରେ ସେ । ସେ ବିଛିନ୍ନ ହୋଇ ଯାଉଥିଲା ଅଧ୍ୟାପକର ପରିଚୟରୁ ମନିକା ପାଖରେ । ମନିକା ଆଉ ଛାତ୍ରୀ ହୋଇ ନ ଥିଲା । ପରିଣତ ହୋଇ ଯାଇଥିଲା ପ୍ରଲୋଭନରେ, ଅଭିଳାଷରେ, ପ୍ରେମିକାରେ । ଏକ ମନମତାଣିଆ, ଅପରାଜୟ ନିଶାରେ । ଏ ନିଶାକୁ ଅନ୍ତତଃ ବର୍ତ୍ତମାନ ସେ ପ୍ରତିରୋଧ କରିପାରିବ ନାଇଁ; କରିବା ପାଇଁ ଇଚ୍ଛା ମଧ ତା'ର ନାହିଁ, ଏହାକୁ ଆହୁରି ଘନିଷ୍ଠ ଭାବରେ ଉପଭୋଗ କରିବା ସକାଶେ । ଏହା ସଞ୍ଚରିଯାଉଚି ତା'ର ଶିରା-ପ୍ରଶିରାରେ, ରକ୍ତ କଣିକାରେ ଓ ହାଡ଼ର ମଜ୍ଜାରେ ।

ପାଖ ରୁମ୍‌ର ଦରଜା ଖୋଲିଲା । ଧୋତି ଓ ମଠା ଚଦର ପରିଧାନ ନେଇ ବାହାରିଥିବା ଭଦ୍ରବ୍ୟକ୍ତି ନିଶ୍ଚୟ ଇଂଞ୍ଜିନିୟର ଶଶାଙ୍କ ରଥ । ସ୍ପଷ୍ଟ ଜଣାପଡ଼ିଯାଉଥିଲା, ସେ ମନିକାର ବାପା ବୋଲି । ସ୍ମିତ ହସି ଶେଖରକୁ ବସିବାକୁ ଅନୁରୋଧ କଲେ । କହିଲେ– "ଦେଖନ୍ତୁ, ମନିକାର ଅକଲ । ଘରକୁ ଡାକି ଆଣିଲା । ଆପଣଙ୍କୁ ଏକୁଟିଆ ବସାଇ ପଳେଇଯାଇଚି କୁଆଡ଼େ । କପେ ଚା' ମଧ ମିଳି ନାଇଁ ଆପଣଙ୍କୁ ।"

କହିଲେ । ବାହାରିଗଲେ, ଠାକୁରପୂଜା ପୋଷାକ ବଦଳାଇବା ପାଇଁ । ପରେ ପରେ ଟ୍ରେରେ ଜଳଖିଆ, ଚା', ମନିକା ହାତରେ । ସାଙ୍ଗରେ ଶ୍ରୀମତୀ ରଥ । ସମ୍ଭବତଃ ମନିକାକୁ ଆହତ କରି ଏବଂ ଶ୍ରୀମତୀ ରଥଙ୍କୁ ନିରାଶ କରି ଶେଖର ପ୍ଲେଟ୍‌ରୁ ଉଠାଇ ଆଣିଲା ଗୋଟିଏ ମାତ୍ର ବିସ୍କୁଟ୍ । ତା' ପରେ ଚା' କପ୍ ।

ଶ୍ରୀଯୁକ୍ତ ରଥ ସେଠାରେ ପହଞ୍ଚିବା ବେଳେ କପ୍-ପ୍ଲେଟ୍ ଉଠେଇ ନେଉଥିଲା ମନିକା । ଏଥର ତାଙ୍କର ବକ୍ତବ୍ୟ– "ଆପଣ ଏ କଲେଜରେ ଅଳ୍ପଦିନ ହେଲା ଜଏନ୍ କରିଚନ୍ତି ବୋଲି ମନିକା କହୁଥିଲା । କହୁଥିଲା ଆପଣଙ୍କ କେରିଅର, ଅନ୍ୟ କୃତିତ୍ୱ ବିଷୟରେ । ଆପଣ ବଡ଼ ଚାକିରି ନିଶ୍ଚୟ ପାଇ ପଳେଇଯିବେ ବୋଲି ମୁଁ ମଧ ନିଶ୍ଚିତ ।"

ଟିକିଏ ନିରବତା ପରେ– "ମନିକା ଇଂଲିଶ୍ ମିଡ଼ିୟମ୍ ସ୍କୁଲର ପିଲା । ଦେହ ଖରାପ ଯୋଗୁଁ ଯୁକ୍ତ ଦୁଇ ବାର୍ଷିକ ପରୀକ୍ଷା ଦେଇ ପାରିଲା ନାଇଁ । ସପ୍ଲିମେଣ୍ଟାରୀରେ ପ୍ରଥମ ଶ୍ରେଣୀ ପାଇଲେ ମଧ ପାଖରେ ଥିବା ସରକାରୀ କଲେଜରେ ସିଟ୍ ମିଳିଲା ନାଇଁ ତାକୁ । ନାମ ଲେଖାଇଲା ଆପଣଙ୍କ କଲେଜରେ । ଆପଣଙ୍କ ବିଷୟରେ ଅନର୍ସ ନେବ ବୋଲି ଠିକ୍ କରିଥିଲା ଆଗରୁ । ଭାଗ୍ୟକୁ ଭାକାନ୍‌ସିଟିଏ ମିଳିଲା ବୋଲି ତାହା ପାଇଲା ।"

ପୁଣି ନିରବତା । କହିଲେ– "ମନିକା ନିଜେ କହେ, ଆପଣଙ୍କ ବିଭାଗର ଅନ୍ୟ ତିନିଜଣ ସାର୍ ନିତାନ୍ତ ଦୁର୍ବଳ । ସେମାନେ ଭୁଲ୍ ଇଂରାଜୀ କହନ୍ତି, ବୋର୍ କରନ୍ତି କ୍ଲାସ୍‌ରେ । ମନିକା ଉଚ୍ଚାଭିଳାଷୀ । ସେ ମଧ୍ୟ କଂପିଟେଟିଭ୍ ପରୀକ୍ଷାରେ ବସିବ ବୋଲି କହୁଚି ।"

ୟାପରେ ସେ ଆଉ କ'ଣ କହିବେ, ଠିକ୍ କରିପାରିଲେ ନାହିଁ । ଦ୍ୱିଧାଗ୍ରସ୍ତ ହୋଇ ଏଣେତେଣେ ଚାହିଁଲେ । ତାଙ୍କୁ ସାହାଯ୍ୟ କଲେ ଶ୍ରୀମତୀ ରଥ– "ସମୟ-ସୁବିଧା ଦେଖି ଆପଣ ମନିକାକୁ ସାହାଯ୍ୟ କରିପାରିବେବ ? ଆମେ କୃତଜ୍ଞ ରହିବୁ ଆପଣଙ୍କ ପାଖରେ । ଆପଣଙ୍କ ଠାରୁ ବେଶି ଦକ୍ଷ ଅଧ୍ୟାପକ ଜଣେ ଆମେ ଜମା କେଉଁଠି ହେଲେ ପାଇବୁ ନାହିଁ ।"

ଶେଖର ପ୍ରଥମେ ନିଜ ଆଡ଼େ, ପରେ ଚାରିଆଡ଼େ ଚାହିଁଲା । ତା'ର ଆଶଙ୍କା ହେଲା ଯେ, ନିଜ ଭିତରେ ଥିବା ତା'ର ଇଚ୍ଛା ଓ କାମନା ସତେଯେପରି ପ୍ରକାଶିତ ହୋଇଯାଉଚି ଏବଂ ରଥ ଦମ୍ପତି ତାହାକୁ ପଢ଼ିବାରେ ସକ୍ଷମ ହେଉଚନ୍ତି ।

–"ଆପଣ ଦେଖିବେ, ମନିକା ଖୁବ୍ ଇଣ୍ଟେଲିଜେଣ୍ଟ ।" ମନ୍ତବ୍ୟ ବାଢ଼ିଲେ ଇଂଜିନିୟର– "ପରୀକ୍ଷାରେ ଶତକଡ଼ା ସତୁରିରୁ ତଳକୁ ଖସି ନାହିଁ ସେ । ତା' ଇଂରାଜୀ ଉଚ୍ଚ ଷ୍ଟାଣ୍ଡାର୍ଡର ବୋଲି ମୋର ଧାରଣା । ଆପଣଙ୍କୁ ବହୁତ ବେଶି ପରିଶ୍ରମ କରିବାକୁ ହେବ ନାହିଁ ।"

–"ସେ ମୋତେ ଦୁଇଟି ପେପର ଦେଇଚି ।" କହିଲା ଶେଖର– "ସେଇଥିରୁ ମୁଁ ଜାଣିଚି, ତା' ଷ୍ଟାଣ୍ଡାର୍ଡ କେତେ ଭଲ । ଠିକ୍ ଅଛି, ମୁଁ ସପ୍ତାହରେ ଥରେ ଅଧେ ଆସିବି ।"

ରଥ ଦଂପତ୍ତି ହତାଶ ହୋଇ ପରସ୍ପରକୁ ଚାହିଁବା ବେଳେ ଛୋଟ ପିଲା ଭଳି ଅଭିମାନଭରା ସ୍ୱରରେ କହିଲା ମନିକା– "ସପ୍ତାହରେ ଜମା ଥରେ ? ସେତିକି କ'ଣ ଯଥେଷ୍ଟ ହେବ, ସାର୍ ?"

ଠିକ୍ ହେଲା ଯେ ଶେଖର ସପ୍ତାହରେ ଅନ୍ତତଃ ଥରେ ଆସିବ ; ସୁବିଧା ହେଲେ ଅଧିକ ହୋଇପାରେ । ସେମାନେ ସମସ୍ତେ ସଚେତନ ଥିଲେ ଯେ, ଶେଖରର ନିଜର ପଢ଼ାପଢ଼ି ଅଛି । ଭବିଷ୍ୟତ ଗଢ଼ିବାର ସୁଯୋଗକୁ ସେ ବରବାଦ କରିବା ଠିକ୍ ନୁହେଁ । ଆଉ ଗୋଟିଏ କଥା ହେଲା, ଡିବେଟ୍ କଂପିଟିସନ୍‌ରେ ଭଲ କରିବା ପାଇଁ ମଧ୍ୟ ଶେଖର ତାଲିମ୍ ଦେବ । ତା'ର ପ୍ରସ୍ତାବ ଥିଲା, ମନିକାର କଥାକୁ ଟେପ୍ ରେକର୍ଡରରେ ସଂଗ୍ରହ କରାଯିବ । ତାହା ବଜାଇବା ବେଳେ ଶେଖର ଜଣେଇଦେବ, କେଉଠି ଦୁର୍ବଳତା ରହିଲା । ମନିକା ମଧ୍ୟ

ଏଇ ବ୍ୟବସ୍ଥା ଦ୍ୱାରା ନିଜକୁ ସଂଶୋଧନ କରିପାରିବ । ଉନ୍ନତି କରିବା ସହଜ ହେବ ତା' ପକ୍ଷରେ ।

ବିଶ୍ୱବିଜୟୀ ବୋଲି କାହାକୁ କୁହାଯାଏ ? ଶେଖରକୁ ? ମନିକାକୁ ? ଘଟଣାର ଗତିଶୀଳତା ଏତେ ବେଶି ଥିଲା ଯେ, ଦୁହେଁ ଆପାତତଃ ଅଭିଭୂତ ଓ ଅଣନିଃଶ୍ୱାସୀ ହୋଇପଡ଼ିଥିଲେ । କିଛି ବିଶ୍ଳେଷଣ କରିବାକୁ, ଚିନ୍ତା କରିବାକୁ ଅବକାଶ ହିଁ ପାଇ ନ ଥିଲେ ।

ଶେଖର ବିଛଣାରେ ବସିଲା । ରଂଜନକୁ ଉତ୍ତର ଦେଲା ଯେ ସେ ଖିଆପିଆ କରି ଫେରିଚି । ସେ ଆଉ କିଛି କହିଲା ନାଇଁ । ବ୍ୟସ୍ତ ରହିଲା ପଢ଼ାପଢ଼ିରେ । ଦୁଇ ପାପୁଲିରେ ମୁହଁ ଘଷିଲା ଶେଖର । ତା'ର ଆଶଙ୍କା ହେଉଥିଲା ଯେ ଏତେ ଆବେଗ ସେ ଧରି ରଖି ପାରିବ ନାଇଁ ନିଜ ଭିତରେ । ଏତେ ପରିପୂର୍ଣ୍ଣତା ଓ ସନ୍ତୋଷ ପାଇଁ ତା' ପାଖରେ ସ୍ଥାନ ନାହିଁ । କହିଦେବ କି ରଂଜନକୁ, ଏଇ ଅଳ୍ପଦିନ ମଧ୍ୟରେ ଘଟିଥିବା ଅଲୌକିକ ଘଟଣା ସଂପର୍କରେ ? କେହି ଜଣେ ହିତୈଷୀ, ଅନ୍ତରଙ୍ଗ ଏ ବିଷୟରେ ଜାଣିଲେ ଭଲ ।

ମାତ୍ର ଶେଖର କରିପାରିଲା ନାଇଁ କିଛି । ରଂଜନ ତା'ର ଏଇ ପ୍ରେମ କାହାଣୀକୁ ନାପସନ୍ଦ କରିପାରେ । କହିପାରେ ଯେ ସେ ଇଚ୍ଛାକୃତ ଭାବେ ନିଜକୁ ବିପର୍ଯ୍ୟୟ ଆଡ଼କୁ ଟାଣିନେଉଚି । ଏହା ତା'ର ଏକ ଚାରିତ୍ରିକ ଦୁର୍ବଳତା । ଏଥିପାଇଁ ତାକୁ ବହୁମୂଲ୍ୟ ଦେବାକୁ ପଡ଼ିବ । ପରେ ଅନୁତାପ କଲାବେଳେ ଜୀବନକୁ ପୁଣି ସଜାଡ଼ିବା ଆଉ ସମ୍ଭବ ହେବ ନାଇଁ । ଶେଖର ଜାଣେ ଏ ସବୁ । ଅଥଚ ଏଇ ଚାରିତ୍ରିକ ଦୁର୍ବଳତା କେତେ ମଧୁର ଓ ସଙ୍ଗୀତମୟ ! ନିଜକୁ ଗଢ଼ିବା ପାଇଁ ତଥାପି ଯଥେଷ୍ଟ ସମୟ ଅଛି । ତା'ଠାରେ ଆହୁରି ଅଛି ଆତ୍ମବିଶ୍ୱାସ ଓ ପ୍ରତିଭା । ଏତେ ତରତର, ବ୍ୟସ୍ତ, ବିବ୍ରତ ହେବାର କ'ଣ ଅଛି ? ସେ ଏଇ ଅନନ୍ୟ ଅଭିଜ୍ଞତା କହିପାରିବ ନାଇଁ କାହାରିକୁ । କେହି ଜାଣିବା ଦରକାର ନାଇଁ । ତାହା ଅପବିତ୍ର ହୋଇଯିବ । ତାହାକୁ ସେ ଜଗିରଖିବ, ପ୍ରତିରକ୍ଷା କରିବ ସମସ୍ତ ଆବେଗ ଓ ଘନିଷ୍ଠତାର ସହିତ ।

ମାତ୍ର କେତୋଟି ଦିନ, କେତୋଟି ବାକ୍ୟ ଉଚ୍ଚାରଣ ପରେ ସବୁ କିପରି ମନିକାମୟ ହୋଇଗଲା କେଜାଣି ? ଆକାଶର ପୃଷ୍ଠା ହେଉ ବା ପାହାଡ଼ ଉପରର ସବୁଜିମା ହେଉ । ସେଠାରେ ରହିଚି କେବଳ ମନିକା । କେବଳ ତା' ପାଇଁ ହିଁ ଏ କଲେଜ, ଏଠାକାର କର୍ମଚାରୀ । ସେ ନିଜେ । ସେ ହିଁ ଶେଖରର ଚେତନା ଓ କାର୍ଯ୍ୟକ୍ରମର ହେତୁ । ଶେଖର ମନରୁ ଲିଭି ଯାଉଥିଲା କଲେଜ, ସହକର୍ମୀ, ସେମିନାର, ଗାଁ । ପୋଛି ହୋଇ ଯାଉଥିଲା ଭବିଷ୍ୟତ ପାଇଁ ଯୋଜନା ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଚି, ପୋଛି ହୋଇ ଯାଉଥିଲା ନିଜ ସଂପ୍ରଦାୟ ସଂପର୍କରେ ସଚେତନତା । ତାକୁ ସଂପୂର୍ଣ୍ଣଭାବେ ଅଧିକାର କରିଥିଲା ମନିକା । ତା' ବ୍ୟତୀତ ସେ ଆଉ କିଛି ଭାବିପାରୁ ନ ଥିଲା, କିଛି ଦେଖିପାରୁ ନ ଥିଲା । ସେ ଥିଲା ଦର୍ପଣରେ, ସାଇକେଲରେ, ଉପସ୍ଥାନ ଖାତାରେ, ଲାଇବ୍ରେରୀର ବହିରେ । ଯେକୌଣସି ଶ୍ରେଣୀରେ କେବଳ ସେ ହିଁ ଥିଲା । ସେ ପରିବ୍ୟାପ୍ତ ଥିଲା ପବନରେ, ଆଲୋକରେ ।

ମାଇଁ ଗଡ୍ ! ମୁଁ ପାଗଳ ହୋଇଗଲି କି ? ଶେଖର ପଚାରିଲା ନିଜକୁ । ମୁଁ ଏ କ'ଣ କରୁଚି, କ'ଣ ଭାବୁଚି ? ମନିକା ବାସ୍ତବିକ କିଏ ? ମୋ ପାଇଁ ଅଭିଶାପ ନା ମରୀଚିକା ? ସେ କାହିଁକି ଅନୁପ୍ରବେଶ କରୁଚି ଏବଂ ମୁଁ ମନ୍ତ୍ରମୁଗ୍ଧ ହୋଇ ଖୋଲିଦେଉଚି ଦ୍ୱାର ପରେ ଦ୍ୱାର ତା' ପାଇଁ ? ମୋର ଭବିଷ୍ୟତର ଯୋଜନା କାହିଁକି ଦୂରେଇଯାଉଚି ମୋଠାରୁ ଏବଂ ସେଇ ଜାଗାକୁ ଅକ୍ତିଆର କରୁଚି ଏଇ ଲୋଭନୀୟ ଝିଅଟି ? ମୁଁ କାହିଁକି ନିର୍ବୋଧଙ୍କ ଭଳି ନାଚୁଚି, ତା' ଇଙ୍ଗିତରେ ଏବଂ ଏଭଳି ଇଙ୍ଗିତକୁ ଅପେକ୍ଷା କରୁଚି ଚରମ ଉତ୍କଣ୍ଠାର ସହିତ ? ନାଚିବା ଉପଭୋଗ କରୁଚି ପରମ ତୃପ୍ତିର ସହିତ ?

କଲେଜ ପରିସରରେ ମନିକାର ଆଉ ବ୍ୟାକୁଳତା ନ ଥିଲା ଶେଖର ପ୍ରତି । ସେ ତାକୁ ଖୋଜୁ ନ ଥିଲା କମନ୍‌ରୁମ୍‌ରେ, ଲାଇବ୍ରେରୀରେ । କ୍ଲାସ୍ ପୂର୍ବରୁ କିମ୍ବା ପରେ ତା' ସହିତ କଥାବାର୍ତ୍ତା କରିବା ପାଇଁ ଅସ୍ଥିର ହେଉ ନ ଥିଲା । ସେ ସାଇକେଲ ନେଇ ବଜାରକୁ ଯାଇଚି କି ନାଇଁ, ସତରେ ହୋଟେଲରେ ମନଭରି ଖାଇପାରିଚି କି ନାଇଁ ବୋଲି ପଚାରିବା ଦରକାର ମନେ କରୁ ନ ଥିଲା । ସେ ଜାଣିଥିଲା ଯେ ଏଇ ଯୁବ ପ୍ରତିଭାଶାଳୀ ଅଧ୍ୟାପକ ଜଣକ ଏକାନ୍ତ ଭାବେ ତା'ର । ତା'ର ଆବେଗଗତ ସତ୍ତାରେ କେବଳ ରହିଚନ୍ତି ଶେଖର । ବୃତ୍ତିଗତ କାରଣରୁ ସେ ଯିବେ ଏ କ୍ଲାସ୍‌ରୁ ସେ କ୍ଲାସ୍‌କୁ । ଆବଶ୍ୟକମତେ କଥାବାର୍ତ୍ତା କରିବେ ସହକର୍ମୀ ସହିତ, ଛାତ୍ର-ଛାତ୍ରୀଙ୍କ ସହିତ । ହସିବେ, ପରାମର୍ଶ ଦେବେ, ସଂଶୋଧନ କରିବେ । ଏତକ ବାଦ ଦେଲେ ଅବଶିଷ୍ଟ ଶେଖରର ଅଧିକାରୀ ସେ ନିଜେ ।

ଶେଖର ଏକ ସ୍ଥିରତା ପାଖରେ ପହଞ୍ଚି ଯାଇଥିଲା । ସେ ଦେଖୁଥିଲା, ମନିକା ହସୁଚି, କଥାବାର୍ତ୍ତା କରୁଚି, ସାଙ୍ଗମାନଙ୍କ ସହିତ । ଦରକାର ମୁତାବକ ଅନ୍ୟ ଅଧ୍ୟାପକମାନଙ୍କ ସହିତ । ଆମ୍ବଗଛ ମୂଳେ ଗୁପ୍‌ଚୁପ୍, ଦହିବରା ଓ ଚାଟ୍ ଉପଭୋଗ କରିବ । ଏସବୁ ଗୋଟେ ଆବଶ୍ୟକୀୟ ପରିଧି । ଏହାର କେନ୍ଦ୍ରରେ ଅଛି ସେ ନିଜେ । ମନିକା ତା'ର । ଏକାନ୍ତ ଭାବେ ତା' ସ୍ଥିତିର ଅଂଶବିଶେଷ ।

ଅଥଚ ଗୋଟିଏ ସପ୍ତାହ ଗଡ଼ିଗଲା ସାଦା କାଗଜର ପୃଷ୍ଠା ଭଳି । ଶେଖର ପ୍ରସ୍ତୁତ ହୁଏ ଅଫିସର୍ସ କଲୋନୀ ଯିବା ପାଇଁ । ସାଇକେଲ କିନ୍ତୁ ଟପିପାରେ ନାହିଁ ବସ୍ଷ୍ଟାଣ୍ଡ । ଅନ୍ୟମନସ୍କ ହୋଇ ପତ୍ରିକା ଦୋକାନ ସାମନାରେ ଠିଆ ହୁଏ । କୌଣସି ଛାତ୍ର ସହିତ ଦେଖାହେଲେ ଗପେ ଅଯଥାରେ । କେହି ଚା' ଯାଚିଲେ ପିଏ । ସେ ଯାଇପାରିଲା ନାହିଁ । ତା'ର ଭୟ ଥିଲା, ପୃଥିବୀର ସମସ୍ତ ଲୋକ ଲକ୍ଷ୍ୟ କରୁଚନ୍ତି ତା' ଗତିବିଧି । ତା' ମନ ଓ ଭାବନା ପଢୁଚନ୍ତି । ଆମୋଦିତ ହେଉଚନ୍ତି । ସମ୍ଭବତଃ ବିଦ୍ରୂପ, ତିରସ୍କାର କରୁଚନ୍ତି । ତା'ର ଦୁଃସାହସିକ ଅଗ୍ରଗତି ଏକ ନିର୍ବୋଧତା ବୋଲି କହି ଦେଉଚନ୍ତି । ସେ ଗୋଟେ ଅସମ୍ଭବ ବାଟ ଚାଲିବା ପାଇଁ ବ୍ୟାକୁଳ ହେଉଥିବାରୁ ପାଟି କରୁଚନ୍ତି– ରହି ଯା, ଯେଉଁଠି ଅଛୁ । ତୋ ପାଇଁ ଆଗକୁ ବାଟ ନାହିଁ ।

ବାସ୍ତବିକ ରହିଗଲା ଶେଖର । ପ୍ରାୟ ଦଶଦିନ ପରର ବାଟ ଓ ଉତ୍କଣ୍ଠା ସରିଗଲା । ଇଂଜିନିୟରଙ୍କ ବଙ୍ଗଳା । ଗେଟ୍ । ପୁଣି ଉଦ୍‌ବେଗ ଓ ଶୋଷ । ପୁଣି ଠିଆ ହୋଇଥିବା ମାଟିର କଂପନ । ଆହା, ଆଜି ପର୍ଟିକୋ ପାଖରେ କେହି ନାହାନ୍ତି ? ସେ ଗେଟ୍ ଖୋଲିବ କି ନାହିଁ ବୋଲି ଦ୍ୱିଧାଗ୍ରସ୍ତ ଥିବା ବେଳେ ହିଁ ପ୍ରାପ୍ତିର ପରିଭାଷା– "ସାର୍, ସାର୍ ! ଟିକିଏ ରହନ୍ତୁ । ଏଇ ଯାଉଚି ।"

କ୍ଷଣକ ମଧ୍ୟରେ ଗେଟ୍ ଖୋଲିଯାଏ । ଅପସରିଯାଏ ପ୍ରତିବନ୍ଧକ । ମସୃଣ ରାସ୍ତା । ଫାଙ୍କା ପର୍ଟିକୋ । ସ୍କ୍ରିନ୍ ଆଡ଼େଇଦେବା ମାତ୍ରେ ଷ୍ଟଡ଼ି । ତା' କପ୍ । ସାମନାରେ ସମସ୍ତ ସ୍ୱପ୍ନର ବାସ୍ତବ ଆକାର । ସମସ୍ତ ଅନ୍ୱେଷଣର ସମାପ୍ତି । ମନିକା ।

–"ସାର୍, ବହୁତ ବ୍ୟସ୍ତ ଥିଲେ । ନୁହେଁ ?" ପ୍ରତିଶ୍ରୁତି ଅନୁଯାୟୀ ସପ୍ତାହରେ ଥରେ ନ ଆସିଥିବାରୁ ଏଇଟା କୈଫିୟତ ପାଇଁ ଦାବି ନ ଥିଲା । କୃତ୍ରିମ ରାଗ କିମ୍ବା ଅଭିମାନ ନ ଥିଲା, ଯାହା ଏଭଳି କ୍ଷେତ୍ରରେ ସାଧାରଣତଃ ଦେଖା ଦେଇଥାଏ ।

ଶେଖର ଛୋଟ; କିନ୍ତୁ ରୁଚିସଂପନ୍ନ ରୁମ୍ ଚାରିଆଡୁ ଦୃଷ୍ଟି ଫେରାଇଲା । ବହି, ଖାତା, କେତେଟା ଡେକରେଟିଭ୍ ଜିନିଷ । କୌଣସି ଜିନିଷରେ ଉଗ୍ରତା ନ ଥିଲା, ଆଖି ଝଲସେଇ ଦେବାର ଗୁଣ ନ ଥିଲା । ଯେମିତି ମନିକା ନିଜେ । ସାଧାରଣ ଅଥଚ ପରିଚ୍ଛନ୍ନ ବେଶପୋଷାକ । ସ୍ମାର୍ଟ କିନ୍ତୁ ଦେଖେଇ ହେବାର ମନୋଭାବ ନାହିଁ । ସଂଯତ ଏବଂ ଆତ୍ମବିଶ୍ୱାସୀ । ସାଧାରଣ ସ୍ୱାସ୍ଥ୍ୟ ଓ ଉଚ୍ଚତା । ଗହଳି ଭିତରେ ଆପଣାଛାଏଁ ବାରି ହୋଇଯାଏ ନାହିଁ । ତାକୁ

ଲକ୍ଷ୍ୟ କରିବା ଦରକାର, ତା'ର ସୌନ୍ଦର୍ଯ୍ୟ ଠାବ କରିବା ସକାଶେ । ଲିପ୍‌ଷ୍ଟିକ୍ ଦରକାର କରୁ ନ ଥିବା ଓଠ ସହଜରେ ଭାଷାମୟ ହୋଇପାରେ । ଆଖି, ଭ୍ରୂ, କପାଳ । ସବୁଥିରେ ମାପଚୁପ ଅନୁପାତ । ସବୁ ପ୍ରକାଶ କରିପାରନ୍ତି ଭାବନା, ମୁଡ୍ । ଗୋଟେ ସେନ୍‌ସିଟିଭ୍ ମୁହଁ ।

—"ମୋଟେ ବ୍ୟସ୍ତ ନ ଥିଲି ।" ଶେଖର କହିଲା ମନିକା ଆଡୁ ଦୃଷ୍ଟି ଫେରାଇ । ଓଠ ଚାଟିଲା, ଛେପ ଢୋକିଲା, ଫ୍ୟାନ୍ ଆଡ଼କୁ ଚାହିଁଲା, ମୁହଁ ଗରମ ହୋଇ ପଡୁଚି କାହିଁକି କାରଣ ଜାଣିବା ପାଇଁ । ହସିବା ପାଇଁ ଚେଷ୍ଟା କରି ଅକୃତକାର୍ଯ୍ୟ ହେଲା । କହିଲା— "ବାସ୍ । ଏମିତି ।"

ମନିକା ଲକ୍ଷ୍ୟ କରୁଥିଲା, ଶେଖର କିପରି ସଂଘର୍ଷ କରୁଚି, ନିଜ ଭାବନାକୁ ଚାପିରଖିବା ପାଇଁ । ସହଜରେ ଜାଣିହେଉଚି, ତା'ର ଛଟପଟ ହେଉଥିବା ଅଭ୍ୟନ୍ତରକୁ । ମାତ୍ର ସେ କହିଲା ନାଇଁ କିଛି । ବହିର ପୃଷ୍ଠା ଓଲଟାଇଲା ।

—"ମନିକା ।" ଶେଖର କହିଲା, ତା'ର ଦୃଷ୍ଟି ଆକର୍ଷଣ କରିବା ପାଇଁ ।

—"ମୋତେ କିଛି କହିବେ, ସାର୍ ?"

—"ନା । କିଛି ନୁହେଁ ।"

ମନିକା ବହି ବନ୍ଦ କଲା । କହିଲା— "ସାର୍, ଯାହା କହିବାର ଅଛି କହି ଦିଅନ୍ତୁ । ହାଲୁକା ଲାଗିବ । ପ୍ଲିଜ୍ ! କହି ଦିଅନ୍ତୁ, ସାର୍ ! ମୋତେ ସଙ୍କୋଚ କରନ୍ତୁ ନାଇଁ । ଆପଣ କହିବେ ବୋଲି ମୁଁ ଅପେକ୍ଷା କରିଚି । ଆଗ୍ରହର ସହିତ ଅପେକ୍ଷା କରିଚି ।"

ଶେଖର ମନ୍ତ୍ରମୁଗ୍ଧ ହେଲା; କିନ୍ତୁ ଯେଉଁ ସ୍ତରରେ ପହଞ୍ଚିଲେ ସେ ନିଜକୁ ପ୍ରକାଶ କରିପାରନ୍ତା, ତାହା ହାସଲ କରିପାରିଲା ନାଇଁ । ସେ ଚାହିଁଲା ମନିକା ଆଡ଼େ ପୁଣି ଥରେ । ନିରବ ଅନୁରୋଧ କଲା, ମନିକା ତାକୁ ସାହାଯ୍ୟ କରୁ ପ୍ରକାଶିତ ହେବା ପାଇଁ ।'

—"ସାର୍, ଥରେ କହିଦିଅନ୍ତୁ— ମନିକା, ଆଇ 'ଲଭ୍ ୟୁ । ଥରେ । ତା' ପରେ ଦେଖିବେ, ସବୁ ସହଜ ହୋଇଯାଇଚି । ଆପଣ ନିଜେ ସ୍ୱାଭାବିକ ହୋଇ ଯାଇଚନ୍ତି ।" ମନିକା ଉତ୍ସାହିତ କଲା ତାକୁ ।

—"ଆଇ ଲଭ୍ ୟୁ, ମନିକା ।" ଶେଖର କହିଲା ଏବଂ ଚାହିଁଲା ଉଲ୍ଲସିତ ମନିକା ଆଡ଼େ । ପୁନରାବୃତ୍ତି କଲା— "ତୁମକୁ ଭଲ ପାଏ ।"

ଶେଖର ଗଲା ବେସିନ୍ ପାଖକୁ । ଭଲ କରି ଧୋଇହେଲା ମୁହଁ, ବେକ । ଥଣ୍ଡା ପାଣି ପିଇଲା । ବସିଲା ଚୌକିରେ । ପଚାରିଲା— "ଆଜି କେଉଁ ବିଷୟ ପଢ଼ିବା ?"

ଘଣ୍ଟାଏ ସ୍ୱାଭାବିକ ପଢ଼ାପଢ଼ି, ଆଲୋଚନା ନୋଟ୍ ଲେଖା ଇତ୍ୟାଦି । କୌଣସି ସମସ୍ୟା ନ ଥିଲା । ରାତି ନଟା ବେଳକୁ ଶେଖର ଉଠିଲା । ସେଠାରେ ଖିଆପିଆ କରିବା ପାଇଁ ମନିକାର ବାରମ୍ବାର ଅନୁରୋଧକୁ ରକ୍ଷା କରିପାରୁ ନାହିଁ ବୋଲି ଦୁଃଖ ପ୍ରକାଶ କଲା । ଯିବା ବେଳେ ପଚାରିଲା– "ଘରେ ଚାକରାଣୀକୁ ଛାଡ଼ିଦେଲେ ଆଉ କେହି ନାହାନ୍ତି ?"

–"ବଡ଼ ଭାଇ ଅଛନ୍ତି ।" ଉତ୍ତର ଦେଲା ମନିକା । ଟିକିଏ ରହି କହିଲା– "ଭବେଶ୍ ତାଙ୍କ ନାମ । ମାର୍କେଟ୍‌ରେ ଗୋଟେ ଶୋ ରୁମ୍ ଖୋଲିଚନ୍ତି । ବିଭିନ୍ନ ଇଲେକ୍‌ଟ୍ରୋନିକ୍ ଜିନିଷର ।"

ଶେଖର କୌତୂହଳୀ ହୋଇ ପଡ଼ିଲା । ଆଉ କିଛି ଜାଣିବା ପାଇଁ ପଚାରିଲା– "ଏମିତି ବ୍ୟବସ୍ଥାଟେ ତାଙ୍କପାଇଁ କରାଗଲା କାହିଁକି ?"

–"କ'ଣ ଆଉ କରାଯାଇ ପାରିଥାନ୍ତା ?" ମନିକା ଉଦାସ ହୋଇ କହିଲା– "ନନା ଥିଲେ ଏକ ଯନ୍ତ୍ରଣାଦାୟକ ସମସ୍ୟା ବାପା-ମା'ଙ୍କ ପାଇଁ । ଭାରି ଉଚ୍ଛୃଙ୍ଖଳ ଥିଲେ । କେଉଁଠି ମାଡ଼୍‌ପିଟ୍, ବଚସା । ଏମିତିକି କେଉଁଠି ସୁନାଚେନ୍ ଛିଣ୍ଡାଇ ନେଇଯିବା । ମାତାଲ୍ ହୋଇ ଘରକୁ ଫେରିବା । ଏମିତି ସବୁ । କୌଣସି ମତେ ବି.ଏ. ପାସ୍ କଲେ । ତାଙ୍କ କହିବା ଅନୁସାରେ ନିର୍ଧୂମ୍ କପି କରି ଆଇନ୍ ପରୀକ୍ଷାରେ ମଧ୍ୟ ପାସ୍ କଲେ । ତା' ପରେ ଟିକିଏ ସୁଧୁରିଗଲା ଭଳି ଜଣାପଡୁଚି । ଯାସତ୍ତ୍ୱେ ବାପା-ମା'ଙ୍କ ପାଇଁ ସେ ଏକ ଦୁର୍ବଳତା ଓ ଅପମାନ । ଗୋଟେ ଯନ୍ତ୍ରଣାଦାୟକ କ୍ଷତ ।"

ଶେଖର ବିଶେଷ ଆଗ୍ରହୀ ନ ଥିଲା ଭବେଶ୍ ସଂପର୍କରେ ବହୁତ ବେଶି ଜାଣିବା ପାଇଁ । ଜଣେ ଉଦ୍‌ଭ୍ରାନ୍ତ ଓ ଦୁର୍ଦ୍ଦାନ୍ତ ଯୁବକର ଚାଲିଚଳନ, ବେଶପୋଷାକ, କଥାବାର୍ତ୍ତା, ଢଙ୍ଗ କିପରି ହୋଇଥିବ, ତାହା ଅନୁମାନ କରାଯାଇପାରେ ଅକ୍ଲେଶରେ । ଏମାନଙ୍କ ସଂଖ୍ୟା ହୁ ହୁ ହୋଇ ବଢୁଚି ଏବଂ ଏମାନଙ୍କର ଉତ୍ପାତର ଶିକାର ହେଉଚନ୍ତି ପ୍ରତିଦିନ ଶହଶହ ଲୋକ ।

ମାତ୍ର ଶେଖର ପର୍ଟିକୋ ପାଖରେ ପହଞ୍ଚିବା ବେଳକୁ ମୋଟରସାଇକେଲଟେ ଅଟକିଲା ଗେଟ୍ ଆଗରେ । ମନିକା କହିଲା– "ଆଜି ଏତେ ଚଞ୍ଚଳ ନନା ଫେରିଲେ କାହିଁକି କେଜାଣି ? ରାତି ସାଢ଼େଦଶଟାରେ ଫେରିବା କଥା ।"

ଭବେଶ ପାଖେଇ ଆସିଲା । ଶେଖରକୁ ଦେଖି ସ୍ମିତ ହସିଲା । କହିଲା– "ହାଲୋ ।"

ପରିଚୟ କରାଇଦେଲା ମନିକା । କାହିଁକି କେଜାଣି ଆଶ୍ୱସ୍ତ ଅନୁଭବ କଲା ଶେଖର । ବେଶ ହୃଷ୍ଟପୁଷ୍ଟ ଯୁବକ ଜଣେ । ପରିଧାନ ପ୍ରତି ବିଶେଷ ନଜର ନାଇଁ । ଝାଲୁଆ ମୁହଁ । ତିନି-ଚାରିଦିନ ହେଲା କଟା ଯାଇ ନ ଥିବା ନିଶ-ଦାଢ଼ି । ଅବିନ୍ୟସ୍ତ କେଶ । ଦୁହେଁ କରମର୍ଦ୍ଦନ କଲାବେଳେ ଭବେଶ ପଚାରିଲା– "ସାରଙ୍କୁ ଖାଇବାକୁ ଦେଇଚୁ ନା କାମ ଆଦାୟ କରି ସେଇମିତି ଖାଲି ପେଟରେ ପଠେଇ ଦେଉଚୁ ?"

ଶେଖର ଉପଭୋଗ କଲା ଏ କଥା । ଭବେଶ ଘୋଷଣା କଲା ଯେ, ଘନିଷ୍ଠ ସାଙ୍ଗର ବାହାଘରରେ ଯୋଗ ଦେବା ପାଇଁ ଚଞ୍ଚଳ ଶୋ-ରୁମ୍ ବନ୍ଦ କରି ଫେରୁଚି । ପୋଷାକ ବଦଳାଇବ, ଗୋଟେ-ଦୁଇଟା ଜରୁରୀ ଜିନିଷ ନେବ ।

ଚାରି-ପାଞ୍ଚ ଦିନ ପରେ ପୁଣି ମନିକାର ପଢ଼ାଘର । ସମ୍ଭବତଃ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାଇଁ ସେ– "କି ଭାଗ୍ୟ ! ମୁଁ ଡରୁଥିଲି, ହୁଏତ ଦଶ-ପନ୍ଦର ଦିନ ପର୍ଯ୍ୟନ୍ତ ଆପଣ ଆଉ ଆସିବେ ନାଇଁ ।"

–"ରହି ହେଲା ନାଇଁ ।" ସ୍ୱୀକାର କଲା ଶେଖର– "ସବୁଆଡ଼େ କେବଳ ମନିକା । ଖାଇବା, ବସିବା । ନିଃଶ୍ୱାସ ନେବା । ବହି-ଖବରକାଗଜର ପୃଷ୍ଠା । ମୁଁ ଜାଣେ, ମୁଁ ପାଗଳ ହୋଇଯାଉଚି ।"

ମନିକା ଶିହରିତ ହୋଇଗଲା । କହିଲା– "କଲେଜରୁ ଫେରି ଏଇ ପର୍ଟିକୋ ପାଖ ବାରନ୍ଦାର ଚେୟାର । ଘଣ୍ଟା ପରେ ଘଣ୍ଟା । ଦିନ ପରେ ଦିନ । ରାସ୍ତା ଉପରେ ଯାଉଥିବା ଲୋକ ଦେଖିଲେ ସ୍ପନ୍ଦନ । ସାର୍ ଆସିଲେ କି ? ଛଟପଟ, ଅଣନିଃଶ୍ୱାସୀ ହେବାର ସମୟ କଟେଇବା କେତେ କଷ୍ଟ ! ଏଣେ ମୁଁ ଅପେକ୍ଷା କରୁଥିବି; ଅଥଚ ଦେଖା ମିଳିବ ନାଇଁ ଆପଣଙ୍କର । ଆପଣ ସବୁଦିନ ଆସିପାରିବେ ?"

–"ସବୁ ଦିନ ?" ଶେଖର ଆଦୌ ବିସ୍ମିତ ହେଲା ନାଇଁ ଏ ପ୍ରସ୍ତାବ ଶୁଣି ।

–"ସବୁ ଦିନ । ସବୁ ସମୟ !" ମନିକା ହୁଏତ ଜାଣିପାରୁ ନ ଥିଲା ଶେଖର ଭିତରର ଉତ୍ତାପକୁ ସେ ବଢ଼େଇଦେଉଚି କିପରି, ପ୍ରତ୍ୟେକ ଶବ୍ଦର ବାରୁଦ ଜରିଆରେ ।

ପୁଣି ଦୀର୍ଘ ସମୟ, ସ୍ୱାଭାବିକ ହେବା ପାଇଁ । ଥଣ୍ଡା ପାଣି, ଚା' । ନୋଟ୍ ଦେଖା । କେଉଁଠି କେମିତି ପରିବର୍ତ୍ତନ । ଆଲୋଚନା । ଶ୍ରୀମତୀ ରଥଙ୍କର ସନ୍ତୁଷ୍ଟ ମୁହଁ– "ଗତ ଥର ଆମେ ଦୁହେଁ ନ ଥିଲୁ ବୋଲି ଆପଣ ଅଖିଆ ଅପିଆ ପଳେଇଗଲେ । ନାଇଁ, ସେମିତି କରିବେ ନାଇଁ, ସାର୍ । ଯେଉଁଦିନ ଆସିବେ ଏଇଠି ଡିନର୍ କରିବେ ।"

ଶେଖର କିଛି କହିବା ପୂର୍ବରୁ ତାଙ୍କର ବକ୍ତବ୍ୟ– ''ସମୟ ହେଲେ, ମନିକାର ଏଲୋକ୍ୱେନ୍‌ସ୍ ଟେଷ୍ଟ କରିବେ । ଟେପ୍ ରେକର୍ଡ଼ର ଆଉ କ୍ୟାସେଟ୍ ଅଛି ।''

ସେ ପଳେଇଗଲେ । ଏହାର କିଛି ସମୟ ପରେ ଡାଇନିଙ୍ଗ୍ ଟେବୁଲ । ଦିବ୍ୟ ଭୋଜନ । ତୃପ୍ତି । ଗୋଟିଏ ଦିନ ବିତିଯାଏ । ଗୋଟିଏ ଦିନ ଆଗେଇ ଆସେ ପ୍ରତିଯୋଗିତାମୂଳକ ପରୀକ୍ଷା ତାରିଖ । ହଉ, ଦେଖାଯିବ କ'ଣ ହେଉଚି ଏବଂ କିଛି ସମୟ ପରେ ସେ ପଚାରେ ନିଜକୁ, ଏଇ ପରୀକ୍ଷାର ତାରିଖ କାହିଁକି ମନେପଡ଼େ ? ଫର୍ମ ପୂରଣ କରିଚି ବୋଲି ? ଖର୍ଚ୍ଚାନ୍ତ ହୋଇଚି ବୋଲି ? ଏଭଳି ତାରିଖ କେବଳ ସତର୍କତା ଆଣେ । ସୃଷ୍ଟି କରେ ଅସ୍ଥିରତା ଓ ବ୍ୟାକୁଳତା । କ'ଣ ଦରକାର ? ଏଥର ନ ହେଲେ ଆରଥର ଦିଆଯାଇ ପାରିବ ଏ ପରୀକ୍ଷା । ଗୋଟେ ମନମତାଣିଆ ଅଭିଜ୍ଞତାକୁ ଏଡ଼େଇ ଦିଆଯିବ କିପରି, କାହିଁକି ?

ପଢ଼ାପଢ଼ି ସହିତ ଆଉ କିଛି କାମ ଅଛି । ଦଶହରା ଛୁଟିରେ ଗାଁକୁ ଯିବା ସମ୍ଭବ ନୁହେଁ । ଅବଶ୍ୟ ସେ ଚେଷ୍ଟା କରୁଚି ନିଜକୁ ମୁକ୍ତ କରି ଦିନେ-ଦୁଇଦିନ ପାଇଁ ଯିବାକୁ । ଚିଠି ଡ୍ରପ୍ କଲାପରେ ଶେଖର ଅପରାଧୀ ହୋଇପଡ଼ିଲା ନିଜ ଭିତରେ । ଅସହାୟ ବୋଧ କଲା । ଠିକ୍ କଲା, ପରଦିନ ଆଉ ଗୋଟେ ଚିଠି ପଠେଇବେ । ଲେଖିବ ଯେ ସମସ୍ତ କାମ ଓ ପଢ଼ାପଢ଼ିକୁ ପଛରେ ପକାଇ ସେ ଯିବ ଗାଁକୁ । ବୁଲିବ ସବୁଜ ଧାନ କ୍ଷେତର ହିଡ଼ ଉପରେ । କ୍ଷେତର ମଧୁର ମହକ ଅନୁଭବ କରିବ । ବାରନ୍ଦା ଉପରେ ବସି ଦେଖିବ, ମା' ଓ ବାପା କିପରି କାର୍ଯ୍ୟବ୍ୟସ୍ତ ଅଛନ୍ତି । ମା' ଚଉରା ଉପରେ ଥୋଇଦେଉଚି ସଂଧ୍ୟାର ସଳିତା । ବେକ ଚାରିପଟେ ପଣତ ଗୁଡ଼ାଇ ମୁଣ୍ଡିଆ ମାରୁଚି ଠାକୁରଙ୍କୁ । ଶେଖର ଭଳି ପିଲାକୁ ଜନ୍ମଦେଇଚି ବୋଲି କୃତଜ୍ଞତା ପ୍ରକାଶ କରୁ କରୁ କାନ୍ଦି ପକଉଚି ।

ସେ ନିଶ୍ଚୟ ଲେଖିବ ଏମିତି ଚିଠି । ଏଣେ ରଂଜନ ବ୍ୟସ୍ତ ହେଉଚି, ଯେତିକି ପଢ଼ାପଢ଼ି କରିବା କଥା, ସେତିକି କରି ପାରୁ ନାହିଁ ବୋଲି । ମନିକା ଡିବେଟ୍ କଂପିଟିସନ, ଜେନେରାଲ ନଲେଜ୍ ଟେଷ୍ଟ ଓ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରୁଚି । କଲେଜର ପ୍ରତିନିଧିତ୍ୱ କରୁଚି ୟୁନିଭର୍ସିଟି ସ୍ତରର ପ୍ରତିଯୋଗିତାରେ ଭାଗନେବା ପାଇଁ ।

ଗାଁକୁ ଯିବା ପାଇଁ ଆଜି ଚିଠି ଲେଖା ଯାଇପାରି ନାଇଁ । କାଲି ଲେଖାହେବ । ଅଥଚ ଦଶହରା ଛୁଟି ପାଇଁ ଫାଙ୍କା ହୋଇଯାଉଚି ବେଟେଲର ହଷ୍ଟେଲ । ରାସ୍ତା-ଘାଟ, କୋଠାବାଡ଼ି ସ୍ତବ୍ଧ ଓ ନିର୍ବାକ୍ ହୋଇ ଯାଉଚନ୍ତି ଏବଂ ପ୍ରତି ସଂଧ୍ୟାରେ ଶେଖରର ସାଇକେଲ ଅଟକି ରହୁଚି ଇଂଜିନିୟରଙ୍କ ବଙ୍ଗଳା ଆଗରେ ।

—"ଆପଣ ଛୁଟିରେ ଗାଁକୁ ଯିବେନି ?" ମନିକା ଆନନ୍ଦ ଲୁଚେଇ ପାରିଲା ନାଇଁ ଶେଖରର ଘୋଷଣା ଶୁଣି ।

—"ଯିବି । ଦିନେ-ଦୁଇଦିନ ପାଇଁ ।" ଗାଁ ପ୍ରସଙ୍ଗ ଉଠାଇବା ମାତ୍ରେ ସେ ଅପ୍ରତିଭ ହୋଇପଡୁଚି । ତଣ୍ଟିରେ ଅନୁଭବ କରୁଚି ଗୋଟେ କଣ୍ଟା ।

—"ଏବେ ପଢ଼ାପଢ଼ିରେ ଭାରି ବ୍ୟସ୍ତ ରହୁଚନ୍ତି ନା ?" ମନିକା ପଚାରିଲା, ଶେଖରର ତାହା ଏକ ସ୍ୱାଗତଯୋଗ୍ୟ କାମ ବୋଲି ଅନୁଭବ କରି ।

ପୁଣି ଅପ୍ରତିଭ ହେବାର ମୁହୂର୍ତ୍ତ । ପଢ଼ାପଢ଼ି ! ସର୍ବଭାରତୀୟ ପରୀକ୍ଷା ପାଇଁ ପ୍ରସ୍ତୁତି ! କ'ଣ ସେସବୁ ? ଶେଖରର ଅଭ୍ୟନ୍ତର ମଛି ହୋଇଗଲା ସତେ ଯେପରି । ମୁଣ୍ଡ ଟେକି ଚାହିଁଲା ମନିକାକୁ । କହିଲା— "ପଢ଼ାପଢ଼ି । ହଁ, ବ୍ୟସ୍ତ ଅଛି ପଢ଼ାପଢ଼ି ପାଇଁ ।"

ଚା' କପ୍ । କ'ଣ ଥିଲା ତା'ର ସ୍ୱାଦ ? ସେ ଜାଣିପାରିଲା ନାଇଁ କେତେବେଳେ ତାହା ଶେଷ ହେଲା । କହିଲା— "ମନିକା, ମୁଁ ତୁମକୁ ଅବିକା ମିଛ କହିଲି ।"

ଜିଜ୍ଞାସୁ ହୋଇପଡ଼ିଲା ସେ । ଉନ୍ମୁକ୍ତ ରହିଲା ଦୁଇ ଓଠ । ଈଷତ ଭ୍ରୂକୁଞ୍ଚନ ହେଲା । ଶେଖର କହିଲା— "ମୁଁ ଆଦୌ ପଢ଼ାପଢ଼ି କରି ନାଇଁ ।"

—"ନା, ସେମିତି କାହିଁକି ହେବ ?" ଠିକ୍ ଭାଷା ପାଇଲା ନାଇଁ ମନିକା ପ୍ରତିକ୍ରିୟା ପ୍ରକାଶ କରିବା ପାଇଁ । ସହସା ସେ ଯେପରି ଆତଙ୍କିତ ହୋଇ ପଡ଼ିଲା । ପଚାରିଲା— "ଆପଣ ପଢ଼ାପଢ଼ି କାହିଁକି କରିବେ ନାଇଁ ?"

ଶେଖର କହିଲା— "ସେସବୁ ମୁଁ ଦରକାର କରୁନି । କ'ଣ ହେବ ଆଉ ବଡ଼ ଚାକିରି ? ଯାହା ହେଲେ ତ ଚାକିରିଟେ ଅଛି ! ମନ୍ଦ କ'ଣ ?"

ଏ କଥାକୁ ପ୍ରତ୍ୟାଖ୍ୟାନ କଲା ଭଳି ମନିକା ମୁଣ୍ଡ ହଲାଇଲା । ଶେଖର ଦେଖି ନ ଥିଲା ତା'ର ଏପରି ଗମ୍ଭୀର ମୁହଁ । ସବୁବେଳେ ତା'ର ହସହସ, ପରିତୃପ୍ତ ମୁହଁ ଦେଖିବାରେ ଅଭ୍ୟସ୍ତ ଶେଖର ସମ୍ମୁଖରେ ବର୍ତ୍ତମାନର ମୁହଁ ଅପରିଚିତ ଜଣାପଡ଼ିଲା । ମନିକା ପଚାରିଲା— "ମୋ ପାଇଁ ଆପଣ ନିଜ ଭବିଷ୍ୟତକୁ ଏମିତି ଅବହେଳା କରିପାରିବେ ନାଇଁ, ସାର !"

—"ନା, ନା, ତୁମ ପାଇଁ କ'ଣ ?" ପ୍ରତିବାଦ କଲା ଶେଖର !

—"ସାର୍, ଯଦି ଏହାହିଁ ସତ ହୋଇଥାଏ, ତେବେ ମୋର ଦରକାର ନାଇଁ ଫାଷ୍ଟ କ୍ଲାସ୍ ! ମୋ ପାଇଁ ବିଭିନ୍ନ କୃତିତ୍ୱର ସାର୍ଟିଫିକେଟ୍, କପ୍ ଇତ୍ୟାଦି ହେଉଚି ଆବର୍ଜନା । କ'ଣ ହେବ ଏସବୁ ମୋର ? ମୋର ଦରକାର ଆପଣ ।

ଆପଣ ନିଜ ପ୍ରତିଭା ଯୋଗୁଁ ଉନ୍ନତି କରନ୍ତୁ । ଏଥିପାଇଁ ମୁଁ ଯଦି ପରୀକ୍ଷାରେ ଶହେ ଥର ଫେଲ୍ ହେବି, ତେବେ କିଛି ଯାଏ ଆସେ ନାହିଁ ।''

ଶେଖର ଆଦୌ ଭାବି ନ ଥିଲା ଯେ ମନିକାର ସ୍ୱର ବାଷ୍ପାକୁଳ ହୋଇଯିବ, ମୁହଁ କାନ୍ଦୁରା ଦେଖାଯିବ । ତାକୁ କିଛି କହିବା ପାଇଁ ସେ ଫୁରୁସତ ଦେଇ ନ ଥିଲା । କହିଲା– ''ମୁଁ ଆପଣଙ୍କୁ ଭଲ ପାଏ ବୋଲି ମୋତେ କ'ଣ କହିବାକୁ ପଡ଼ିବ ? ଜୀବନ ତମାମ୍ ମୁଁ ଏଇ ଗୋଟେ କଥା କହିବାକୁ ପ୍ରସ୍ତୁତ । ଆପଣଙ୍କୁ ନେଇ ମୁଁ ଏତେ ବଡ଼ ଯୋଜନାଟେ କରିଚି; ଅଥଚ– ।''

–''ମୋତେ ନେଇ ଯୋଜନା ?'' ଶେଖର ବୁଝିପାରିଲା ନାହିଁ ।

–''ହଁ, ଯୋଜନା ।'' ଦୃଢ଼ତାର ସହିତ କହିଲା ମନିକା । ଆହୁରି ଅପ୍ରତ୍ୟାଶିତ ଘୋଷଣାଟେ କଲା– ''ଆପଣ ହଁ କଲେ ମୁଁ ପଳେଇଯିବି ଆପଣଙ୍କ ପାଖକୁ । ଏ ଘରଦ୍ୱାର, ପୃଥିବୀ, ଆତ୍ମୀୟସ୍ୱଜନ ! ନା, କିଛି କଥା ଶୁଣିବି ନାହିଁ । ମୁଁ ଆଉ କାହାରିକୁ ଦରକାର କରେ ନାହିଁ । ମୋର ଦରକାର ଆପଣ । ଏ କଥା ମୁଁ ହଜାରେ ଥର କହିବି, ସମସ୍ତଙ୍କର ବିଶ୍ୱାସ ହେବା ପର୍ଯ୍ୟନ୍ତ । ତା' ବୋଲି ଆପଣ ପଢ଼ାପଢ଼ି କରିବେ ନାହିଁ ? ଆପଣ ମୋ ସଂପର୍କରେ ଅନିଶ୍ଚିତ ଅଛନ୍ତି କି ? ସଂଶୟ, ସନ୍ଦେହ, ଅବିଶ୍ୱାସ ? କେମିତି ବୁଝେଇବି ଆପଣଙ୍କୁ ? କେମିତି ? ମୁଁ ଆପଣଙ୍କର, ଯଦି ଆପଣଙ୍କର ଆପତ୍ତି ନ ଥାଏ । ଏତକ କହିବା ପରେ ବି ଆପଣ ସ୍ଥିର ହୋଇ ବସିପାରିବେ ନାହିଁ ଆପଣଙ୍କ ବହି ପାଖରେ ?''

ପ୍ରଚଣ୍ଡ ଶକ୍ତି ଥିଲା ଏଇ ନିର୍ଭୀକ, ସ୍ୱଷ୍ଟ ଘୋଷଣାରେ । ଗୋଟେ ତେଜ ବିଚ୍ଛୁରିତ ହେଉଥିଲା ତା' ମୁହଁରୁ । ଶେଖରର ସମସ୍ତ ଅନୁଭବ, ହାତ-ଗୋଡ଼ ଉପରକୁ ଉଠିଆସିଲା ପାରାଲିସିସ୍ । ସେ ଆଉ କିଛି ଚିନ୍ତା କରିପାରିବ ନାହିଁ । ଚାଲି ପାରିବ ନାହିଁ । ଦୁଇ ହାତରେ ଆଞ୍ଜୁଳାରେ ଧରି ପାରିବ ନାହିଁ ମନିକାର ଲାଲ୍ ମୁହଁକୁ ।

ପାଣି ଗ୍ଲାସେ । ଶେଖର ନିଜକୁ ଏକତ୍ର କରୁଥିଲା । ଛିନ୍ନଛତ୍ର ହୋଇଯାଇଥିବା ଭାବନା ପୁଣି ପରସ୍ପରର ସଂପର୍କିତ ହେଉଥିଲା । ସେ ଉଠିଲା । ଦ୍ୱାର ପାଖରେ ପହଞ୍ଚି ଅଟକିଗଲା । ଦେଖିଲା ମନିକାର ଶୋକାଚ୍ଛନ୍ନ ମୁହଁକୁ । କଂପିତ ଓଠ ଓ ନାକପୁଡ଼ାକୁ । ଦେଖିଲା ଏବଂ ପରେ, ଅଜାଣତରେ ଆଲିଙ୍ଗନ କରିପକାଇଲା । ସେମାନେ ପରସ୍ପରକୁ ଭିଡ଼ିଧରିଲେ ଏବଂ ଅନୁଭବ କଲେ ଯେ ସୃଷ୍ଟି ଆରମ୍ଭରୁ ଅବିଚ୍ଛେଦ୍ୟ ହୋଇ ରହିଚି ଏଇ ଆଲିଙ୍ଗନ । ଏଇ ମିଳିତ ହୃତ୍‌ସ୍ପନ୍ଦନ । ପରେ, ଦୁଇ ପାପୁଲିରେ ଶେଖର ଧରିଲା ମନିକାର ମୁହଁ ପ୍ରଥମ ଥର ପାଇଁ । ତା'

କପାଳରେ, ଓଠରେ ଘନିଷ୍ଠ ଚୁମ୍ବନ ଦେଲା ସମ୍ମୋହିତ ହେବା ଅବସ୍ଥାରେ । କେହି ହୋସ୍‌ରେ ନ ଥିଲେ ସେତେବେଳେ । ସଚେତନ ନ ଥିଲେ ତାଙ୍କ ଚାରିପାଖରେ ଥିବା ପୃଥିବୀ ପ୍ରତି ।

ଶେଖର ଜାଣିପାରୁ ନ ଥିଲା ସେ ସାଇକେଲ ଚଳଉଚି କିପରି, କେଉଁ ରାସ୍ତାରେ । ସେ ଜାଣିପାରି ନ ଥିଲା କେତେବେଳୁ ସେ ବସିଚି ନିଃସଙ୍ଗ ହଷ୍ଟେଲର ନିକାଞ୍ଚନ ରୁମ୍‌ରେ । ଆଦୌ ଅପସରି ଯାଉ ନ ଥିଲା ଆଲିଙ୍ଗନ ଓ ଚୁମ୍ବନର ପ୍ରଭାବ । ତାହା ପରିଣତ ହୋଇ ଯାଉଥିଲା ଏକ ରଙ୍ଗିନ ସ୍ୱପ୍ନରେ । ଆହୁରି ଜୀବନ୍ତ, ଆହୁରି ବାସ୍ତବ ହେଉଥିଲା ।

ପରଦିନ ଖବରକାଗଜରେ ସଂକ୍ଷିପ୍ତ ସମ୍ବାଦ ଏବଂ ବାପାଙ୍କର ବଡ଼ ବଡ଼ ଅକ୍ଷରରେ ଲେଖା ଯାଇଥିବା ଚିଠି ।

ସମ୍ବାଦଟି ହେଉଚି, ଗାଁ ପାଖ ଖ୍ରୀଷ୍ଟିୟାନ୍ ମିଶନାରୀ ଉପରେ ବଡ଼ ଧରଣର ଆକ୍ରମଣ ହୋଇଯାଇଚି । ଏ ମିଶନାରୀ ଗତ କିଛି ମାସ ହେଲା ଧମକପୂର୍ଣ୍ଣ ଚିଠି ପାଇ ଆସୁଥିଲା । ଏହା ବିରୋଧରେ ଅଭିଯୋଗ ହେଉଚି, ସରଳ ଓ ଅଶିକ୍ଷିତ ଲୋକମାନଙ୍କର ଦାରିଦ୍ର୍ୟରୁ ଫାଇଦା ଉଠାଇ ଏହା ଧର୍ମାନ୍ତକରଣ କରୁଚି । ଏହା ଲୋକମାନଙ୍କୁ ପ୍ରବର୍ତ୍ତାଉଚି । ଅର୍ଥ ଏବଂ ଚାକିରିର ଲୋଭ ଦେଖାଉଚି ଏ ସଂକ୍ରାନ୍ତରେ । ଗତ କିଛି ବର୍ଷରେ ଏହା ଅନ୍ୟୁନ ଆଠହଜାର ଆଦିବାସୀ ଓ ହରିଜନଙ୍କୁ ଧର୍ମାନ୍ତକରଣ କରିସାରିଲାଣି । ଏ ମିଶନାରୀର ମୂଳୋତ୍ପାଟନ କରି, ବିପଥଗାମୀ ହୋଇଯାଇଥିବା ଲୋକଙ୍କୁ ପୁଣି ମୂଳ ଧର୍ମ ଭିତରକୁ ଆଣିବା ପାଇଁ ଚାଲିଚି ଉଦ୍ୟମ । ଏ ଘଟଣା ଫଳରେ ଉତ୍ତେଜନା ଲାଗିରହିଚି ସେଇ ଅଞ୍ଚଳରେ ।

ବାପାଙ୍କର ଚିଠି ଥିଲା ଫାଦର ଯୋଶେଫଙ୍କୁ ନେଇ । ଗୁରୁତର ଭାବରେ ଆହତ ହୋଇ ସେ ପ୍ରାୟ ଡାହାଣହାତ ହରାଇବାକୁ ଯାଉଚନ୍ତି । ଶେଖର ଗାଁକୁ ଯିବା ଦରକାର କି ନାଇଁ, ତାହା ଲେଖାଯାଇ ନ ଥିଲା ଚିଠିରେ ।

ଚିଠି ପଢ଼ିବାର କିଛି ସମୟ ପରେ ଶେଖର ସଜାଡ଼ି ସାରିଥିଲା ବ୍ୟାଗ୍ । ମନିକା ! ଏତକ ଯଥେଷ୍ଟ ଥିଲା ତାକୁ ଚହଲାଇ ଦେବା ପାଇଁ; ଗାଁକୁ ଯିବାର ସଂକଳ୍ପ ଦୁର୍ବଳ କରିଦେବା ପାଇଁ । ମନିକା ! ଏତକ ଯଥେଷ୍ଟ ଥିଲା ବ୍ରହ୍ମାଣ୍ଡ ଭୁଲିଯିବା ପାଇଁ । ଶେଖରର ଏକାଗ୍ରତା ସତେଯେପରି ବିପର୍ଯ୍ୟସ୍ତ ହୋଇ ଯାଇଥିଲା ସମ୍ବାଦ ଓ ଚିଠି ଦ୍ୱାରା । ତାକୁ କେହି ଜଣେ କହି ଦେଉଥିଲା ଯେ, ଜୀବନର ପରିସର କହିଲେ କେବଳ ମନିକାକୁ ବୁଝାଏ ନାଇଁ । ତାହାକୁ ବାଦ୍ ଦେଲେ

ଆହୁରି ଜରୁରୀ ବ୍ୟାପାର ଅଛି, ଯାହା ମଣିଷର ସମୟ, ଶକ୍ତି ଓ ମାନସିକତା ଉପରେ ନିଜର ଦାବି ସାବ୍ୟସ୍ତ କରେ । ତାହାକୁ ଏଡ଼େଇଦେବା ଅସମ୍ଭବ ।

ନିରୁପାୟ ହୋଇ ପଡ଼ିଲା ଶେଖର । ତାକୁ ଡିଷ୍ଟର୍ବ କରିଥିବାରୁ ସମ୍ବାଦ ଓ ଚିଠିକୁ ଶ୍ରଦ୍ଧା କରିପାରିଲା ନାହିଁ ସେ । ଫାଦର ଯୋଶେଫ ଯଦି ଆହତ ହୋଇଚନ୍ତି ଓ ହାତ ଗୋଟେ ହରାଇବାକୁ ଯାଉଚନ୍ତି, ସେଥିରେ ସେ କରିବ କ'ଣ ? କିଛି ଭୂମିକା ତା'ର ଅଛି କି ଏ ସଂକ୍ରାନ୍ତରେ ? ହଁ, ସେ ତାକୁ ନିର୍ମଳ ଶ୍ରଦ୍ଧା ଦେଇଚନ୍ତି । ସାହାଯ୍ୟ କରିଚନ୍ତି ଯଥେଷ୍ଟ । ମାତ୍ର ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ସଚେତନ ହୋଇଚି ଯେ ଏଇ ଶ୍ରଦ୍ଧା ଏବଂ ସାହାଯ୍ୟ ହୁଏତ ସର୍ତ୍ତହୀନ ନ ଥିଲା । ଏହା ବାସ୍ତବିକ ଥିଲା ଏକ ପ୍ରରୋଚନା, ଏକ ପ୍ରଲୋଭନ । ଯା ସତ୍ତ୍ୱେ ମିଶନାରୀ ଉପରେ ଏମିତି ଆକ୍ରମଣ କରିବା ଦରକାର କ'ଣ ? ଲୋକମାନେ କାହିଁକି ମିଶନାରୀ ପ୍ରତି ଆକୃଷ୍ଟ ହେଉଚନ୍ତି, ତାହାର କାରଣ ଅନୁଧ୍ୟାନ କରା ନ ଯାଉଚି କାହିଁକି ଏବଂ ଏଥିପାଇଁ ପ୍ରତିକାର କରା ନ ଯାଉଚି କାହିଁକି ? ଲୋକମାନଙ୍କର ଦାରିଦ୍ର୍ୟ ଓ ସରଳତା ଏବଂ ଅଶିକ୍ଷାକୁ ଦାୟୀ କରିଦେଲେ ଚଳିବ ନାହିଁ ।

ଗଣ୍ଡଗୋଳ ଗୋଟେ ସୃଷ୍ଟି ହୋଇଯାଇଥିଲା ଶେଖର ମୁଣ୍ଡରେ । ସେ ବସିଲା ବସ୍‌ରେ । ବିରକ୍ତ ହେଲା । ତିକ୍ତ ହୋଇପଡ଼ିଲା ତା' ମନ । ସେ ସ୍ପଷ୍ଟ ଦେଖି ପାରୁଥିଲା କିପରି ଆଦିବାସୀ-ହରିଜନ ସଂପ୍ରଦାୟ ପରିଣତ ହୋଇଯାଉଚି ପଣ୍ୟଦ୍ରବ୍ୟରେ । ଏହାକୁ କିଣାଯାଇପାରେ, ବିକ୍ରି କରାଯାଇପାରେ, ଧମକ ଦିଆଯାଇପାରେ, ପ୍ରବର୍ତ୍ତାଯାଇପାରେ । ଏହା ଉପରେ ପ୍ରଭାବ ପକାଇବା ପାଇଁ, ଏହାକୁ କରଗତ କରିବା ପାଇଁ ଉଦ୍ଭାବନ କରାଯାଇପାରେ ନୂଆ କୌଶଳ । ଏହାର ରକ୍ଷାକର୍ତ୍ତା ହେବା ପାଇଁ ଚାରିଆଡ଼େ ଲାଗିରହିଚି ଏକ ଟଣାଓଟରା, ବଡ଼ ଧରଣର ପ୍ରତିଯୋଗିତା ।

ରାତି ପ୍ରାୟ ଆଠଟା ବେଳେ ଘର । ଗେଟ୍ ଖୋଲିବା ଶବ୍ଦ ଶୁଣି, ବାରନ୍ଦା ଉପରେ ମା' ଜିଜ୍ଞାସୁ ମୁହଁ ନେଇ । ବଲ୍‌ବ ଚାରିପଟେ ଉଡୁଥିବା ପୋକ, ସମ୍ଭବତଃ ବାଡ଼ ଉପରେ ଥାଇ ଶବ୍ଦ ସୃଷ୍ଟି କରୁଥିବା ଅନ୍ୟ ପୋକ, ଗୁହାଳର ଗନ୍ଧ ଓ ବଳଦମାନଙ୍କର ନିଃଶ୍ୱାସର ଧ୍ୱନି, କେଉଁଠି କେଜାଣି କୁକୁର ଭୁକା, ଉତ୍ତେଜିତ ସ୍ୱରର କଥାବାର୍ତ୍ତା । ଗାଁର ପରିଚୟ ଦେଉଥିବା ଏ ସମସ୍ତଙ୍କ ଗହଣରେ ମା' ।

ଶେଖର ଧରିଲା ମା'ର ଦୁଇ ପାପୁଲିକୁ । କାମ କରିବା ଯୋଗୁଁ ଜଣା ପଡୁଚି କଠିନ; ମାତ୍ର ଏଇ ପାପୁଲି ଯେତେବେଳେ ବୁଲି ଆସେ ତା'ର କପାଳ

ଗାଲ, ବେକ, କାନ୍ଧ ଉପରେ, ଜଣାପଡ଼େ ଅତୁଳନୀୟ ଭାବରେ କୋମଳ । ଏତେ କୋମଳ ହାତ କେବଳ ମା'ର ହିଁ ହୋଇପାରେ । ଖରା-ସିଝା ଚମଡ଼ା । କାନ ମୂଳେ କେତୋଟି ଧଳା କେଶ । ଢିଲା ହୋଇଯାଉଚି ମୁହଁର ମାଂସପେଶୀ ।

—"ଆରେ ? ଘରୁ ଯାଇଚୁ ଯେ ଯାଇଚୁ । ତୋତେ ଚାହିଁ ଚାହିଁ ଏଣେ ଯୁଗଟେ ଚାଲିଗଲାଣି ।" ମା' ବଢ଼େଇଦେଲା ତା' ହାତକୁ ଗାମୁଛାଟେ । ଗୋଡ଼-ହାତ ଧୋଇ ହୋଇ ପୋଛିହେବ ।

ଶେଖର କହିଲା ନାଇଁ କିଛି । ଗାଁ, ଘର; ପୁଣି ବାପା-ମା' । ଗୋଟେ ଭିନ୍ନ ପ୍ରକାରର ଆବେଗ । ଏ ଆବେଗର ଲହଡ଼ି ପୁଣି ଏମିତି ଯେ, ମନରୁ ଅନ୍ୟସବୁ ଭାବନାକୁ ଠେଲି ନେଉଚି କାହିଁ କେଉଁଆଡ଼େ । ସ୍ଥଗିତ ରହିବେ ସେମାନେ, ମା'-ବାପାଙ୍କ ପ୍ରତି ଥିବା ଐକାନ୍ତିକତା ବଳବତ୍ତର ଥିବା ପର୍ଯ୍ୟନ୍ତ ।

—"ଚା' ଟିକିଏ କରିବି ?" ମା' ପଚାରିଲା ।

—"ଶୁଣ, ଯା କଥା ! ତୋତେ ପୁଣି ପଚାରିବାକୁ ପଡୁଚି ?" ଶେଖର କହିଲା ଏବଂ ମା' ପଛେ ପଛେ ଗଲା ରୋଷେଇ ଘରକୁ ।

ହିଟର, ଗୋବର ଗ୍ୟାସ୍ ପ୍ଲାଣ୍ଟର ଚୁଲି । ପରିଚ୍ଛନ୍ନ ଦେଖାଯାଉଚି ରୋଷେଇ ଘର । ବିଜୁଳି ଆଲୁଅରେ ଚିକ୍ ଚିକ୍ କରୁଚି ବାସନ-କୁସନ !

—"ବାପା ମଙ୍ଗୁ ନ ଥିଲେ ଏମିତି ଚୁଲି କରିବାକୁ ।" ମା' ଉତ୍ତର ଦେଉଥିଲା ତା' ପ୍ରଶ୍ନର— "ସରକାରୀ ଲୋକ ବୁଝେଇଲେ । ସାହାଯ୍ୟ କଲେ ।" ବେଶ୍ ଖୁସି ଥିଲା ସେ । ପୁଣି କହିଲା— "ସରକାର ଆମ ପାଇଁ କ'ଣ ନ କରୁଛି ? କୂଅ, ବିଜୁଳି ଆଲୁଅ, ଷ୍ଟାଇପେଣ୍ଡ, ଏମିତି ଚୁଲି । ଏମାନଙ୍କୁ ଭୋଟ ନ ଦେଇ ଆଉ କାହାକୁ ଦିଆଯିବ ? ସେତିକିପାଇଁ ପୁଣି କେତେ ଗଣ୍ଡଗୋଳ !" ଶେଖର ଚା' କପ୍ ଗ୍ରହଣ କଲା । ବିଚାରୀ ମା' ! ଯାଭଳି ଲୋକମାନଙ୍କୁ ଆୟତ୍ତ କରାଯାଉଚି ଏଇ ବାଗରେ ।

ପ୍ରାୟ ଘଣ୍ଟାକ ପରେ ବାପା ଫେରିଲେ । ଯାଇଥିଲେ ସଦର ଡାକ୍ତରଖାନା ଫାଦରଙ୍କୁ ଦେଖିବା ପାଇଁ । ପାଞ୍ଚଦିନ ହେଲା ସେ ଡାକ୍ତରଖାନାରେ ଭର୍ତ୍ତି ହେବା ପରଠାରୁ ବାପା ପ୍ରତିଦିନ ଯାଉଚନ୍ତି ଦଶ କିଲୋମିଟର ଅତିକ୍ରମ କରି । ତାଙ୍କର କହିବା କଥା ହେଉଚି, ଫାଦର ଖ୍ରୀଷ୍ଟିଆନ୍ କି ମୁସଲମାନ କି ହିନ୍ଦୁ, ସେଇଟା ବଡ଼ କଥା ନୁହେଁ । ଅସଲ ଜିନିଷ ହେଉଚି, ଏଠାକାର ଲୋକମାନଙ୍କ ପାଇଁ ସେ ବହୁତ ସାହାଯ୍ୟ କରିଚନ୍ତି । ଔଷଧ ବାଣ୍ଟିଚନ୍ତି ମାଗଣାରେ । ପିଲାଙ୍କୁ ପାଠ ପଢ଼େଇଚନ୍ତି । ପାଠପଢ଼ିବାରେ ସାହାଯ୍ୟ କରିଚନ୍ତି, ଯେମିତି ଶେଖରକୁ

ସାହାଯ୍ୟ କରିଥିଲେ । ଲୋକଙ୍କୁ ଖ୍ରୀଷ୍ଟିଆନ୍ କରିବା ଥିଲା ତାଙ୍କର ମତଲବ । ହଉ, ହେଲା । କ'ଣ କ୍ଷତି ହେଲା ସେଥିରେ ? କାହାକୁ ସେ ବାଧ୍ୟ କରିଚନ୍ତି ଏଥିପାଇଁ ? କାଇଁ, କୌଣସି ଦିନ ସେ କହି ନାହାନ୍ତି ଯେ ଶେଖରକୁ ଏଇ ଯେଉଁ ସାହାଯ୍ୟ ସେ କରୁଚନ୍ତି, ସେଥିପାଇଁ ଶେଖର ଧର୍ମ ବଦଳେଇବା ଦରକାର । ଲୋକମାନେ ଯଦି ତାଙ୍କ ଦୟାପାଇ ଏମିତି କଲେ, ସେଥିପାଇଁ ତାଙ୍କୁ ଏମିତି ନୃଶଂସ ହୋଇ ମାରିବା କ'ଣ ମଣିଷପଣିଆ ?

ବାପା ଯଥେଷ୍ଟ ଉତ୍ତେଜିତ ଥିଲେ ଏଥିପାଇଁ । ଫାଦରଙ୍କୁ ସେ ଗଭୀର ଶ୍ରଦ୍ଧା ଓ ସମ୍ମାନ କରୁଥିଲେ ବୋଲି । ଶେଖର ପ୍ରଶ୍ନର ଉତ୍ତର ଦେଇ କହିଲେ— "ନା, ହାତ କାଟିବା ଦରକାର ହେବ ନାହିଁ । ଡାହାଣ ହାତ ଭାଙ୍ଗିଯାଇଚି । କରାଯାଇଚି ପ୍ଲାଷ୍ଟର । ଦେହରେ ଅନେକ କ୍ଷତ । କେଜାଣି କେତେ ଦିନ ରହିବାକୁ ପଡ଼ିବ, ଡାକ୍ତରଖାନାରେ ?"

ପରଦିନ ଡାକ୍ତରଖାନା । ଫାଦର କେବଳ ଯେ ଅବିଚଳିତ ଦେଖାଯାଉଥିଲେ ତା' ନୁହେଁ; ଆଗଭଳି ତାଙ୍କ ମୁହଁରେ ଥିଲା ପ୍ରଶାନ୍ତ ଭାବ ଏବଂ ଗଭୀର ଆଶାବାଦ । ହସ ହସ ମୁହଁରେ ସେ ସୂଚେଇ ଦେଲେ ଯେ ଶେଖରକୁ ଦେଖି ସେ ଯଥେଷ୍ଟ ସନ୍ତୋଷ ଓ ତୃପ୍ତି ଅନୁଭବ କରୁଚନ୍ତି— ଗଡ୍ ବ୍ଲେସ୍ ୟୁ, ମାଇଁ ସନ୍ !

ଅନେକ ଲୋକ ଥିଲେ ତାଙ୍କ ପାଖରେ ଚିନ୍ତିତ ଓ ମ୍ରିୟମାଣ ମୁହଁ ନେଇ । ସେମାନଙ୍କଠାରେ ଥିଲା ପ୍ରତିହିଂସା ଓ ଘୃଣା । ଶେଖର ବସିଲା ଗୋଟେ ଷ୍ଟୁଲ୍‌ରେ । ବ୍ୟାଣ୍ଡେଜ ଓ ପ୍ଲାଷ୍ଟର ଘୋଡ଼େଇଥିବା ଦେହ ଦେଖି ସେ କଂପିଉଠିଲା ତୀବ୍ର ସମ୍ବେଦନା ଓ ଦୁଃଖରେ । ସେ ଜାଣିବାକୁ ଚାହୁଁଥିଲା, ଫାଦରଙ୍କର ପ୍ରତିକ୍ରିୟା କ'ଣ ଏବଂ ଏ ସଂପର୍କରେ ସେ କେଉଁ ପଦକ୍ଷେପ ନେବେ ।

— "ପ୍ରତିକ୍ରିୟା ଆଉ ପଦକ୍ଷେପ !" ଫାଦର ସତେଯେପରି ଜୀବନରେ ପ୍ରଥମଥର ପାଇଁ ଶୁଣୁଚନ୍ତି ଏଇ ଭୟଙ୍କର ଶବ୍ଦକୁ । ତାଙ୍କ ହସ ପ୍ରସାରିତ ହେଲା । କହିଲେ— "ଏଇଟା ଗୋଟେ ମାମୁଲି ଆକ୍‌ସିଡେଣ୍ଟ । ମୁଁ ଚଞ୍ଚଳ ଏ ଡାକ୍ତରଖାନାରୁ ମୁକ୍ତ ହେବାକୁ ଚାହେଁ । ପୁଣି କାମ ପାଖକୁ ଫେରିଯିବା ପାଇଁ ବ୍ୟସ୍ତ ହେଉଚି ମୁଁ । ମୋତେ ଏ ପୋଲିସ୍ ଏବଂ କେତେଜଣ ସାମ୍ବାଦିକ କାହିଁକି ବ୍ୟସ୍ତ କରୁଚନ୍ତି ମୁଁ ଜାଣି ପାରୁ ନାହିଁ । ମୁଁ ତାଙ୍କୁ ବାରମ୍ବାର କହୁଚି ଯେ ଏଇ ବ୍ୟାପାରରେ ମୋର କିଛି ମଧ୍ୟ କହିବାର ନାଇଁ । ପୋଲିସ୍ କହୁଚି ଯେ ଅପରାଧଟେ ଘଟିଚି । ଅନୁସନ୍ଧାନ କରିବା ଓ ଅପରାଧୀକୁ ଚିହ୍ନଟ କରି ଶାସ୍ତି ଦେବା ହେଉଚି ତାଙ୍କ କାମ । ସେମାନେ ପୁଣି କହୁଚନ୍ତି ଯେ ମୋର ଉଦାରତା ଏବଂ କ୍ଷମାଶୀଳତା

ସହିତ ଆଇନ୍ କାନୁନ୍‌ର ଅଗ୍ରଗତିର ସଂପର୍କ ନାହିଁ । ମୁଁ ଜାଣିପାରୁ ନାହିଁ ମୋତେ ଉଦାର ଆଉ କ୍ଷମାଶୀଳ ବୋଲି ବର୍ଣ୍ଣନା କରାଯାଉଚି କାହିଁକି । ମୁଁ ପ୍ରଭୁ ଯୀଶୁଙ୍କର ଜଣେ ନଗଣ୍ୟ ସେବକ ।''

ପ୍ରାୟ ଘଣ୍ଟାଏ ପରେ ଶେଖର ଉଠିଲା । ସାଇକେଲ ଆଣିବା ବେଳେ ତା' ପାଖରେ ଅଟକିଗଲା ମୋଟର ସାଇକେଲ୍‌ଟେ । ଖାକି ପୋଷାକ ପରିହିତ ପୋଲିସ୍ ଅଫିସର ମୁଣ୍ଡରୁ ଟୋପି ବାହାରକରି ଆନନ୍ଦରେ ଏକରକମ ଚିତ୍କାର କରି ଉଠିଲେ – ହାଲୋ, ଶେଖର ।

ଶେଖରକୁ ଗୋଟିଏ ମୁହୂର୍ତ୍ତ ମଧ୍ୟ ଲାଗିଲା ନାହିଁ ସୁରେନ୍ଦ୍ରକୁ ଚିହ୍ନିବା ପାଇଁ । ଖାକି ପୋଷାକ, ବିପୁଳ ସ୍ୱାସ୍ଥ୍ୟ ଓ ଆତ୍ମବିଶ୍ୱାସର ପଲସ୍ତରା ଖସି ପଡୁଥିଲା । ପ୍ରକାଶିତ ହୋଇ ଯାଉଥିଲା ହାଇସ୍କୁଲର କ୍ଲାସ୍‌ମେଟ୍, ହଷ୍ଟେଲର୍ ରୁମ୍‌ମେଟ୍ ସୁରେନ୍ଦ୍ର । ଫୁଟ୍‌ବଲ ଖେଳରେ ପାରଙ୍ଗମ, ସଂସ୍କୃତ ଭାଷାରେ ଦୟନୀୟ ଭାବେ ଦୁର୍ବଳ ସୁରେନ୍ଦ୍ର ।

ସେ ଗଦ୍‌ଗଦ୍ ହୋଇ ପଡ଼ିଲା । କୁଣ୍ଢେଇ ପକାଇଲା ଶେଖରକୁ ସେ ଅଣନିଃଶ୍ୱାସୀ ହେବା ଯାଏ । ତା'ର ମୁଣ୍ଡ, ଗାଲ, ହାତ ଉପରେ ବାରମ୍ବାର ବୁଲାଇ ଆଣିଲା ହାତ ତାକୁ ଆହୁରି ଅନ୍ତରଙ୍ଗ ଭାବରେ ଅନୁଭବ କରିବା ପାଇଁ । କହିଲା – ''ଆରେ, ତୁ ୟା ଭିତରେ ପ୍ରଫେସର ହୋଇସାରିଲୁଣି ବୋଲି ମୁଁ ଶୁଣିଚି । ହେଲେ, କାଇଁ ? ଦେଖାଯାଉଚୁ ପିଲାଙ୍କ ଭଳି । କଲେଜ ପିଲା ଭଳି ଦେଖାଯାଉଚୁ ତୁ ।''

ଟିକିଏ ରହି ପୁଣି କହିଲା ପ୍ରଗଲ୍‌ଭ ହୋଇ – ''ତୁ ଆଗ ଆ ମୋ ବସା ଆଡ଼େ । ସେଇଠି କଥାବାର୍ତ୍ତା ।'' ମୋଟର ସାଇକେଲରେ ଷ୍ଟାର୍ଟ ମାରି ନିର୍ଦ୍ଦେଶ ଦେଲା – ''ବସ୍ ।''

– ''ଆରେ, ମୋ ସାଇକେଲ ?''

– ''ମାର୍ ଗୁଲି ତୋ ସାଇକେଲକୁ ! ସାଇମନ୍ ସାଙ୍ଗର ସାଇକେଲ ! ପୋଖତ ସାଇକେଲ ଚୋର ବି ସାହସ କରିବ ନାହିଁ ତାକୁ ଛୁଇଁବା ପାଇଁ । ଆରେ, ବସ୍ । ତୋତେ କ'ଣ ଛାଡ଼ିଦେବି ବୋଲି ଭାବୁଚୁ ?'' ସୁରେନ୍ଦ୍ର ଏକରକମ ଅଲଂଘନୀୟ ନିର୍ଦ୍ଦେଶ ଦେଲା ।

ତିନି-ଚାରି ମିନିଟ୍ ପରେ ୟାସ୍‌ବେଷ୍ଟସ୍ ଢଙ୍କା ଘର । ଗାଡ଼ିରେ ଷ୍ଟାଣ୍ଡ ମାରୁ ମାରୁ ସୁରେନ୍ଦ୍ର ପାଟି କଲା – ''ଆରେ, ଦେଖ ଏଣେ, କାହାକୁ ମୁଁ ସାଙ୍ଗରେ ଆଣିଚି । ଶେଖର; ଯାହା ବିଷୟରେ ତୁମକୁ ଅନେକ ଥର କହିଚି ।''

ରୁମ୍‌ରେ ପଶୁ ପଶୁ ଶେଖରର ଦୃଷ୍ଟି ପଡ଼ିଲା ସାମନା କାନ୍ଥରେ ଥିବା ଯୀଶୁଙ୍କ ଚିତ୍ର ଉପରେ । ଚାରୋଟି ସାଧାରଣ ନାଇଲନ୍ ବୁଣା ଚେୟାର । ଟି-ପୟ । ଗୋଟେ ଷ୍ଟୁଲ୍‌ରେ ଟେବୁଲ୍ ଫ୍ୟାନ୍ ।

ସୁରେନ୍ଦ୍ରର ପତ୍ନୀ । ବିଶେଷତ୍ୱହୀନ ସ୍ତ୍ରୀଟିଏ । ସାବନା ରଙ୍ଗ, ଭଲ ସ୍ୱାସ୍ଥ୍ୟ, ହସହସ ମୁହଁ । ଶସ୍ତା ଶାଢ଼ି । ସୁରେନ୍ଦ୍ର କହିଲା– "ଇଏ ହେଉଚି ଭାଲେଣ୍ଟିନା । ଏକାବେଳେ ପତ୍ନୀ, ଗାର୍ଡ଼ିଆନ୍, ମାଲିକାଣୀ, ଚାକରାଣୀ । ଯିଏ ଯାହା ଭାବି ପାରିଲା । ଶୁଣ, ଆମେ ସାଙ୍ଗ ହୋଇ ଖାଇବୁ ।" ଶେଖର ଆପତ୍ତି କଲାବେଳେ ସେ କହିଲା– "ସେ ନାହିଁ ନାହିଁ କହୁଥାଉ । ମୁଁ କ'ଣ ଶୁଣିବା ଲୋକ ହୋଇଚି ?"

ସେ ଯିବା ପରେ ଶେଖର ପଚାରିଲା– "ତୁ ତେବେ ଖ୍ରୀଷ୍ଟିଆନ୍ ହୋଇ ସାରିଚୁ ?"

–"ହଁ ।" ଘୋଷଣା କଲା ସେ ଗର୍ବର ସହିତ । ଯୋଗ କଲା– "କିଛି ସମୟ ପୂର୍ବେ ତୋତେ କହୁଥିଲି ନା, ମୁଁ ସାଇମନ୍ ବୋଲି ।"

ଶେଖର ହୁଏତ ଜାଣିବାକୁ ଚାହିଁଲା, ଏମିତି କରିବାର କାରଣ କ'ଣ । ସାଇମନ ଓଲଟା ପଚାରିଲା– "ତୁ ପୁଣି ଜାଣିବାକୁ ଚାହୁଁଚୁ କାରଣ କ'ଣ ? ତୋତେ ବୁଝେଇବାକୁ ପଡ଼ିବ ?"

–"ନାଇଁ, ନାଇଁ ।" ଶେଖର କହିଲା– "ମୁଁ ଜାଣିବାକୁ ଚାହୁଁଥିଲି, କିଛି ଘଟଣା ଘଟିଥିବ, ଏଭଳି ପଦକ୍ଷେପ ନେବା ପାଇଁ ।"

–"ଘଟଣା ପୁଣି କ'ଣ ?" ସାଇମନ କହିଲା– "ସେମିତି ଦେଖିବାକୁ ଗଲେ ପ୍ରତିଦିନ, ପ୍ରତି ମୁହୂର୍ତ୍ତରେ ତ ଏଭଳି ଘଟଣା ଘଟେ । ଏକ ଆଦିମ, ଦୂଷିତ, ଆପତ୍ତିଜନକ ମାନସିକତା ଆଉ ମନୋଭାବର ଶିକାର ହୋଇ ମଣିଷ କେତେ ଦିନ ରହିପାରିବ ? ତୁ ଆଉ ଯାହା କହ, ଆମକୁ ଛୁଇଁଦେଲେ ଜାତି ଚାଲିଯିବ, ଆମେ ନିମ୍ନ ସ୍ତରର ଲୋକ ବୋଲି ସବୁବେଳେ ନତମସ୍ତକ ହୋଇଥିବୁ ।" ସେ ମୁଣ୍ଡ ହଲାଇଲା କଥାଟାକୁ ପ୍ରତ୍ୟାଖ୍ୟାନ କଲା ଭଳି । କହିଲା– "ମୋଟେ ନୁହେଁ । କ'ଣ ନା ଉଚ୍ଚ ଜାତିର ଲୋକ । ବେଶି ପବିତ୍ର ! ମାଇଁ ଫୁଟ୍ !"

ସହଜରେ ଉତ୍ତେଜିତ ହୋଇପଡୁଥିବା ସାଇମନ ସଂଯତ କଲା ନିଜକୁ । ହସିଲା– "ତୁ ମନେରଖିଚୁ କି ନାଇଁ କେଜାଣି, ଆମ ଗାଁ ପାହାଡ଼ିଆ ଅଞ୍ଚଳରେ । ଗୋଟେ ପୋଲିସ୍ ଅଫିସର ଅଭିଯୋଗ ପାଇ ଆମ ସଂପ୍ରଦାୟର ଜଣେ ଲୋକଙ୍କୁ

ଚୋରି ଅପରାଧରେ ସନ୍ଦେହ କଲା । ବଚସା ହେଲା ପ୍ରଥମେ । ଅଫିସର କହିଲା— ଶଳା ମୁଣ୍ଡା, ମୁଁ ଭଲ କରି ଚିହ୍ନିଚି ତୁମ୍ଭମାନଙ୍କୁ । ହାଣ୍ଡିଆ ପିଇ ମାତାଲ ହେବ । ସେଇଠୁ ଯାବତୀୟ ଦୁଷ୍କର୍ମ କରିବ । ଚାଲ୍, ଶଳା ଥାନାକୁ ।''

ସାଇମନ ନିରବ ରହିଲା ଟିକିଏ । କହିଚାଲିଲା— ''ଏ ଲୋକଜଣକୁ ବାଧିଲା । ଶକ୍ତ ଚାପୁଡ଼ାଟେ ଦେଲା ଅଫିସର୍‌ର ବେଲୁନ୍ ଭଳି ଗାଲ ଉପରେ ।''

ବିସ୍ମିତ ହେଲା ନାଇଁ ଶେଖର ଏ କଥା ଶୁଣି । ସେ ଭଲ କରି ଜାଣେ ଏମାନଙ୍କର ମଗଜକୁ । ସେ ଲୋକକୁ ନିଆଗଲା ଥାନାକୁ । ପରଦିନ ଥାନାରୁ ଆବର୍ଜନା ଭଳି ବାହାରିଲା ତା' ଶବ ।

—''ଲୋକଟାକୁ ମାରିଦେଲେ ?'' ଶେଖର ସ୍ୱରରେ ମିଶିଥିଲା ଆତଙ୍କ, ଦୁଃଖ ଓ ପ୍ରତିବାଦ ।

—''ଅଳ୍ପ ଦିନ ମଧ୍ୟରେ ତାହା ଥିଲା ତୃତୀୟ କଷ୍ଟଡ଼ିଆଲ୍ ଡେଥ୍ !'' ସାଇମନ କହିଲା ଯନ୍ତ୍ରଣା ଓ ଶୋକ ଜର୍ଜରିତ ସ୍ୱରରେ । ଦମ୍ ନେଲା ଟିକିଏ । କହିଲା— ''ତା ପୂର୍ବରୁ ଦୁଇଜଣ ହାଜତରେ ମରିଥିବା ଘଟଣା ଟିକିଏ ହେଲେ କେଉଁଠି ହଇଚଇ ସୃଷ୍ଟି କରି ନ ଥିଲା । ଏଥର କିନ୍ତୁ ପାଟିତୁଣ୍ଡ ହେଲା । ଥାନା ଘେରାଉ ପର୍ଯ୍ୟନ୍ତ କଥା ଗଲା । ଆସେମ୍ବ୍ଲିରେ ଏ ପ୍ରସଙ୍ଗ ଉଠିଲା । କାଇଁ, କିଛି ହେଲା ନାଇଁ ।''

ଦ୍ୱିତୀୟ ଘଟଣାରେ ମଧ୍ୟ କିଛି ବୈଚିତ୍ର୍ୟ ନ ଥିଲା । ରେପ୍‌ର ଶିକାର ହେଲା ତା' ସଂପ୍ରଦାୟର ଗୋଟେ ଝିଅ । ତା' ବାପା ଗଲା ଥାନାକୁ ଅଭିଯୋଗ ନେଇ । ତାକୁ ପଚରାଗଲା, କଣ୍ଟ୍ରାକ୍ଟର ଜଣକ ଝିଅକୁ ରେପ୍ କରିଚି ବୋଲି କିଛି ପ୍ରମାଣ ଅଛି କି । ବାପା ଜଣକ ଆବାକାବା ହୋଇ ଚାହିଁଲା ଚାରିଆଡ଼କୁ । ପ୍ରମାଣ ସେ ପାଇବ କେଉଁଠୁ ? ପଳେଇଆସିଲା ସେଠାରୁ । ପଥରରେ ଘଷି ଟାଙ୍ଗିଆର ଧାର ପରୀକ୍ଷା କଲା । ତିଆରି ଚାଲିଥିଲା ପୋଲ । ଗୋଟେ ତମ୍ବୁରେ ରହେ କଣ୍ଟ୍ରାକ୍ଟର । ରାତିରେ ବାପାଜଣକ ସେଠାରେ ପହଞ୍ଚି ଦେଖିଲା, ଅଫିସର ସହିତ କଣ୍ଟ୍ରାକ୍ଟର ନିର୍ଧୂମ୍ ପିଉଚି ଓ ଖାଉଚି । ଗୋଟିଏ ଚୋଟରେ କଟିଲା ନାଇଁ ତା'ର ବେକ । ବାରମ୍ବାର ହାଣିବାକୁ ପଡ଼ିଲା । କଟାମୁଣ୍ଡଟା ଧରି ସେ ଗଲା ପୋଲ ତିଆରି ପାଖକୁ । ନଈ ଭିତରୁ ଉଠି ଆସୁଥିଲା ପିଲର୍ । ଗୋଟିଏ ପିଲର ତଳେ ଥୋଇଲା କଟାମୁଣ୍ଡ । ତା' ଉପରକୁ ଛେପ ପକାଇଲା ବାରମ୍ବାର । ସେତେବେଳକୁ ଅଫିସର ନ ଥିଲା ସେ ଖଣ୍ଡମଣ୍ଡଳରେ ।

ସାଇମନ୍ ଚାହିଁଲା ଶେଖର ମୁହଁକୁ । ରୋମାଞ୍ଚକର ଓ ଭୟଙ୍କର ଜଣାପଡୁଥିଲେ ମଧ୍ୟ ଏମିତି ଘଟଣା ଘଟେ ଆଦିବାସୀ ବହୁଳ ଅଞ୍ଚଳରେ । ଏମାନଙ୍କର ପ୍ରବୃତ୍ତି ପ୍ରକାଶିତ ହୁଏ ପ୍ରଚଣ୍ଡ ଉଗ୍ରତା ଓ ନିର୍ଭୀକତାର ସହିତ । ଏମାନଙ୍କୁ ସ୍ନେହ-ଶ୍ରଦ୍ଧା ଦେଖାଇଲେ ଏମାନେ ଅତୁଳନୀୟ ଭାବରେ କୋମଳ, ବିଶ୍ୱସ୍ତ ଓ ବନ୍ଧୁଭାବାପନ୍ନ ହୋଇଥାନ୍ତି । ମାତ୍ର ଟିକିଏ ଉସ୍‌କେଇଲେ ଏମାନେ ହୋଇପଡ଼ନ୍ତି ଅନିୟନ୍ତ୍ରିତ, ପ୍ରତିଶୋଧପରାୟଣ ଓ ହିଂସ୍ର ।

''ଏହାର ପରିଣିତି ଥିଲା ସ୍ୱାଭାବିକ ।'' – ସାଇମନ କହିଲା ନିମ୍ନ ସ୍ୱରରେ – ''ବାପା ଫାଶୀ ପାଇଲା । ଝିଅକୁ ବାହାହେଲା ଜଣେ ଖ୍ରୀଷ୍ଟିଆନ୍ ।''

ଶେଖରର ଅଭ୍ୟନ୍ତରରେ ପ୍ରବାହିତ ହେଲା ଏକ ସ୍ନିଗ୍ଧ, ଶାନ୍ତ ଲହଡ଼ି । ଏ ଲହଡ଼ି ସ୍ପର୍ଶ କଲା ତା'ର ପ୍ରତ୍ୟେକ ଲୋମକୂପକୁ । ଭିଜାଇ ଦେଲା ତା'ର ନୈରାଶ୍ୟ ଓ ଅସହାୟତାର ଶୁଖିଲା ଅଞ୍ଚଳକୁ ।

ସାଇମନ ଶେଷ କଲା ନିଜ କଥା– ''ଏଇ ଘଟଣା ପରେ ପରେ ଆମ ସଂପ୍ରଦାୟର ଅନେକ ଲୋକ ଖ୍ରୀଷ୍ଟିଆନ୍ ହୋଇଗଲେ । ଅବଶ୍ୟ ଏଥିପାଇଁ ମୋତେ କେତେ ଲୋକଙ୍କୁ ପ୍ରବର୍ତ୍ତେଇବାକୁ ପଡ଼ିଥିଲା ।''

ଶେଖରର ଅନୁମାନ ଭୁଲ ପ୍ରମାଣିତ ହେଲା । ସେ ଆଶଙ୍କା କରିଥିଲା ଯେ ଫାଦର ଯୋଶେଫଙ୍କ ଦ୍ୱାରା ପ୍ରତିଷ୍ଠିତ ମିଶନାରୀର ବହୁଳ କ୍ଷତି ଘଟିଥିବ ହିଂସାକାଣ୍ଡ ଦ୍ୱାରା । ଅବଶ୍ୟ ବେଶି ପରିମାଣର ଚଢ଼ଉ ହୋଇଥିଲା ସ୍କୁଲ କୋଠା ଉପରେ । ଗୋଟେ-ଦୁଇଟି ରୁମ୍‌ରେ କୁଆଡ଼େ ନିଆଁ ଲଗେଇ ଦିଆଯାଇଥିଲା ପେଟ୍ରୋଲ ଯୋଗେ । କବାଟ-ଝରକା, ବେଞ୍ଚ-ଡେସ୍କ କ୍ଷତିଗ୍ରସ୍ତ ହୋଇଚି । ଡିସ୍‌ପେନ୍‌ସାରୀର ଆସବାବ ଧ୍ୱଂସ ପାଇଚି । ଲୁଟ୍ କରାଯାଇଚି ଔଷଧ । ତଥାପି ଭୟ ଓ ଆଶଙ୍କା ଘୋଡ଼େଇ ରଖିଚି ପରିସରକୁ । ଚାରିଆଡ଼େ ଖାଁ ଖାଁ ନିରବତା । ଏ ମିଶନାରୀ ବନ୍ଦ ନ କଲେ ଭୟାବହ ପରିସ୍ଥିତି ସୃଷ୍ଟି ହେବ ବୋଲି ଧମକ ଦିଆଯାଇଚି ।

ଶେଖର ଜାଣେ, ଏ ବ୍ୟାପାରରେ ତା'ର କୌଣସି ଭୂମିକା ନାହିଁ । ବେଶି କିଛି ଘଟିବ ନାହିଁ ଯା ପରେ । ଗୁଡ଼ାଏ ଲୋକଙ୍କୁ ପୁଣି ମୂଳ ଧର୍ମକୁ ଫେରାଇ ଆଣିବା ପାଇଁ ଯୋଜନା ହେଉଚି । ଏଥିପାଇଁ ଯଜ୍ଞ, ମନ୍ତ୍ରଧ୍ୱନି ଇତ୍ୟାଦି ଅନୁଷ୍ଠିତ ହେବ । ସବୁ ଜଣାପଡୁଚି ଗୋଟେ ହାସ୍ୟରସପୂର୍ଣ୍ଣ, ନିମ୍ନମାନର ଫାର୍ସ ଭଳି ।

ଦୁଇ ଦିନ ପରେ କଲେଜ । ଖୋଲିବା ପାଇଁ ତଥାପି ଅଛି ଆହୁରି ଦୁଇଦିନ । ଆଉ ଦୁଇଦିନ ପରେ ସେ ଫେରିପାରିଥାନ୍ତା । ବାପା-ମା ଅଟକାଉଥିଲେ । ଏତେ ତରତର ହୋଇ ଫେରିଆସିଲା କାହିଁକି ? ପଢ଼ାପଢ଼ି କରିବ ବୋଲି

କହିଥିଲା ଯେ, ସତରେ କ'ଣ ପଢ଼ିବ ? ବହି-ଖାତା ଇତ୍ୟାଦି ହୁଏତ ମୁକ୍ତ ହୋଇଚନ୍ତି କାର୍ଟୁନ୍ ଓ ରଶିର ପିଞ୍ଜରାରୁ । ତା'ପରେ କେବଳ ଅନ୍ୟମନସ୍କ ହୋଇ ସେ କେତୋଟି ବହିର ପୃଷ୍ଠା ଓଲଟାଇଚି । କୌଣସି ଅକ୍ଷର ଆସିପାରି ନାଇଁ ତା' ନଜରକୁ । ସମସ୍ତ ଅକ୍ଷର ପରିଣତ ହୋଇଯାଇଚନ୍ତି ମନିକାର ମୁହଁରେ । ବହି-ଖାତା ପାଲଟିଯାଇଚନ୍ତି ଗୋଟେ ଗୋଟେ ଆଲ୍‌ବମ୍ । ପୃଷ୍ଠା ଓଲଟାଇଲେ କେବଳ ମନିକା ହିଁ ମନିକା ।

ଶେଖରର ସାଇକେଲ ଗେଟ୍ ପାଖରେ ପହଞ୍ଚିବା ବେଳେ ଶ୍ରୀମତୀ ରଥ ଠାକୁର ପୂଜା ପାଇଁ ପ୍ରସ୍ତୁତ ହେଉଥିଲେ । ପର୍ଟିକୋ ତଳ ଫାଙ୍କା । ଇଂଜିନିୟର ଫେରି ନାହାନ୍ତି । ବାରନ୍ଦା ଉପରେ ଠିଆହୋଇ ଶ୍ରୀମତୀ ରଥ ଚାକରାଣୀକୁ ଡାକିବାକୁ ଯାଉଥିଲେ ଗେଟ୍ ଖୋଲିବା ପାଇଁ । ଘରୁ ଗୋଟିଏ ପାହୁଣ୍ଡରେ ଗେଟ୍ ପାଖରେ ମନିକା । ସବୁଥର ଭଳି ସାର୍‌ଙ୍କ ହାତରୁ ସାଇକେଲ୍ ନେଲା । ଶେଖର ବାରନ୍ଦା ଉପରକୁ ଗଲାବେଳେ ଶ୍ରୀମତୀ ରଥଙ୍କର ହସ ହସ ମୁହଁ ।

—"ସାର୍ ବୋଧହୁଏ ଗାଁକୁ ଯାଇଥିଲେ ।"

—"ହଁ, ମାଡ଼ାମ୍ । ଅଚାନକ ଚିଠି ପହଞ୍ଚିଲା । ନ ଯାଇ ଉପାୟ ନ ଥିଲା । ଫୋନ୍‌ଟିଏ କରିବାକୁ ମଧ୍ୟ ଫୁରୁସତ ମିଳିଲା ନାଇଁ ।" ଶେଖର କହିଲା, ଅବଶ୍ୟ ଆଦୌ କ୍ଷମାପ୍ରାର୍ଥୀ ନ ହୋଇ ।

ମାଡ଼ାମ କିଛି କହିବେ କି ନାଇଁ ବୋଲି ଚିନ୍ତା କଲେ । ପଚାରିଲେ— "ମୁଁ ଭାବୁଚି ଘରେ ସମସ୍ତେ ଭଲ ଅଛନ୍ତି ।"

—"ଖବରଟା ଘରେ କାହାରି ଅସୁସ୍ଥତା ସଂପର୍କରେ ନ ଥିଲା, ମାଡ଼ାମ ।" କହିଲା ଶେଖର— "ବାପା-ମା ଭଲ ଅଛନ୍ତି । ବାପା କେବଳ ଜଣେଇଥିଲେ ଫାଦର ଯୋଶେଫଙ୍କ ଉପରେ ହୋଇଥିବା ଚଢ଼ଉ ବିଷୟରେ । ମୋତେ ଗାଁକୁ ଯିବାପାଇଁ ମଧ୍ୟ କୁହାଯାଇ ନ ଥିଲା । ଆପଣଙ୍କୁ ଆଗରୁ କହିଥିଲି, ଫାଦରଙ୍କ ପାଖରେ ମୁଁ କେତେ ଋଣୀ । ତାଙ୍କୁ ଟିକିଏ ଦେଖାକରିବା ପାଇଁ ବ୍ୟାକୁଳ ହୋଇପଡ଼ିଲି ।"

—"ସିଓର ! ତାହା ନିହାତି ସ୍ୱାଭାବିକ କଥା । ଏନି ୱେ, ଘରେ ସମସ୍ତେ ଭଲ ଅଛନ୍ତି ଶୁଣି ମୁଁ ଯଥେଷ୍ଟ ଆଶ୍ୱସ୍ତ ହୋଇଚି । ମୋର ବିଶ୍ୱାସ, ଫାଦର ବି ଭଲ ହୋଇଯିବେ । ଆପଣ ପଢ଼ାପଢ଼ି କରୁଥାନ୍ତୁ । ଖାଇବାବେଳେ ସବୁ କଥା କହିବେ ।" ସେ ଗଲେ ପ୍ରାର୍ଥନା କରିବା ପାଇଁ ।

ଶେଖର ଆସିଲା ପଢ଼ାଘରକୁ । ମନିକା ଥିଲା ସେଠାରେ । କିଛି କହିଲା ନାହିଁ । ଶେଖର କେତୋଟି ନୋଟ ଉପରେ ଦୃଷ୍ଟିପାତ କଲା ।

—"ସାର୍, କେତେ ସହଜରେ କହିପାରିଲେ ଯେ, ଫୋନ୍‌ଟିଏ କରିବାକୁ ମଧ୍ୟ ଫୁରୁସତ ମିଳିଲା ନାହିଁ ?" କିଛି ସମୟ ପରେ ମନିକା କହିଲା ।

ଶେଖର ମୁଣ୍ଡ ଟେକି ଚାହିଁଲା । ହସିଲା— "ସତ କଥା କହିବା ସବୁବେଳେ ସହଜ । ଫୁରୁସତ ମିଳିଲା ନାହିଁ ।"

ପୁଣି ଟିକିଏ ପରେ— "ସାର୍, ଏମିତି ଆଉ କେବେ କରିବେ ନାହିଁ ।"

—"କେଉଁ କଥା ?" ଶେଖର ବାସ୍ତବିକ ବୁଝିପାରିଲା ନାହିଁ ।

—"ଏମିତି କିଛି ଖବର ନ ଦେଇ ଆପଣ କିପରି ପଳେଇଯାଇ ପାରିଲେ, ସାର୍ ? କେମିତି ?" ମନିକା ଏମିତି ମ୍ରିୟମାଣ ଦେଖାଯିବ ବୋଲି ବିଶ୍ୱାସ ନ ଥିଲା ଶେଖରର— "ମୁଁ ଏଣେ ଅଥୟ ହେଉଚି, ବ୍ୟସ୍ତ ହେଉଚି ଯେ କାହିଁରେ କ'ଣ । ସାଙ୍ଗ ପାଖରେ କାମ ଅଛି ବୋଲି କହି ଦୁଇ ଦୁଇଥର ମୁଁ ଆପଣଙ୍କ ହଷ୍ଟେଲରେ ।"

—"କ'ଣ ହେଲା !" ଆଶ୍ଚର୍ଯ୍ୟ ହୋଇଯାଇଥିଲା ଶେଖର— "ତୁମେ ହଷ୍ଟେଲ ଆଡ଼େ ପଳେଇ ଯାଇଥିଲ, ମୁଁ ଅଛି କି ନାହିଁ ଜାଣିବା ପାଇଁ ?"

ମନିକା କିଛି କହିଲା ନାହିଁ ଏ ପ୍ରଶ୍ନର ଉତ୍ତରରେ । ଚାହିଁଲା ଶେଖର ମୁହଁକୁ । କହିଲା— "ମୁଁ ସାର, କେବେହେଲେ ଆପଣଙ୍କୁ କହିବି ନାହିଁ ଯେ, ଆପଣ ଗାଁକୁ ଯିବେ ନାହିଁ, ଅନ୍ୟ କେଉଁଆଡ଼େ ଯିବେ ନାହିଁ; କିନ୍ତୁ ଯିବା ଆଗରୁ ମୋତେ ଟିକେ ଜଣେଇଦେବେ । ମୁଁ ନିଶ୍ଚିନ୍ତ ହେବି ଯେ ଆପଣ କେଉଁଠି ଅଛନ୍ତି । ସେତକ ମୋର ଦରକାର ।"

—"ମୁଁ ଦେଖୁଚି, ଛୁଟିରେ ତୁମେ ପ୍ରାୟ ପଢ଼ାପଢ଼ି କିଛି କରିନ ।" ଶେଖର ମନ୍ତବ୍ୟ ବାଢ଼ିଲା ।

—"ଆପଣ ଏଠାରେ ନାହାନ୍ତି । କେଉଁଆଡ଼େ କେଜାଣି ଯାଇଚନ୍ତି । ଏତକ ଯଥେଷ୍ଟ କାରଣ ପଢ଼ାପଢ଼ି ନ କରିବାର ।" ଗମ୍ଭୀର ହୋଇ ଉତ୍ତର ଦେଲା ମନିକା ।

ଠାକୁରଘରର ଘଣ୍ଟ ଧ୍ୱନି ଓ ଅଗରବତିର ମହକ । ଏ ଦୁହେଁ ଚାହିଁ ରହିଲେ ପରସ୍ପରକୁ ଅନେକ ବର୍ଷ ଧରି ଦେଖା ହୋଇ ନ ଥିବା ଭଳି । ଯା ସତ୍ତ୍ୱେ ଦୁହିଁଙ୍କର ଆଖିରେ ଥିଲା ଅପରିସୀମ ଶୋଷ । ଏହା ଆଦୌ ସନ୍ତୁଷ୍ଟ ହୁଅନ୍ତା ନାହିଁ ଶହେ ଜନ୍ମ ଧରି ଏମିତି ଚାହିଁରହିଥିଲେ ମଧ୍ୟ । ଶେଖର ଦୁଇ ପାପୁଲି

ମଧ୍ୟରେ ରଖିଲା ମନିକାର ହାତ । ପ୍ରମାଣ କଲା ଯେ, ତାହାର ଓଠ ମଧ୍ୟ ଆତୁର ହେଉଚି ଶୋଷ ଯୋଗୁଁ । ଏକାଧିକ ବାର ମନିକାର ହାତକୁ ଓଠରେ ଲଗାଇ ପ୍ରତିଶ୍ରୁତି ଦେଲା– "ଯା ପରେ ଏମିତି ହେବ ନାହିଁ । ତେବେ କଲେଜ ଖୋଲିବାର ଦୁଇ ଦିନ ପୂର୍ବରୁ ମୁଁ ଏଠାକୁ ଚାଲିଆସିଲି । କ'ଣ ତା'ର କାରଣ ହୋଇପାରେ ?"

ମନିକାର ପରୀକ୍ଷା । ରଂଜନ ଫୁରୁସତ ପାଉ ନ ଥାଏ ନିଃଶ୍ୱାସ ମାରିବାକୁ । ସର୍ବଭାରତୀୟ ପରୀକ୍ଷା ଓ ବ୍ୟାଙ୍କ୍ ସର୍ଭିସ୍ ପାଇଁ ପରୀକ୍ଷା ତାରିଖ ତାକୁ ଅସନ୍ତୁଷ୍ଟ କରିଥିଲା । ଏସବୁ ବ୍ୟାପାର ସେ ଆଉ ଆଲୋଚନା କରୁ ନ ଥିଲା ଶେଖର ସହିତ । ତା'ର ହୃଦ୍‌ବୋଧ ହୋଇ ଯାଇଥିଲା ଯେ, ଶେଖରର ଏକାଗ୍ରତା ଏବେ ଅନ୍ୟଠାରେ ।

–"ଯଦି ପରୀକ୍ଷା ଦେବୁ ନାହିଁ ବୋଲି ଭାବୁଚୁ, ତେବେ ଫର୍ମ ପୂରଣ କରୁଥିଲୁ କାହିଁକି ?" ରଂଜନ ପଚାରିଲା ।

–"ଭାବିଥିଲି ପଢ଼ାପଢ଼ି କରିପାରିବି ।" କୈଫିୟତ ଦେଉଥିଲା ଶେଖର । "କିନ୍ତୁ ଦିନ ଗଡ଼ିଗଲା । ଏମିତି ଗୋଟେ ବ୍ଲାଙ୍କ୍ ମାଇଣ୍ଡ ନେଇ ପରୀକ୍ଷା ହଲ୍‌କୁ ଯିବାରେ କିଛି ମାନେ ଥାଏ ?"

ରଂଜନ ନିରବ ରହିଲା ଟିକିଏ । ପରେ କହିଲା– "ଫର୍ମ ପୂରଣ କରି ପରୀକ୍ଷା ନ ଦେବାରେ ଗୋଟେ ପରାଜୟ ବୋଧ ନ ଥାଏ କି ? ତୁ ନିଜକୁ କେଉଁ କୈଫିୟତ ଦେବୁ ଏ ସଂକ୍ରାନ୍ତରେ ? ହଁ, ତୁ ଯଦି ଜଣେ ସାଧାରଣ ଛାତ୍ର ହୋଇଥାନ୍ତୁ, ତେବେ ମୋର କହିବାର କିଛି ନ ଥିଲା ।"

–"ଆର ବର୍ଷ ପୁଣି ଫର୍ମ ପୂରଣ କରିବି ।" ଘୋଷଣା କଲା ଶେଖର । ଯୋଗକଲା– "ନ ପାଇଲେ ବି କ୍ଷତି କିଛି ନାହିଁ ।"

ବିବ୍ରତ ହୋଇ ରଂଜନ ଚାହିଁଲା ଶେଖରକୁ । ହତାଶ ହୋଇ ଦୀର୍ଘଶ୍ୱାସ ତ୍ୟାଗ କଲା । ପଚାରିଲା– "ତୋ ଭଳି ପ୍ରାର୍ଥୀମାନେ ସବୁବେଳେ ବଡ଼ ଚାକିରି ପାଇଥାନ୍ତି । ତୁ ଜାଣିଶୁଣି ନିଜକୁ ହଜେଇ ଦେଉଚୁ ବୋଲି ପରେ ଅନୁତାପ କରିବୁ ନାହିଁ ?"

–"ସିଓର୍ଲି ନଟ୍ !" ଦୃଢ଼ତା ଥିଲା ତା' ଜବାବରେ– "ମୁଁ ଜାଣେ, ମୁଁ କ'ଣ କରୁଚି । ନିଜକୁ କେଉଁ ବାଟରେ ନେଉଚି ।"

କହିବ ନାହିଁ ବୋଲି ଭାବୁଥିଲେ ମଧ୍ୟ ରଂଜନ ନିୟନ୍ତ୍ରଣ କରିପାରିଲା ନାହିଁ ନିଜକୁ– "ମୋ କଥାକୁ ଅଯଥା ଅନୁପ୍ରବେଶ ବୋଲି ଭାବିବୁ ନାହିଁ । ତେବେ ମୁଁ କହୁଚି, ତୋ ମୂଳଦୁଆକୁ ଆହୁରି ଦୃଢ଼ କରିପାରିଥାନ୍ତୁ, କଂପିଟେଟିଭ ପରୀକ୍ଷାରେ

କୃତକାର୍ଯ୍ୟ ହୋଇ । ଏହାଠାରୁ କିନ୍ତୁ ପ୍ରେମ ବ୍ୟାପାରଟା ଆହୁରି ବେଶି ଗୁରୁତ୍ୱପୂର୍ଣ୍ଣ ବୋଲି ତୁ ମନେ କଲୁ ।''

ଦେହ ଉପରେ ଉତୁରି ଆସିଲା ଝାଳ । ଅପ୍ରତିଭ ଦେଖାଗଲା ଶେଖର । ପଚାରିଲା ନକଲି ହସ ହସି– ''ପ୍ରେମ ବ୍ୟାପାର ପୁଣି ଗୋଟେ କ'ଣ ?''

ରଂଜନ ଆମୋଦିତ ହୋଇ ଚାହିଁଲା ଶେଖରକୁ; ଯେ'କି ମନିପର୍ସରୁ ଚୋରି କଲାବେଳେ ଧରାପଡ଼ି ଯାଇଥିବା ଗୋଟେ ଛୋଟ ପିଲା ଭଳି ଦେଖାଗଲା । କହିଲା– ''ଆମେ ଅବଶ୍ୟ ଏ ବିଷୟରେ ବହୁତ କିଛି ଜାଣିନୁ; ମାତ୍ର ଏଠାରେ ଚାପା ଗୁଞ୍ଜରଣଟେ ସୃଷ୍ଟି ହୋଇଯାଇଚି । ତୁ ମନିକାକୁ ଭଲ ପାଉଚୁ ।''

–''ଭଲ ପାଉଚି କ'ଣ ?'' ନିଜର ନିରୀହତା ପ୍ରକାଶ କରୁଥିଲା ଶେଖର । ''ତା' ଅଭିଭାବକ ମୋତେ ଅନୁରୋଧ କଲେ । ତା' ପଢ଼ାପଢ଼ିରେ ମୁଁ ସାହାଯ୍ୟ କରୁଚି ଯାହା ।

ପୁଣି ନିରବତା । ସୃଷ୍ଟି ହୋଇଗଲା ଗୋଟେ ଅସ୍ୱସ୍ତି ଶେଖର ଭିତରେ । ସେ ଜାଣିବାକୁ ଚାହୁଁଥିଲା, ଏ ବିଷୟରେ ଏଠାରେ କ'ଣ କିପରି ଚର୍ଚ୍ଚା ହୁଏ । ରଂଜନ କିଛି ନ କହି ଗୋଟେ ପତ୍ରିକାର ପୃଷ୍ଠା ଓଲଟାଇବା ବେଳେ ଉଦ୍‌ବେଗର ସହିତ ପଚାରିଲା ଶେଖର– ''ମୋ ବିଷୟରେ ଏଠାରେ କ'ଣ ସବୁ ଆଲୋଚନା ହୁଏ ?''

–''ଶୁଣିବୁ ?'' ପତ୍ରିକା ଥୋଇଦେଇ ରଂଜନ ପଚାରିଲା ।

–''ହଁ ।'' ତଣ୍ଟି ଶୁଖିଯାଉଥିଲା ଶେଖରର । ହୃତ୍‌କଂପନ ବଢ଼ିଗଲା । ସେ ଚାହିଁରହିଲା ରଂଜନକୁ, ଗୋଟେ ଗୋପନ ତଥ୍ୟ ପଦାରେ ପଡ଼ିଯାଇଚି କି ନା, ଜାଣିବା ପାଇଁ ।

–''ଅବିକା କହୁଥିଲି ଯେ, ଏ ବିଷୟରେ କାହାରି ସ୍ପଷ୍ଟ ଧାରଣା ନାହିଁ ।'' ଏଇ ପ୍ରଥମ ବାକ୍ୟ ସତେଯେପରି ଅମ୍ଳଜାନ ଯୋଗେଇଲା ଗୋଟେ ମୁମୂର୍ଷୁ ରୋଗୀକୁ । ତା'ପରେ– ''ମାତ୍ର ତୁମ ଦୁହିଁଙ୍କ ଭିତରେ ଯେ ଆବେଗଗତ ସଂପର୍କଟେ ଗଢ଼ିଉଠିଚି, ଏ ସଂପର୍କରେ କାହାରି ସନ୍ଦେହ ନାହିଁ ।'' ରଂଜନ ଚାହିଁଲା ଶେଖରକୁ, ତା'ର ପରବର୍ତ୍ତୀ କଥା ସହିବା ପାଇଁ ସେ ପ୍ରସ୍ତୁତ କି ନା ଜାଣିବା ପାଇଁ– ''ଯଦି ବାସ୍ତବରେ ତୁମେ ଦୁହେଁ ଗଭୀର ଭାବେ ଲଭ୍ କରୁଚ, ତେବେ ଏହାର ଭବିଷ୍ୟତ ସଂପର୍କରେ ସମସ୍ତେ ସନ୍ଦିହାନ ହୋଇ ପଡୁଚନ୍ତି । ପ୍ରଥମ କଥା ହେଉଚି, ମନିକାର ଦୁର୍ଦ୍ଧାନ୍ତ ଭାଇ ଭବେଶ । ପୋଲିସ୍ ପାଖରେ

ତା'ର ଖରାପ ରେକର୍ଡ଼ ଅଛି । ଦ୍ୱିତୀୟ କଥା ହେଉଚି– ।'' ଟିକିଏ ଅଟକି ଯିବା ପରେ ବାକ୍ୟଟି ସମାପ୍ତ କଲା– ''ତୁମ ଦୁହିଁଙ୍କ ମଧ୍ୟରେ ଥିବା ବିଶାଳ ତାରତମ୍ୟ ।'' ଡାକ୍ତର ଜଣକ ଘୋଷଣା କଲେ ଯେ, ଅମ୍ଳଜାନ ମଧ୍ୟ ଯଥେଷ୍ଟ ନୁହେଁ ରୋଗୀକୁ ରକ୍ଷା କରିବା ପାଇଁ ।

ଶେଖରର ମୁହଁ ପାଣ୍ଡୁର ଓ ଅସହାୟ ଦେଖା ଯାଉଥିଲା କି ? ରଂଜନ ଲକ୍ଷ୍ୟ କରି ନ ଥିଲା କିମ୍ବା ସେଥିପ୍ରତି ଗୁରୁତ୍ୱ ଦେଇ ନ ଥିଲା । କହି ଚାଲିଲା– ''ଏଠାରେ ସମସ୍ତେ ଏକମତ ହେଉଚନ୍ତି ଯେ, ଘଟଣାଟା ଖୁବ୍ ପିଲାଳିଆ, ଅପରିପକ୍ୱ ଓ ଦାୟିତ୍ୱହୀନ । ମନିକା ବୟସର ପିଲାମାନେ ସାଧାରଣତଃ ଭାସିଯାଆନ୍ତି ଗୋଟେ ଆବେଗରେ । ସମୁଦାୟ ପରିପ୍ରେକ୍ଷୀ ସଂପର୍କରେ ତାଙ୍କର ଧାରଣା ନ ଥାଏ । ଏଇ ଆବେଗ ହିଁ ଜୀବନର ଏକମାତ୍ର ସତ୍ୟ ବୋଲି ସେମାନେ ଭାବିଥାନ୍ତି । ତେଣୁ କୌଣସି ପଦକ୍ଷେପ ନେବା ବେଳେ ଏହାର ପରିଣତି ପ୍ରତି ସେମାନେ ଜମା ଯତ୍ନବାନ ହୋଇପାରନ୍ତି ନାହିଁ ।'' ଦମ୍ ନେଲା ସେ ।

ଶେଖର ଉତ୍କଣ୍ଠାର ସହିତ ଅପେକ୍ଷା କଲା ରଂଜନର ଅବଶିଷ୍ଟ ବକ୍ତବ୍ୟକୁ ! କହିଲା ସେ– ''କିନ୍ତୁ ତୋ ଭଳି ଜଣେ ଉଚ୍ଚଶିକ୍ଷିତ ଯୁବକ କଥା ଅଲଗା । ସମସ୍ତଙ୍କ ସହିତ ମୁଁ ମଧ୍ୟ ଏକମତ ଯେ, ତୁ ଏ ଦିଗରେ ସଂଯମୀ ହେବା ଦରକାର । ତାହା ତୋର ଏବଂ ତୁମ ଦୁହିଁଙ୍କର ସମ୍ଭାବ୍ୟ ବିପର୍ଯ୍ୟୟକୁ ଏଡ଼ାଇ ପାରନ୍ତା । ମୁଁ ପୁଣି କହୁଚି ଯେ, ତୁମ ଦୁହିଁଙ୍କ ବ୍ୟାପାର ସଂପର୍କରେ ଠିକ୍ ଚିତ୍ର ଆମଠାରେ ନାହିଁ । ତୁ ଯଦି ଇଚ୍ଛା କରୁ, ତେବେ ମୋତେ କହିପାରୁ ।''

ମାତ୍ର ଶେଖର ସତ କଥା କହିବା ପାଇଁ ପଛଘୁଞ୍ଚା ଦେଲା । ସେତକ କହିଦେଲେ ହୁଏତ ରଂଜନ ଦୃଷ୍ଟିରେ ସେ ଗୋଟେ ନିର୍ବୋଧ, ଦୟନୀୟ ଜୋକରରେ ପରିଣତ ହୋଇଯିବ । ପରିଣତ ହୋଇଯିବ ଜଣେ ଜ୍ଞାନ ବିବର୍ଜିତ ମଣିଷରେ, ଯେ'କି ଅଯଥାରେ ମୁଣ୍ଡ ବାଡ଼େଇ ଚାଲିଚି ଗୋଟେ ନିଷ୍କରୁଣ, ଶୁଖିଲା ପଥର କାନ୍ଥ ଉପରେ । ମାତ୍ର ଶେଖରର କେଜାଣି କାହିଁକି ମନେହେଲା, ମନିକା ବାସ୍ତବିକ ଦୂରେଇ ଯାଉଚି ତା'ଠାରୁ । ସେ କେବଳ ଆତୁର, ବ୍ୟାକୁଳ ହୋଇ ଚାହୁଁଚି ତାକୁ । ଅଥଚ ଦୁହିଁଙ୍କ ମଧ୍ୟରେ ବଢ଼ି ଚାଲିଥିବା ବ୍ୟବଧାନକୁ ଅତିକ୍ରମ କରିବା ପାଇଁ କୌଣସି ସୂତ୍ର ଖୋଜି ପାଉ ନାହିଁ ।

ଶେଖର । ପଢ଼ାପଢ଼ି, ଡିବେଟ, ସାଧାରଣଜ୍ଞାନ ଇତ୍ୟାଦି ପ୍ରତିଯୋଗିତାରେ ଏକଦା ଅପ୍ରତିଦ୍ୱନ୍ଦ୍ୱୀ ଥିବା ଶେଖର । ଆତ୍ମବିଶ୍ୱାସୀ, ନିଜପ୍ରତି ଚୂଡ଼ାନ୍ତ ଆସ୍ଥାବାନ ଶେଖର । ହଠାତ୍ ଯେମିତି ବାଟବଣା, ଅପରାଧୀ ଓ ଦ୍ୱନ୍ଦ୍ୱ ପୀଡ଼ିତ ଦେଖାଗଲା । ତ୍ରୁଟିପୂର୍ଣ୍ଣ ସମୟ କଟାଇଚି, ଭ୍ରମାତ୍ମକ ଲକ୍ଷ୍ୟସ୍ଥଳ ଆଡ଼କୁ ଧାଇଁଚି ବୋଲି ଦେଖାଗଲା ।

ରଂଜନ ପଢ଼ିପାରିଲା ଶେଖର ମୁହଁର ଏଇ ଭାଷାକୁ; କିନ୍ତୁ ଶୁଣିବାକୁ ପାଇଲା ଆଉ ଏକ କଥା– "କାହାର ଅନୁମାନ କିମ୍ବା ଧାରଣା ବଦଳେଇବା ମୋ ପାଇଁ ଅସମ୍ଭବ, ରଂଜନ । ଏକଥା ସତ ଯେ, ମନିକା ପ୍ରତି ମୋର ରହିଚି ଗଭୀର ଶ୍ରଦ୍ଧା ଓ ଶୁଭକାମନା; କିନ୍ତୁ ଆମ ଦୁହିଁଙ୍କ ସଂପର୍କ ଅଟକି ରହିଚି ଏକ ସ୍ୱାଭାବିକ ସ୍ତରରେ । ମୁଁ ଜାଣେ, ମୁଁ କ'ଣ । ମୁଁ ଲୋକହସା ହେବା ପାଇଁ ନିର୍ବୋଧ ପଦକ୍ଷେପ ନେବି କାହିଁକି ?"

ହତାଶ ଦେଖାଗଲା ରଂଜନ । ଆପାତତଃ ସୂଚେଇଦେଲା ଯେ, ଏହାକୁ ସତ ବୋଲି ଗ୍ରହଣ କରିବାକୁ ସେ ପ୍ରସ୍ତୁତ ନୁହେଁ । କହିଲା– "ସମସ୍ତଙ୍କର ଧାରଣା, ତୁ ନିଜକୁ ଆୟତ୍ତ କରିପାରୁନୁ । ଭାସିଯାଉଚୁ । କେବଳ ଏଇ କାରଣରୁ ନିଜ ପଢ଼ାପଢ଼ି ପ୍ରତି ଯତ୍ନବାନ ହୋଇପାରୁନୁ । ଆସକ୍ତି ଏକ ବିପଜ୍ଜନକ ଶକ୍ତି । ଏହା ନିଷ୍କ୍ରିୟ ଏବଂ ନିଶାଗ୍ରସ୍ତ କରିଦିଏ ମଣିଷର ବୌଦ୍ଧିକତାକୁ, ଯୁକ୍ତିପ୍ରବଣ ଜ୍ଞାନକୁ । ମନିକାପ୍ରତି ତୋ'ର ଆସକ୍ତି ତୋ ଭିତରେ ଥିବା ଅସଲ ଶେଖରକୁ ଆପାତତଃ ପକ୍ଷାଘାତ କରି ରଖିଚି ।"

ଯା ପରେ ଶେଖର ଯେମିତି ଦେଖାଗଲା, ତାହା ରଂଜନ ପକ୍ଷେ ଅସହ୍ୟ ହୋଇପଡ଼ିଲା । କିଛି ବାଟ ଦୌଡ଼ିବା ପରେ ଅପରାଧୀଜଣକ ଧରା ପଡ଼ିଯାଇଛି ପୋଲିସ୍ ହାତରେ ଅଥଚ କହୁଚି– "ଆସକ୍ତି ? ନା, ନା, ସେସବୁ କିଛି ନାଇଁ । ଯେକୌଣସି ମୁହୂର୍ତ୍ତରେ ମୁଁ ସେଠାକୁ ଯିବା ବନ୍ଦ କରି ଦେଇପାରେ ।"

ମନିକାର ପରୀକ୍ଷା ଶେଷ ବେଳକୁ ଗ୍ରୀଷ୍ମଛୁଟି । ଶେଖରର ଦେଖା ନାଇଁ । କିଛି ଖବର ନାଇଁ । ଶେଖର କେବଳ ଛଟପଟ ହେଉଥିଲା ଗାଁରେ । ଛୁଟି ପୂର୍ବରୁ ରଂଜନ ସହିତ ହୋଇଥିବା ତା'ର ଆଲୋଚନା ଆପାତତଃ କାଟି ଦେଇଥିଲା ତା'ର ଦୁଇଟିଯାକ ଡେଣା । ମନିକାର ଘୋଷଣା ସତ୍ତ୍ୱେ ଶେଖର ତାକୁ କେବେହେଲେ ପାଇପାରିବ ନାଇଁ । ଦ୍ୱିତୀୟତଃ ବାସ୍ତବିକ ତା' ପ୍ରତି ଥିବା ଆସକ୍ତି ଯୋଗୁଁ ଶେଖର ବସିପାରିବ ନାଇଁ ପ୍ରତିଯୋଗିତାମୂଳକ ପରୀକ୍ଷାରେ । ରଂଜନର କଥା ଏକାନ୍ତ ସତ ହୋଇଥିବାରୁ ସେ ଆତ୍ମସଚେତନ ହେଉଥିଲା । ଧସକି ପଡୁଥିଲା ନିଜ ଭିତରେ ।

ଏଇଭଳି ଅବସ୍ଥାରେ ମନିକାର ଚିଠି । ଲେଖିଥିଲା ଯେ, ଶେଖରକୁ ସେ ଦେଖିବାକୁ ଚାହେଁ । ଏଇ ମୁହୂର୍ତ୍ତରେ । ଯଦି ସେ ଆସିବାରେ ଡେରି କରେ, ତେବେ ସେ ପହଞ୍ଚିଯିବ ତା' ଗାଁରେ ।

ଆବେଗରେ ଅନ୍ଧ ହୋଇଯାଇଥିବା ଗୋଟେ ଝିଅର ଚିଠି, ନା ନିଜ ଭଲ ପାଇବାର ଦୃଢ଼ତା ପ୍ରମାଣ କରୁଥିବା ଚିଠି ? ଶେଖର ବିବ୍ରତ ହୋଇ ପଡ଼ିଥିବା

ଅବସ୍ଥାରେ ହିଁ ବ୍ୟାଗ୍ ସଜାଡୁଥିଲା । ଏଇଟା ତା'ର ଏକ ମୂର୍ଖ ଆସକ୍ତି ବୋଲି ନିଜକୁ ଶୁଣେଇବା ବେଳେ ସେ ବସିସାରିଥିଲା ବସ୍‌ରେ ।

ଲୁହା ଗେଟ୍ ଖୋଲିବା ବେଳେ କ୍ଷୀଣ ଶବ୍ଦ । ସେତିକି ଭିତରୁ ବାହାର କରିଆଣିଲା ମନିକାକୁ ।

—"ଘରେ କେହି ନାହାନ୍ତି ?" ଶେଖର ପଚାରିଲା; କିନ୍ତୁ କୌଣସି ଉତ୍ତର ମିଳିଲା ନାହିଁ ମନିକା ପାଖରୁ ।

ପଢ଼ାଘର । ଦୁହେଁ ପରସ୍ପରକୁ ଚାହିଁବାର କେତୋଟି ମୁହୂର୍ତ୍ତ ପରେ, ମନିକାର ଓଠ କଂପିଉଠିଲା । କୁଞ୍ଚିତ ହେଲା ଭ୍ରୂ । ଦୁଇ ପାପୁଲିରେ ମୁହଁ ଘୋଡ଼ାଇ ସେ କାନ୍ଦିଉଠିଲା । ବସିପଡ଼ିଲା ଚେୟାରରେ । ପ୍ରଥମଥର ପାଇଁ ମନିକାର ଏଇ ଆଚରଣ ବିଚଳିତ କଲା ଶେଖରକୁ; କିନ୍ତୁ ସେ ଅପେକ୍ଷା କଲା ମନିକା ପ୍ରକୃତିସ୍ଥ ହେବାପର୍ଯ୍ୟନ୍ତ ।

—"ସାର, ଆପଣ ମୋତେ ଏମିତି ଶାସ୍ତି ଦେଇପାରିବେ ନାହିଁ ।" ପ୍ରତିବାଦ କଲା ମନିକା । "ଆପଣ ମୋ ସହିତ କୌଣସି ସଂପର୍କ ରଖିବାପାଇଁ ଚାହାନ୍ତି ନାହିଁ ବୋଲି ମୋତେ ସିଧାସଳଖ କହୁ ନାହାନ୍ତି କାହିଁକି ?"

—"ହଁ ।" ଶେଖର ଠିକଣା ଜବାବପାଇଁ ଭାଷା ପାଇଲା ନାହିଁ ।

—"ହଁ, କ'ଣ ?" ସ୍ତମ୍ଭୀଭୂତ ଓ ଭୟଭୀତ ହୋଇ ପଚାରିଲା ମନିକା ।

—"ଆମେ ଏ ସଂପର୍କକୁ ଆଉ ଅଧିକ ବଢ଼ିବାପାଇଁ ଦେବା ନାହିଁ ।" ଖୁବ୍ କଷ୍ଟ ହେଉଥିଲା ଶେଖରକୁ ଏହା କହିବାପାଇଁ; କିନ୍ତୁ ସେ କହିଚାଲିଲା— "ଆମେ ବାସ୍ତବିକ ମାତାଲ ହୋଇ ପଡ଼ିଚନ୍ତି । ମୁଁ ଭଲ କରି ଜାଣେ, ଏ ସଂପର୍କର କୌଣସି ଭବିଷ୍ୟତ ନାହିଁ ।"

ମନିକା ସ୍ତବ୍ଧ ହୋଇଗଲା । ତା' ଦୁଇଗାଲରେ ଅଟକି ରହିଥିଲା ଲୁହ । ଓଠ ଉନ୍ମୁକ୍ତ ଥିଲା । ଶେଖର କହିଲା— "ଥରେ ଭାବି ଦେଖ, ଆମ ଦୁହିଁଙ୍କ ମଧ୍ୟରେ ଥିବା ବ୍ୟବଧାନ । ଏହାକୁ ଅତିକ୍ରମ କରିବା ଅସମ୍ଭବ ।"

—"ସତେ ? ଅସମ୍ଭବ ?" ତାଚ୍ଛଲ୍ୟ ଥିଲା ମନିକା ସ୍ୱରରେ— "ଏ ବ୍ୟବଧାନ ଅତିକ୍ରମ କରିବା ଦାୟିତ୍ୱ ଆପଣଙ୍କର ନୁହେଁ; ମୋର । ମୁଁ ଆଗରୁ କହିଥିଲି, ଆପଣ ହଁ କହିବାମାତ୍ରେ ଏଇ ଅବସ୍ଥାରେ ମୁଁ ପଳେଇବି ଆପଣଙ୍କ ପାଖକୁ । ଆପଣ କେବଳ ମୋ ସୁନ୍ଥାରେ ସିନ୍ଦୂର ଟିକିଏ ଲଗେଇ ଦେବେ । ପୁରୋହିତର ମନ୍ତ୍ର, ରେଜିଷ୍ଟ୍ରି ମ୍ୟାରେଜପାଇଁ ଦସ୍ତଖତକୁ ମଧ୍ୟ ମୁଁ କେୟାର କରେନା । କ'ଣ

କହୁଚନ୍ତି ? ଏତକ କରିପାରିବେ ? ଯଦି ନ ପାରିବେ, ତେବେ– ।'' ସେ ଆଉ ଅଧିକ କହିପାରିଲା ନାହିଁ । ପୁଣି କାନ୍ଦିଲା ପାପୁଲିରେ ମୁହଁ ଢାଙ୍କି ।

ଗ୍ରୀଷ୍ମଛୁଟି ପରର କଲେଜ । ରଂଜନ ସନ୍ତୁଷ୍ଟ ଥିଲା ଯେ ପରୀକ୍ଷାରେ ହୋଇଚି ଗୋଟେ ପ୍ରକାର । ଅନ୍ତତଃ ବ୍ୟାଙ୍କ୍ ସର୍ଭିସ୍ ମିଳିଯାଇପାରେ । ତା'ଛଡ଼ା ସରକାରୀ କଲେଜରେ ଅଧ୍ୟାପନାପାଇଁ ସାକ୍ଷାତକାର ଇତ୍ୟାଦି । ଶେଖର ସହିତ ସେ ମନିକା ବିଷୟରେ ଆଉ ଆଲୋଚନା କରୁ ନ ଥିଲା । ସେ ଭଲକରି ଜାଣି ସାରିଥିଲା ଏ ଦୁହିଁଙ୍କର ସଂପର୍କର ସ୍ୱରୂପ । ସମସ୍ତେ ପ୍ରାୟ ଜାଣି ପାରିଥିଲେ । ଶେଖର ନିୟମିତ ଯାଉଥିଲା ଇଞ୍ଜିନିୟରଙ୍କ ବଙ୍ଗଳାକୁ ।

ପୁଣି ଗ୍ରୀଷ୍ମଛୁଟି ପୂର୍ବରୁ ରଂଜନ କଲେଜ ଚାକିରିରୁ ଇସ୍ତଫା ଦେଇ ବ୍ୟାଙ୍କ୍ ସର୍ଭିସ୍‌ରେ ଯୋଗଦେଇ ସାରିଥିଲା । ମନିକାର ଫାଇନାଲ୍ ପରୀକ୍ଷା ଶେଷ ହେବା ବେଳକୁ ସରକାରୀ କଲେଜରେ ଯୋଗଦେବାପାଇଁ ନିଯୁକ୍ତିପତ୍ର ପାଇଲା ଶେଖର । ପରୀକ୍ଷାରେ ଖୁବ୍ ଭଲ ହୋଇଚି ମନିକାର । ତା'ର ବିଶ୍ୱାସ, ୟୁନିଭର୍ସିଟିରେ ଏମ୍.ଏ. କରିବାପାଇଁ ସେ ଯୋଗ୍ୟ ହେବ ।

ତାହାକୁ ବିଦାୟକାଳୀନ ସଂଧ୍ୟା ବୋଲି କୁହାଯାଇପାରେ । ଶେଖର ସରକାରୀ କଲେଜରେ ଯୋଗ ଦେଇ ଫେରିଥାଏ । ରଥ ଦଂପତି ତା'ପାଇଁ ଆଣିଥିଲେ ଅନ୍ୟୂନ ତିନିହଜାର ଟଙ୍କାର ବିଭିନ୍ନ ଉପହାର । ଶାଲ, ଘଣ୍ଟା, ସୁଟିଙ୍ଗ୍, ବ୍ରିଫ୍‌କେଶ । ବାରମ୍ବାର ପ୍ରକାଶ କରୁଥିଲେ କୃତଜ୍ଞତା ଶେଖରର ସାହାଯ୍ୟପାଇଁ । ଶେଖର ଶେଷଥର ପାଇଁ ଆଖି ବୁଲାଇଆଣିଲା କ୍ୱାର୍ଟର୍ସ ଚାରିପାଖର ସବୁଜ ଓ ରଙ୍ଗିନ ପରିସର ଉପରୁ । ଅନେକ ବର୍ଷ ଏଠାରେ ରହିଥିବାରୁ ରୁଚି ଅନୁଯାୟୀ ଏହାକୁ ସଜାଡ଼ିଚନ୍ତି ସେମାନେ । କେବଳ ଡ୍ରଇଁ ରୁମ୍ ସେ'ଦିନ । ମନିକାର ପଢ଼ାଘରକୁ ଯିବାର ଆବଶ୍ୟକତା ନ ଥିଲା । ଅଳ୍ପ କେତୋଟି ନିକାଞ୍ଚନ ମୁହୂର୍ତ୍ତ ଭିତରେ ଦୁହେଁ ପ୍ରକାଶ କରିଥିଲେ ଅନେକ ସ୍ୱପ୍ନ ଓ ଆଶା । ମନିକା ଯୋଗଦେବ ୟୁନିଭର୍ସିଟିରେ । ଶେଖରର କଲେଜ ସେଠାରୁ ମାତ୍ର କୋଡ଼ିଏ କିଲୋମିଟର ଦୂରରେ । ଯୋଗସୂତ୍ରପାଇଁ ଅସୁବିଧା ନାହିଁ ।

ଶ୍ରୀଯୁକ୍ତ ରଥଙ୍କ କାର୍ ନେଇ ଆସିଥିଲା ଶେଖରକୁ ହଷ୍ଟେଲ ପର୍ଯ୍ୟନ୍ତ । ରଂଜନ୍‌ର ସିଟ୍ ଫାଙ୍କା । ତା' ନିଜ ଜିନିଷ ମଧ୍ୟ ସଜଡ଼ା ସରିଚି । ଆସନ୍ତା କାଲି ସେ ପଳେଇଯିବ ଏଠାରୁ ଅନେକ ସ୍ମୃତିକୁ ନେଇ ।

# ଚାରି

ନୂଆ କଲେଜ । ବି.ଏ. ପରୀକ୍ଷା ଫଳ ପ୍ରକାଶନ । ମନିକାର ଚମତ୍କାର ପୋଜିସନ ଅଧିକାର ପାସ୍ ତାଲିକାରେ । ୟୁନିଭର୍ସିଟିରେ ନାମ ଲେଖା । ହଷ୍ଟେଲ୍‌ରେ ସିଟ୍ ମିଳିବା ପର୍ଯ୍ୟନ୍ତ ମନିକା ରହିବ ଜଣେ ଆତ୍ମୀୟାଙ୍କ ବାସଭବନରେ । ସେଇଠାରେ ହିଁ ରହିବାର ବ୍ୟବସ୍ଥା ହେଉଥିଲା ତା' ପାଇଁ, ପଢ଼ା ଶେଷ ପର୍ଯ୍ୟନ୍ତ । ଘୋର ଆପତ୍ତି କଲା ସେ । ସେ ରହିବ ହଷ୍ଟେଲରେ ଯାବତୀୟ ଅବ୍ୟବସ୍ଥାକୁ ଆପଣାର କରି । କିଛି ଯାଏ ଆସେ ନାହିଁ ଭଲ ଖାଦ୍ୟ ନ ମିଳିଲେ । ମାତ୍ର ତା'ର ଦରକାର ପୂର୍ଣ୍ଣ ସ୍ୱାଧୀନତା । ସେ ନିଜ ଇଚ୍ଛା ଅନୁଯାୟୀ ଯିବ ବାହାରକୁ ଏବଂ ବାହାର କହିବାର ଅର୍ଥ ହେଉଚି ଶେଖରର ସାହଚର୍ଯ୍ୟକୁ । ଏ ଦିଗରେ କ'ଣ ସବୁ ଘଟୁଚି, କ'ଣ ସବୁ ଘଟିବ ବୋଲି ଯୋଜନା କରାଯାଉଚି, ସେ ସଂପର୍କରେ ମନିକା ନିୟମିତ ଜଣାଉଥିଲା ଶେଖରକୁ, ଅନ୍ତତଃ ସେ ଗ୍ରୀଷ୍ମଛୁଟିରେ ଗାଁରେ ଥିବା ସମୟରେ । ମନିକାର ପ୍ରସ୍ତାବ ଅନୁଯାୟୀ ଶେଖର ଛୋଟ ଭଡ଼ା ଘରଟେ ନେବ, ୟୁନିଭର୍ସିଟି ପାଖରେ । କୋଡ଼ିଏ କିଲୋମିଟର ଦୂର କଲେଜକୁ ଯିବାଆସିବା କରିବ । ମନିକା ଆହୁରି ସତର୍କ କରି ଦେଇଥିଲା ଯେ, ସେ ସଂପର୍କୀୟଙ୍କ ବାସଭବନରେ ଥିବାବେଳେ, ଶେଖର ସେଠାକୁ ନ ଯିବା ହିଁ ଭଲ । ସେ ତାକୁ ଦେଖା କରିବାପାଇଁ ନିଶ୍ଚୟ ଆସିବ ଡିପାର୍ଟମେଣ୍ଟକୁ । ଗତ ଦୁଇବର୍ଷର ଏଇ ଆବେଗଗତ ସଂପର୍କକୁ ସେମାନେ ସାଧ୍ୟମତେ ଗୋପନ ରଖିପାରିଚନ୍ତି କେତେଜଣଙ୍କର ସନ୍ଦେହ ଓ ଅନୁମାନ ସତ୍ତ୍ୱେ । ଏହା ଆଉ କିଛିଦିନ ରହିବ ଏଇ ଅବସ୍ଥାରେ ।

ଯେଉଁଦିନଠାରୁ ମନିକାର କ୍ଲାସ୍ ଆରମ୍ଭ ହେବା କଥା, ସେ'ଦିନ ନିଜ କଲେଜରୁ ଶେଖର ଛୁଟିରେ । ଏଇ ୟୁନିଭର୍ସିଟିର ସେ ଛାତ୍ର ନ ଥିଲା । ଆସିଥିଲା ଥରେ ମାତ୍ର ଏଠାକୁ, ଆନ୍ତଃବିଶ୍ୱବିଦ୍ୟାଳୟ ଡିବେଟ୍ କଂପିଟେସନ୍‌ରେ ନିଜ ୟୁନିଭର୍ସିଟିର ପ୍ରତିନିଧିତ୍ୱ କରି । ଅଧିକାର କରିଥିଲା ପ୍ରଥମ ସ୍ଥାନ । ଡିପାର୍ଟମେଣ୍ଟ ଖୋଜିବାକୁ ପଡ଼ି ନ ଥିଲା ତାକୁ । ଯୋଜନା ଅନୁଯାୟୀ ପାଖରେ ଛୋଟ ଭଡ଼ା ଘର ନେବା ପରେ ସେ ଏହାର କ୍ୟାମ୍ପସ ବୁଲିଥିଲା ଏବଂ ମନିକା ଆସିବା ପରେ ଏହାକୁ କିପରି ଏକ ସ୍ୱପ୍ନର ତୀର୍ଥସ୍ଥାନରେ ପରିଣତ କରିବ, ତାହାର ରୂପରେଖ ସ୍ଥିର କରି ସାରିଥିଲା ।

ପ୍ରାୟ ବାରଟାବେଳେ କ୍ଲାସ୍‌ରୁମ୍‌ରୁ ପିଲାମାନଙ୍କର ଯେଉଁ ମେଘଖଣ୍ଡଟି ଉଚ୍ଛୁଳି ଆସୁଥିଲା, ତା' ଭିତରେ ରହିଥିଲା ଜହ୍ନ । ମନିକା ! ପ୍ରାୟ ତିନିମାସ ପରେ

ମନିକା । ସେ ଦୁହେଁ ଚାହିଁରହିଥିଲେ ସେମିତି ଅନ୍ୟମାନଙ୍କର କୋଳାହଳ ଓ ଗତିଶୀଳତା ପ୍ରତି ସଚେତନ ନ ହୋଇ । ମନିକା ହସୁ ହସୁ ପ୍ରାୟ କାନ୍ଦି ପକାଉଥିଲା ଏବଂ ଏତେ ବଡ଼ ସୁଖର ଅଭିଜ୍ଞତାକୁ କେମିତି ପରିପ୍ରକାଶ କରିବ, ସେଥିପାଇଁ ଭାଷା ଖୋଜୁଥିଲା । ସେମାନେ କେହି କିଛି କହିପାରିଲେ ନାହିଁ ଅନେକ ସମୟଧରି, ସେମାନଙ୍କର ଅନୁଭବ ନିରବତାର କଳେବର ଧାରଣ କରିଥିଲା ବୋଲି ।

—"କ'ଣ, କିଛି କହିବ ନା, ପ୍ରଥମଥର ପାଇଁ ଦେଖିଲା ଭଳି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିବ ?" ଶେଖର ସଚେତନ୍ କରୁଥିଲା ମନିକାକୁ ।

—"ଆଜି କଲେଜ ଯାଇ ନାହାନ୍ତି ?" ସେମାନେ ଚାଲିବା ଆରମ୍ଭ କଲେ ।

—"କିମିତି ଯାଇପାରିଥାନ୍ତି ?" ଓଲଟା ପ୍ରଶ୍ନ କଲା ଶେଖର— "ସେଠାରେ ଯାଇ କରିଥାନ୍ତି କ'ଣ ?"

ମନିକା ମୁଗ୍ଧ ହେଲା ଏବଂ ପଚାରିଲା— "ସେଠାରେ ହୁଏତ କେହି ଖୋଜୁଥିବେ, ସେମିନାର ପେପର ସଂଶୋଧନ କରାଇନେବା ପାଇଁ ।"

ଶେଖର ହସିଲା । ଗମ୍ଭୀର ହୋଇ କହିଲା— "ବିଧାତା ସେମିତି ଆଉ ଜଣକୁ ସୃଷ୍ଟି କରି ନାହିଁ ।"

ବାଟ ଚଲା । ନିରବତା । ଶେଖର ପଚାରିଲା— "ଆମେ ଯାଉଚେ କୁଆଡ଼େ ?"

—"କେଉଁଠି ଗପିଥାନ୍ତେ ।" ମନିକା କହିଲା— "ନା, କ୍ୟାଣ୍ଟିନ୍ ସୁବିଧା ହେବ ନାହିଁ ।" ହଠାତ୍ ଅଭିନବ ଜିନିଷଟେ ମନେପଡ଼ିବା ଭଳି— "ଆରେ, ଏତେ ଭାବିବାରେ କ'ଣ ଅଛି ? ଚାଲନ୍ତୁ, ଆପଣଙ୍କ ବସାଘର ଆଡୁ ଥରେ ବୁଲିଆସେ । ଆଉ ଗୋଟେ–ଦୁଇଟା କ୍ଲାସ୍‌କୁ ପଚାରେ କିଏ ?"

—"ଅବିକା ଯିବ ?" ପଛଘୁଞ୍ଚା ଦେବାଭଳି ଶୁଭିଲା ଶେଖରର ସ୍ୱର ।

—"ହଁ । କାହିଁକି ନୁହେଁ ?" ଶେଖର ଆଡୁ ଆଖି ଫେରାଇ— "ଆପଣ ଯଦି ନ ଚାହୁଁଚନ୍ତି, ତେବେ ଅଲଗା କଥା ।"

—"କି ବାଜେ କଥା !" ପ୍ରତିବାଦ କଲା ଶେଖର ଏବଂ ପରିସ୍ଥିତିଟା ବୁଝେଇ ଦେଲା— "ମୋ ବସାଘରେ କିଛି ନାହିଁ, ମନିକା । ତୁମକୁ ବସେଇବା ପାଇଁ ଚେୟାରଟେ ବି ନାହିଁ ।"

କିଛି ଶୁଣିବାକୁ ପ୍ରସ୍ତୁତ ନ ଥିଲା ମନିକା । ଶେଖର ସାଇକେଲରେ । ରିକ୍ସାରେ ମନିକା । ଦୁଇକୋଠରି ବିଶିଷ୍ଟ ଫ୍ଲାଟ୍ । ଦ୍ୱିତୀୟ ମହଲାରେ । ପ୍ରଥମ ରୁମ୍‌ରେ ଗଦା

ହୋଇଚି ବହି—ଖାତା । ଅସଜଡ଼ା ହୋଇ । ଦୁଇଟି ଟିଣ ଟ୍ରଙ୍କ୍ । ଦ୍ୱିତୀୟ କୋଠରିରେ ଖଟ ଗୋଟେ । ଲୋଚାକୋଚା ହୋଇ ରହିଚି ବେଡ଼୍‌ସିଟ୍ । ମଶାରିବାଡ଼ାରେ ବିପର୍ଯ୍ୟସ୍ତ ହୋଇ ଝୁଲୁଚି ପେଣ୍ଟ—ଶାର୍ଟ । ତଉଲିଆଟେ ଶୁଖୁଚି । ରୋଷେଇଘର । ବିଲ୍‌କୁଲ୍ ଫାଙ୍କା । କେବଳ ଅଛି ହିଟରଟେ; ଯାହାର କଏଲ୍ ଛିଣ୍ଡିଯାଇଚି । କିରୋସିନି ଷ୍ଟୋଭ୍ । ଚା' କରିବାର ଉପକରଣ । ସମଗ୍ର ଚଟାଣରେ ଧୂଳି ।

ମନିକା ଚାହିଁଲା ଶେଖର ଆଡ଼େ । ଅଭିଭୂତ ହୋଇଗଲା ଗୋଟେ ଶୋକ, ଯନ୍ତ୍ରଣା ଓ ସମ୍ବେଦନାରେ । କହିଲା ବାଷ୍ପାକୁଳ ସ୍ୱରରେ— ''ସାର୍, ଖିଆପିଆ କରୁଚନ୍ତି କେଉଁଠି ?''

—''ପାଖରେ ଅଛି ହୋଟେଲଟେ ।'' ସହଜସ୍ୱରରେ କହିବାକୁ ଚେଷ୍ଟା କରୁଥିଲା ଶେଖର । ତା' ପରିସ୍ଥିତି ଦେଖି ମନିକା ମଧ୍ୟରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ସହିବା ସମ୍ଭବ ହେଉ ନ ଥିଲା ତା'ପାଇଁ ।

ଆଉ ଗୋଟିଏ ମୁହୂର୍ତ୍ତ ଅପେକ୍ଷା କଲା ନାହିଁ ମନିକା । ଝାଡୁଧରି ସଫାକଲା ସବୁ ରୁମ୍ । ଅଇଁଠା ହୋଇ ପଡ଼ିଥିବା ଚା' ମଗ୍ ଦୁଇଟି ଧୋଇଲା । ସଜାଡ଼ି ଦେଲା ବିଛଣା । ଭଙ୍ଗାଭଙ୍ଗି କରି ରଖିଲା ପେଣ୍ଟ—କମିଜ । ଚାରିଆଡୁ ଆଖି ଫେରାଇ କପାଳ ଓ ବେକର ଝାଳ ପୋଛିଲା । ଶେଖରକୁ ବିସ୍ମିତ କରି ସେ ଠିଆ ହେଲା ସାମନାରେ ଏବଂ ଆଖିରୁ ଝରି ଆସୁଥିବା ଲୁହ ପୋଛିବାପାଇଁ ଇଚ୍ଛା ମଧ୍ୟ କଲା ନାହିଁ ।

ଅପ୍ରତିଭ ହୋଇ ପଡ଼ିଥିବା ଶେଖରର ମୁହଁରୁ ହଜିଗଲା ଦୟନୀୟ ହସ । ଭାବିଥିଲା, ମନିକାକୁ ବୋଧହୁଏ ଧନ୍ୟବାଦ ଦେବା ଯଥାର୍ଥ ହେବ; କିନ୍ତୁ ସେ କହିପାରିଲା ନାହିଁ କିଛି । ମନିକାର ଲୁହ ପୋଛିଲା ସମ୍ମୋହିତ ହୋଇ । ତା'ର ଦୁଇ ପାପୁଲିକୁ ଘନିଷ୍ଠ ଚୁମ୍ବନ ଦେବା ପରେ, ସେ ଶେଖରର ଛାତି ଉପରେ ମୁହଁ ରଖି କାନ୍ଦିପକାଇଲା । ଶେଖର ତା' ପିଠି ଉପରେ ହାତ ପରିକ୍ରମା କଲେ ମଧ୍ୟ ବେଶ୍ କିଛି ସମୟପାଇଁ ତା' କାନ୍ଦ ବନ୍ଦ ହୋଇ ନ ଥିଲା ।

ପରେ ସେ ବସିଲା ବିଛଣାରେ । ପୁଣି ଚାରିଆଡୁ ଆଖି ଫେରାଇ ପଚାରିଲା— ''ଏମିତି କେତେଦିନ ଚଳିବେ, ସାର୍ ? ଆପଣ ଜାଣନ୍ତି ନାଇଁ, ଏ ଫ୍ଲାଟ୍ ମୋତେ କିପରି ଡିଷ୍ଟର୍ବ କରିଚି । ମୁଁ ଆଉ କିଛି କରିପାରିବି ନାହିଁ । ଆପଣ ମନେପଡ଼ିବେ ସବୁବେଳେ । ମନେପଡ଼ିବ ଏ ଫ୍ଲାଟ୍ । ଯା ଭିତରେ ଆପଣଙ୍କ ଜୀବନର ନକ୍‌ସା ।''

ନିରବତା । ପୁଣି କପାଳ, ବେକର ଝାଳ ପୋଛା । ପୁଣି ସେଇ ପ୍ରଶ୍ନ— ''କିଛି କହୁ ନାହାନ୍ତି ଯେ, ସାର୍ ?''

—"କେଉଁ କଥା ?"

—"ଏମିତି କେତେଦିନ ଚଳିବେ ?" ସେ ସିଧା ଚାହିଁଲା ଶେଖରର ମୁହଁକୁ ।

ଶେଖର ଇତସ୍ତତଃ ହେଲା । କହିବାବେଳେ ତତଲା ହୋଇଯାଇଥିଲା ତା' ମୁହଁ— "ଏ ଫ୍ଲାଟ୍ ତୁମକୁ ଅପେକ୍ଷା କରି ରହିଚି । ତୁମେ ନ ଆସିବା ପର୍ଯ୍ୟନ୍ତ ଜୀବନର ନକ୍ସା ଏମିତି ଅସଜଡ଼ା ରହିବ ।"

ଚୁପ୍ ରହିଲା ମନିକା ଦୀର୍ଘ ସମୟପାଇଁ । ଦେଖାଗଲା ଚିନ୍ତାଶୀଳ । ତା' ମୁହଁ ଉପର ଦେଇ ଅଜଣା, ଅନୁଚ୍ଚାରିତ ଭାବନା ପ୍ରତିଫଳିତ ହେଉଥିଲା ଗୋଟିକ ପରେ ଗୋଟିଏ । ଠିଆ ହେଲା । ଶେଖରକୁ ଆଉ କିଛି କହିଲା ନାହିଁ । ବାହାରିଆସିଲା ଫ୍ଲାଟ୍‌ରୁ । ସେ ରିକ୍ସାଟେ ପାଇବା ପର୍ଯ୍ୟନ୍ତ ଶେଖର ଥିଲା, ତା' ସହିତ ।

ପ୍ରାୟ ସବୁଦିନ ସଂଧ୍ୟାବେଳେ ମନିକାର ସଂପର୍କୀୟଙ୍କ ଘରକୁ ଟେଲିଫୋନ । ସତେଯେପରି ତାହାକୁ ଅପେକ୍ଷା କରି ରହିଥାଏ ସେ । ତା'ର ପରାମର୍ଶ ଥିଲା, ଶେଖର ନିଜ ନାମ ପ୍ରକାଶ କରିବ ନାହିଁ । କେବଳ ପଚାରିବ, ମନିକା ଘରେ ଅଛି କି ବୋଲି ।. ସେ ପାଖରୁ ମନିକାର ଯେଉଁ ସ୍ୱର ଓ କଥା ଶୁଭେ, ତାହା ପ୍ରଥମେ ବିବ୍ରତ କରିଥିଲା ଶେଖରକୁ । ସେ ଯେପରି କଥାବାର୍ତ୍ତା କରୁଚି ନଡ଼ା ଓ ମାଟିରେ ତିଆରି ମନିକାର ପ୍ରତିମୂର୍ତ୍ତି ସହିତ । ଆବେଗର ଉଷ୍ଣତା ନ ଥାଏ, ଖଳ ଖଳ ହୋଇ ପ୍ରବାହିତ ହୋଇ ଯାଉଥିବା ସ୍ୱଚ୍ଛ ଆନ୍ତରିକତାର ଧାରା ନ ଥାଏ ।

ଦେଖା ହେବାମାତ୍ରେ ଅଭିଯୋଗ କରିଥିଲା ଶେଖର— "କ'ଣ ଇଏ ହେଉଚି ? ମୁଁ ଏଣେ ବ୍ୟସ୍ତ ହୋଇ ଫୋନ କଲାବେଳେ ତୁମର ସେପାଖରୁ କ୍ଲାନ୍ତ ଆଉ ବିରକ୍ତ ହୋଇ ପଡ଼ିଥିବା ସ୍ୱର । ମୁଁ ପଚାରିବି ଗୋଟିଏ କଥା । ଶୁଣିବି ସଂପୂର୍ଣ୍ଣଭାବରେ ଅଲଗା କଥା । କ'ଣନା, ଆଜି ସେ କ୍ଲାସ୍ ହୋଇ ନାହିଁ, ସେ ବହି ଲାଇବ୍ରେରୀରେ ଅଛି, ନୋଟ୍ କଥା ଏ ପର୍ଯ୍ୟନ୍ତ ଚିନ୍ତା କରାଯାଇ ନାହିଁ ।"

ଉତ୍ତର ଦେଇଥିଲା ମନିକା— "ଆପଣ ଲଭର ହୋଇପାରିଲେ; କିନ୍ତୁ ଚାଲାକ ଲଭର ଜଣେ ହୋଇପାରି ନାହାନ୍ତି । ଆପଣଙ୍କ ଭିତରେ ଅଛି ସରଳ, ନିଷ୍କପଟ ସତ୍ତାଟେ; ଯେଉଁଥିପାଇଁ ମୁଁ ଆପଣଙ୍କ ପାଇଁ ଚିନ୍ତିତ ରହୁଚି । ଆପଣଙ୍କୁ ପ୍ରତିରକ୍ଷା ଦେବାକୁ ଉପାୟ ଖୋଜୁଚି । ମୁଁ ଅଛି ଜଣେ ସଂପର୍କୀୟଙ୍କ ଘରେ । ମୁଁ ଫୋନ ପାଇବା ବେଳେ ସେଇ ପାଖରେ ତାଙ୍କ ପରିବାରର କେହି ଥିବେ । ମୁଁ ସେମାନଙ୍କ ଆଗରେ ପ୍ରଗଲ୍‌ଭ ହୋଇଯିବି ? ବିଶୁଦ୍ଧ ପ୍ରେମିକାର ସଂଳାପ କହିବି ! ବାଃ ! ଏଇଥିପାଇଁ ପୁଣି ଆପଣଙ୍କର ମୁହଁ ଶୁଖିଯାଇଚି !" ୟାପରେ ମନ୍‌ମୁଗ୍ଧକର ହସ ।

ଏହାର ଅଳ୍ପଦିନ ପରେ ମନିକାର ଅଭିଯୋଗ – "କ'ଣ ହେଇଚି, ଆପଣଙ୍କର ? ଫୋନ୍‌ରେ ଆପଣ ଏତେ ସତର୍କ, ମାପିଚୁପି କଥା କହୁଚନ୍ତି କାହିଁକି ?"

– "ମୁଁ ସଚେତନ ହୋଇପଡ଼ିଚି ଯେ, ତୁମେ ସେପଟୁ କଥାବାର୍ତ୍ତା କଲାବେଳେ, ତୁମ ସଂପର୍କୀୟମାନେ ତୁମକୁ ଘେରି ରହିଚନ୍ତି ।" କୈଫିୟତ ଦେଲା ଶେଖର ।

– "କ'ଣ କହିବି ଅପାଣଙ୍କୁ ?" ହତାଶ ହୋଇପଡ଼ିଲା ମନିକା – "ମୋ ପାଖରେ ସିନା ସେମାନେ ଥିବେ, ଆପଣଙ୍କ ପାଖରେ କିଏ ଅଛି ? ଫୋନ ବୁଥ୍‌ର ଲୋକ ଜଣକର ଉପସ୍ଥିତି ଆପଣଙ୍କ କଥାକୁ ଚାପି ରଖିବ କାହିଁକି ?"

ମାତ୍ର କିଛିଦିନ ପରେ ମନିକା ଆସିଲା ହଷ୍ଟେଲକୁ ଏବଂ ଫୋନ୍‌ରେ ତାକୁ ପାଇବା ଏତେ ସହଜ ହେଲା ନାହିଁ । ସେ ନିଜେ ହଷ୍ଟେଲ ଯିବାକୁ କ୍ରମଶଃ ସଙ୍କୋଚ ବୋଧ କଲା । ସେ ପୂର୍ବରୁ ଅଧ୍ୟାପକ ଥିବା କଲେଜର କେତେକ ପିଲା ପଢୁଥିଲେ ସେଠାରେ । କ୍ୟାମ୍ପସ୍‌ରେ ଦେଖା ହେବା ମାତ୍ରେ ପଚାରିବେ – ସାର୍, ଆପଣ ଏଠାରେ ? କ'ଣ ଅଫିସ୍‌ରେ କାମ ଥିଲା ? ଆପଣ ଏ ୟୁନିଭର୍ସିଟିକୁ ଆସିଲେଣି କି ? ଏବେ କେଉଁ କଲେଜରେ, ସାର୍ ? ଏବଂ ଦିନେ ଗୋଟେ ଝିଅ ପଚାରିଦେଲା – "ସାର୍, ମନିକାକୁ ଖୋଜୁଚନ୍ତି ? ସେ ଏଇଠି ଥିଲା ଅନେକବେଳୁ ।"

ଏ ଝିଅଟି ତେବେ ଜାଣେ, ମନିକା ସହିତ ଥିବା ତା'ର ସଂପର୍କ ବିଷୟରେ ? ଏତକ ଭାବିବାମାତ୍ରେ ସେ ଏବେ ମଧ ଅପ୍ରତିଭ ଓ ସଙ୍କୁଚିତ ହୋଇପଡୁଚି କାହିଁକି ? ସତେଯେପରି କ୍ଷତିଟେ ହୋଇଯିବ । ଅଣାୟତ୍ତ ହୋଇଯିବ ପରିସ୍ଥିତି । ସେ ପ୍ରସ୍ତୁତ ନୁହଁ, ସାହସୀ ନୁହଁ ଏ ବ୍ୟାପାରକୁ କାହା ଆଗରେ ସ୍ୱୀକାର କରିବାକୁ ।

ଏହାର ଅଳ୍ପ ଦିନ ପରେ ମନିକା ସତେଯେପରି ଗାଏବ ହୋଇଗଲା । ଯେଉଁସ୍ଥାନରେ ସେ ଶେଖରକୁ ଅପେକ୍ଷା କରିଥାଏ, ସେଠାରେ ସେ ନାହିଁ । ପ୍ରଥମଥର ପାଇଁ ନିର୍ଦ୍ଦିଷ୍ଟ ସମୟ ଓ ସ୍ଥାନରେ ମନିକାର ଅନୁପସ୍ଥିତି ! ପରବର୍ତ୍ତୀ ଦୁଇ–ତିନି ଦିନ ପର୍ଯ୍ୟନ୍ତ ଦେଖା ମିଳିଲା ନାହିଁ । କିଞ୍ଚିତ ଉଦ୍‌ବେଗ ସୃଷ୍ଟି ହେଲା ତା' ଭିତରେ । ହଷ୍ଟେଲ ଝିଅଟେ ତାକୁ କହିଲା ଯେ, ମନିକାର ବାପା–ମା ଆସିଥିଲେ । ସାଙ୍ଗରେ ନେଇ ଯାଇଚନ୍ତି ।

କେତେଦିନ ପାଇଁ ? କାହିଁକି ? କୌଣସି ସୂଚନା ମିଳିଲା ନାହିଁ କେଉଁଠାରୁ । ଘରକୁ ନିକଟରେ ଯିବାକୁ ଅଛି ବୋଲି ମନିକା ଜଣାଇ ନ ଥିଲା ତାକୁ । ସେ ନିଜକୁ ଆବିଷ୍କାର କଲା ଗୋଟେ ଟେଲିଫୋନ ବୁଥ୍ ଭିତରେ । ମନିକାର ସ୍ଥାନୀୟ ସଂପର୍କୀୟଙ୍କ ଫୋନ୍ ରିଙ୍ଗ୍ କରୁଚି ଆର ପାଖରେ ।

—"ଆଜ୍ଞା, ମନିକାକୁ ଖୋଜୁଥିଲି ।"

—"ସେ ହଷ୍ଟେଲରେ ରହେ ।" ଜବାବ ଆସିଲା ସେପଟୁ— "ସେ ଯାଇଚି ଘରକୁ, ବାପା—ମାଙ୍କ ସାଙ୍ଗରେ ।"

—"କେବେ ଫେରିବ, କହିପାରିବେ ?" ଅନେକ ଉତ୍କଣ୍ଠା ଥିଲା ଏ ପ୍ରଶ୍ନରେ ।

ଟିକିଏ ନିରବତା ପରେ ଅନ୍ୟ ପାଖରୁ ପ୍ରଶ୍ନ— "ଆପଣ କିଏ କହୁଥିଲେ ? ଶେଖରବାବୁ କି ?"

ଶେଖର ପ୍ରାୟ ହଁ କହିବାକୁ ଯାଉଥିଲା; ମାତ୍ର ରଖିଦେଲା ରିସିଭରକୁ । ଏ ଭଦ୍ରଲୋକ ତା' ନାମ ଜାଣିଲେ କିପରି ? ଆଦୌ ବିଶ୍ୱାସ ହେଉ ନାହିଁ ଯେ ମନିକା କହିଥାଇପାରେ । ଶେଖର ଓଠ ଓଦା କଲା । ତଣ୍ଟି ଓଦା କଲା । ଓଦା କପାଳର ଝାଳ ପୋଛିଲା ।

ତା' ପରେ ଇଂଜିନିୟର ଶ୍ରୀ ରଥଙ୍କ ବାସ ଭବନ, ଏସ୍.ଟି.ଡ଼ି. ଯୋଗେ । ସେପଟୁ ରିସିଭର ଉଠାଇଲେ ଶ୍ରୀମତୀ ରଥ— ହାଲୋ । ଶେଖର ଭୟ ପାଇଲା ଭଳି ରିସିଭର ରଖି ଦେଇ ବାହାରିଆସିଲା । ମନିକା ସହିତ ଯୋଗାଯୋଗର ବାଟ ଛିଣ୍ଡିଗଲା ସତେଯେପରି । ସେ ମନକୁ ଅବଶ୍ୟ ବୁଝେଇଲା ଯେ, ରଥ ଦଂପତି କୌଣସି କାରଣରୁ ଏଠାକୁ ଆସିଥିଲେ । ଅନେକ ଦିନ ହେଲା ଘରକୁ ଯାଇ ନାହିଁ ବୋଲି ସାଙ୍ଗରେ ନେଇଯାଇଥିବେ ମନିକାକୁ । ବ୍ୟସ୍ତ ହେବାର କ'ଣ ଅଛି ?

ପରଦିନ ସକାଳେ ଇଂଜିନିୟରଙ୍କ ବଙ୍ଗଳାକୁ ଫୋନ । ପୁଣି ଶ୍ରୀମତୀ ରଥ । ଅସହାୟ ହୋଇପଡ଼ିବା ବେଳେ ମନେପଡ଼ିଲା ଯେ, ସଂଧ୍ୟାବେଳେ ଏକତ୍ର ଠାକୁରପୂଜା କରନ୍ତି ରଥ ଦଂପତି । ସେତେବେଳେ ଚେଷ୍ଟା କରାଯାଇପାରେ । ହଁ, ଆରପାଖରେ ମନିକା । ଗଦ୍‌ଗଦ ଓ ଭାଷାଶୂନ୍ୟ ହୋଇପଡ଼ିଲା ଶେଖର; ମାତ୍ର ଆତଙ୍କିତ ହେଲା ମନିକାର ନିମ୍ନସ୍ୱର ଶୁଣି— "ଏଠାକୁ ଆଉ ଫୋନ୍ କରିବେ ନାହିଁ, ସାର । ପରିସ୍ଥିତି ଖରାପ । କେହି ପଚାରିଲେ କହିବେ, ମୋ ସହିତ ଆପଣଙ୍କର କୌଣସି ସଂପର୍କ ନାହିଁ ।" ସେପଟେ ରିସିଭର ରଖାଗଲା ।

ବ୍ଲାଙ୍କ୍ ହୋଇଗଲା ଶେଖରର ମଗଜ । ଗୋଟେ ଅପରିସୀମ ଝିମ୍ ଝିମ୍ ଶବ୍ଦ ଅଧିକାର କରିସାରିଥିଲା ବିଶ୍ୱକୁ । ଏ ଶବ୍ଦ ଭେଦ କରି ମନିକାର ଭାଷା ପହଞ୍ଚିପାରିବ ନାହିଁ ତା' ପାଖରେ । ଟେଲିଫୋନ ତାର ପରିଣତ ହୋଇ ଯାଉଚି ଗୁଡ଼ାଏ ଶୃଙ୍ଖଳା ଡଙ୍କରେ । ଶେଖର ଚାହିଁଲା ଚାରିଆଡ଼କୁ । ଏଇ ସଂକଟର ସମାଧାନ ପାଇଁ କେଉଁଠି କିଛି କୌଶଳ ଅଛି କି ? ସେ ଚୋବେଇ ପାରିଲା

ନାହିଁ ଗୁଡି । ଠିକ୍ କରି ମୋଡ଼ିପାରିଲା ନାହିଁ ସାଇକେଲ୍‌ର ପେଡ଼ଲ ! ବିଛଣା ପରିଣତ ହୋଇ ଯାଇଥିଲା ନିଆଁର ଶେଯରେ । ତା' ପାଖରେ ଯେଉଁ ପାଣି ଅଛି, ତା'ର ଶୋଷକୁ ସନ୍ତୁଷ୍ଟ କରିବା ପାଇଁ ତାହାକୁ ସୃଷ୍ଟି କରାଯାଇ ନାହିଁ । ଏ ବିଜୁଳି ଆଲୁଅ ତା' ଚାରିପାଖରେ ଥିବା ଅନ୍ଧକାରକୁ ଦୂର କରିବା ପାଇଁ ସକ୍ଷମ ନୁହେଁ ।

ପରଦିନ କଲେଜ । କୌଣସିମତେ କାମ ଶେଷ କରି ସେ ବସ୍ ଧରିଲା । ସବୁଦିନ ଭଳି ଆହୁରି ଅନେକ ଲୋକଙ୍କ ସହିତ ଝାଳ ଓ ଗରମ ନିଃଶ୍ୱାସ ଗହଣରେ ଠିଆ ହୋଇ ସେ ପହଞ୍ଚିଲା ବସ୍ ଷ୍ଟାଣ୍ଡ । ସେଠାରେ ସେ ସାଇକେଲ ରଖିଥାଏ । ଫ୍ଲାଟ୍‌ରେ ପହଞ୍ଚିବା ପୂର୍ବରୁ ଦୃଷ୍ଟି ପଡ଼ିଲା ଗୋଟେ କାର୍ ଉପରେ । ଶ୍ରୀଯୁକ୍ତ ରଥଙ୍କ କାର ।

ସେ ବ୍ରେକ୍ ପ୍ରୟୋଗ କଲା ସାଇକେଲର । ଭାବିଲା, ପଳେଇଯିବ କୁଆଡ଼େ । ମାତ୍ର ପାରାଲିସିସ୍‌ରେ ଆକ୍ରାନ୍ତ ହୋଇପଡ଼ିବା ଭଳି ଜଣାପଡୁଥିବା ଗୋଡ଼ ପେଡଲ ମାରିଲେ । ସେ ଆଶ୍ୱସ୍ତ ହେଲା ଯେ ସଂପୂର୍ଣ୍ଣ ଭୁଶୁଡ଼ି ପଡ଼ିବ ବୋଲି ଯେଉଁ ଆଶଙ୍କା କରିଥିଲା, ତାହା ଘଟି ନାହିଁ । ପାଖରେ ପହଞ୍ଚି ଦେଖିଲା, ରଥ ଦଂପତି ତାକୁ ଦେଖି ବାହାରି ଆସୁଚନ୍ତି ଗାଡ଼ିରୁ । ନମସ୍କାର କଲା । ବିସ୍ମିତ ଓ ଆନନ୍ଦିତ ହେବାର ଛଳନା କଲା । ପଚାରିଲା– "ସାର୍, ଆପଣ ମାଡ଼ାମ୍‌ଙ୍କ ସହିତ ?"

–"ହଁ, ଟିକେ କାମ ଥିଲା । ଆପଣଙ୍କ ପାଖରେ ।" ଶ୍ରୀଯୁକ୍ତ ରଥ କହିଲେ, ବୁଶ୍‌ସାର୍ଟକୁ ଟାଣି ସାଇଜ୍ କଲାବେଳେ ।

–"ଆସନ୍ତୁ । ମୋ ଫ୍ଲାଟ୍‌କୁ ଯିବାରେ ବୋଧହୁଏ ଆପତ୍ତି ନାହିଁ ।" ଶେଖର ଭାବିଲା ଯେ, କେବଳ ରଥ ଦଂପତି ନୁହନ୍ତି; ପୃଥିବୀର ସମସ୍ତ ଲୋକ କେବଳ ଶୁଣିବେ ତା'ର ଅଥୟ ହୃତ୍‌କଂପନର ସ୍ୱର । ଏହାକୁ ଟପି ତା' କଥା ଶୁଭିବ ନାହିଁ କାହାରିକୁ ।

ଚାବି ଲଗା ଯାଇଥିବା ଦ୍ୱାର । ବନ୍ଦ କରାଯାଇଥିବା ଝରକା । ବିଶ୍ରାମ ନେଉଥିବା ଫ୍ୟାନ୍ । ସକ୍ରିୟ ହୋଇପଡ଼ିଲେ ଏମାନେ । ନିକଟରେ କିଣା ଯାଇଥିବା ଚେୟାର ଉପରେ ରଥ ଦଂପତି । ସେ ଅଳ୍ପ ସମୟ ପରେ ଫେରିଲା ଧୁଆଧୋଇ ହୋଇ । ଆଦୌ ଚିନ୍ତା କରିପାରୁ ନ ଥିଲା, ଏମାନଙ୍କର ସମ୍ଭାବ୍ୟ ଆକ୍ରମଣକୁ ସେ ପ୍ରତିହତ କରିବ କିପରି ।

ଦୁହେଁ ଅବଶ୍ୟ ସ୍ମିତ ହସୁଥିଲେ; କିନ୍ତୁ ଦେଖାଯାଉଥିଲେ ମ୍ରିୟମାଣ ଏବଂ ଅସୁସ୍ଥ । ଇଂଜିନିୟର ଆରମ୍ଭ କଲେ– "ଆମେ ଆପଣଙ୍କ ପାଖରେ କେତେ

କୃତଜ୍ଞ, ତାହା ବାରମ୍ବାର କହିଚୁ । ଆମର ଅନେକ ପରିଚିତ ଲୋକଙ୍କୁ ମଧ୍ୟ କହିଚୁ ଆପଣଙ୍କର ଜ୍ଞାନ କଥା । ଆମେ ଆପଣଙ୍କୁ ବିଶ୍ୱାସ କରିଚୁ, ଆପଣଙ୍କ ଉପରେ ଆସ୍ଥା ସ୍ଥାପନ କରିଚୁ । ଆପଣଙ୍କ ପ୍ରତି ଆମର କେତେ ଶ୍ରଦ୍ଧା ଓ ସମ୍ମାନ ଅଛି, ତାହା ଆପଣ ଜାଣିପାରିବେ ନାଇଁ, ଶେଖରବାବୁ ।''

—''ମୁଁ ସାର୍, ଜାଣେ ।''

ଶେଖରର ଏଇ ଅନୁପ୍ରବେଶକୁ ହୁଏତ ଏଡ଼ାଇ ଦେଲେ ଶ୍ରୀ ରଥ— ''ଆମେ କେହି ସନ୍ଦେହ କରି ନ ଥିଲୁ ଆପଣ ମନିକା ସହିତ ଏମିତି ସଂପର୍କଟେ ଗଢ଼ିସାରିଚନ୍ତି ବୋଲି । ହଁ, ଆମେ ଥରେ-ଦୁଇଥର ଏ ସଂକ୍ରାନ୍ତରେ ଅନ୍ୟଠୁ ଶୁଣିଚୁ । ବୋଧହୁଏ ଆଠ-ଦଶଟା ବେନାମୀ ଚିଠି ଓ ଟେଲିଫୋନ ମଧ୍ୟ ପାଇଚୁ । ଆମେ ବିଶ୍ୱାସ କରି ନ ଥିଲୁ । ଆପଣ କେତେ ନିରୀହ, କେତେ ପିଲାସୁଲଭ ଦେଖାଯାନ୍ତି !'' ଗୋଟେ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ— ''କିନ୍ତୁ ଏଠାରୁ ଉଦ୍‌ବେଗଜନକ ଖବର ପାଇବା ପରେ ଆମେ ଭାବିଲୁ, ହୁଏତ ଡେରି ହୋଇଗଲାଣି । ତଥାପି କିଛି ଗୋଟେ ପ୍ରତିକାର ଦରକାର ।''

—''ଆପଣ ଅଯଥାରେ ଏଥିପାଇଁ ଚିନ୍ତିତ ହେଉଚନ୍ତି, ସାର୍ । ମନିକା ସହିତ ମୋର ସେମିତି କିଛି ସଂପର୍କ ନାଇଁ ।'' ଶେଖର କହିଲା ।

—''ଆପଣ ସେକଥା କହିବେ ।'' ଶ୍ରୀମତୀ ରଥଙ୍କ ଉକ୍ତି— ''ଆପଣ ଏଇ କଥା କହିବେ ବୋଲି ମନିକା ଟେଲିଫୋନ୍‌ରେ ପରାମର୍ଶ ଦେଇଚି ଆପଣଙ୍କୁ । ସେ ଜାଣି ନାଇଁ, ତା'ର ଏଇ କଥାକୁ ଆମେ ଶୁଣିନେଇଚୁ । ତା'ର ଏଇ କଥା ହିଁ ସମସ୍ତ ବ୍ୟାପାର ସଂପର୍କରେ ଧାରଣାଟିଏ ଦେଉଚି । ବ୍ୟାପାରଟା ବାସ୍ତବିକ ଯଥେଷ୍ଟ ଗୁରୁତର ଏବଂ ଚିନ୍ତାର କାରଣ ।''

ନିରସ୍ତ୍ର ହୋଇଗଲା ଶେଖର । ଦେଖାଗଲା ନିର୍ବୋଧ । ରଥ ଦଂପତି ଲକ୍ଷ୍ୟ କଲେ ତା'ର ଏଇ ଅସହାୟ ମୁହଁକୁ । ଶେଖର ଠିକ୍ ଏଇ ପ୍ରକାରର ଫିଲ୍ମ ଦେଖିଚି । ଅଭିଭାବକ ଭୟ ଦେଖାଇବେ । ଅର୍ଥ ଯାଚିବେ । ସେ ସ୍ଥାନରୁ ଅନ୍ୟ କେଉଁଆଡ଼େ ପଳାଇଯିବାକୁ ଚେତାବନୀ ଦେବେ । ଫିଲ୍ମର ଏଇ ଦୃଶ୍ୟ ତାକୁ ଜଣା ପଡୁଥିଲା ଚିରାଚରିତ; ତେଣୁ ବିରକ୍ତିକର । ସେ ଆଦୌ ଅନୁମାନ କରି ନ ଥିଲା ଯେ ଏମିତି ଏକ ଦୃଶ୍ୟ ବାସ୍ତବରେ ଘଟିବ ପୁଣି ତାକୁ କେନ୍ଦ୍ର କରି ।

ଚଟାଣ ଧସକି ପଡୁଥିଲା, ନା, ସେ ଘୂରିବୁଲୁଥିଲା ନଟୁ ଭଳି ? କିଛି ଜାଣିପାରୁ ନ ଥିଲା ସେ । ନିରବ ରହିଲା । ସୂଚେଇଦେଲା ଯେ ବର୍ତ୍ତମାନ ପାଇଁ ତା'ର ଆଉ କିଛି କହିବାର ନାଇଁ ।

ପୁଣି ଫିଲ୍ମ ଡାଇଲଗ୍– ''ଆପଣ ଦୟାକରି ମନିକାକୁ ଡିଷ୍ଟର୍ବ କରନ୍ତୁ ନାହିଁ । ବଡ଼ପୁଅ ଭବେଶ ଆମ ଜୀବନର ଗୋଟେ ବିଫଳତା । କିଛି ହୋଇପାରିଲା ନାହିଁ । ମନିକା କିଛି ଗୋଟେ କରିପାରେ । ତା'ର ଟାଲେଣ୍ଟ ଅଛି । ତାକୁ ସବୁମତେ ଆମେ ସାହାଯ୍ୟ କରୁଛୁ; ଯେମିତିକି ଆପଣଙ୍କ ସାହାଯ୍ୟ ନେଇଥିଲୁ । ତା' ପଢ଼ା ବନ୍ଦ କରିବା ପାଇଁ ଆମେ ଚିନ୍ତା କରୁଥିଲୁ । କରୁଚୁ ମଧ୍ୟ । ସେ କିନ୍ତୁ କହୁଚି ଯେ, ଆପଣଙ୍କ ସହିତ ସଂପର୍କ ଛିନ୍ନ କରି ସେ ପଢ଼ାପଢ଼ିରେ ମନ ଦେବ ।''

–''ଭେରି ଗୁଡ୍ ! ତା' ହେଲେ ତ ସମସ୍ୟାର ସମାଧାନ ହୋଇଗଲା !'' ଶେଖର ପ୍ରକାରାନ୍ତରେ ଟାରିଫ୍ କଲା ଏ ଦୁହିଁଙ୍କୁ ।

–''ନା ।'' ଶ୍ରୀ ରଥ କହିଲେ– ''ଆଉ ବିଶ୍ୱାସ ନାହିଁ । ମୋର ପରାମର୍ଶ ହେଉଚି, ଆପଣ ଏ ସହରରେ ନ ରହି, ରହନ୍ତୁ ଆପଣଙ୍କ କଲେଜ ଥିବା ସହରରେ । ଆପଣଙ୍କୁ ବହୁ ଦୂରକୁ ବଦଳି କରିବା ପାଇଁ ଆମେ ଲାଗିପଡ଼ିଚୁ ।''

ଗଭୀର ଭାବେ ଆହତ ହେଲା ଶେଖର; ମାତ୍ର ସେ କିଛି କହିବା ପୂର୍ବରୁ ଶ୍ରୀମତୀ ରଥ ଶୁଣେଇଲେ– ''ସମସ୍ତେ କହୁଥିଲେ ଆପଣ ପ୍ରଶାସନିକ ସେବାରେ ଯୋଗ ଦେବା ପାଇଁ ସମର୍ଥ । ତାହା କଲେ ନାହିଁ । ପୁଣି କଲେଜଠାରୁ ଏତେ ଦୂର ଏ ସହରରେ ରହିବାକୁ ପସନ୍ଦ କରୁଚନ୍ତି ! ଯେ କେହି ଲୋକ ଜାଣିପାରିବ ଆପଣଙ୍କ ମତଲବ ! ଛି, ଆପଣ ଆମ ସହିତ ବିଶ୍ୱାସଘାତକତା କରି ନାହାନ୍ତି ?''

ପ୍ରବଳ ଉତ୍ତେଜନା ଓ କ୍ରୋଧ ଥିଲା ତାଙ୍କ ସ୍ୱରରେ । ଏ ପର୍ଯ୍ୟନ୍ତ ଶୃଙ୍ଖଳିତ ହୋଇ ରହିଥିବା ପରିବେଶର ପରିପାଟୀ ବଦଳିଗଲା । ତାଙ୍କୁ ଶାନ୍ତ କରିବାକୁ ଯାଇ ଶ୍ରୀ ରଥ କହିଲେ ସ୍ୱାଭାବିକ ସ୍ୱରରେ– ''ରିଲାକ୍ସ ! ଟେକ୍ ଇଟ୍ ଇଜି ! ନୋ, ଉତ୍ତ୍ୟକ୍ତ ହୁଅ ନାହିଁ । ଆମେ ଜଣେ ଉଚ୍ଚଶିକ୍ଷିତ, ଦାୟିତ୍ୱବାନ ଭଦ୍ରଲୋକ ସହିତ କଥାବାର୍ତ୍ତା କରୁଚେ ।''

–''ଭଦ୍ରଲୋକ !'' ଶ୍ରୀମତୀ ରଥ ଅଟକାଇପାରୁ ନ ଥିଲେ ବିସ୍ଫୋରଣକୁ । କହିଲେ– ''ବୁଦ୍ଧି, ଜ୍ଞାନ ପାକଳ ହୋଇ ନ ଥିବା ଗୋଟେ କଲେଜ ପଢୁଆ ଝିଅକୁ କେତେ ସହଜରେ ଆପଣ କାବୁ କରିପାରିଲେ ! ସତରେ, କି ସାହସ ଆପଣଙ୍କର ! ଆପଣଙ୍କୁ ଆମେ ଘର ଭିତରେ ପୂରଉଥିଲୁ, ବସଉଥିଲୁ ଡାଇନିଙ୍ଗ୍ ଟେବୁଲରେ । ଆପଣଙ୍କ ଅଇଁଠା ଉଠେଇ ନେଉଥିଲୁ । ଆପଣ ଏତିକିରେ ସନ୍ତୁଷ୍ଟ ହୋଇପାରିଲେ ନାହିଁ ?''

ସବୁଠାରୁ ଦୁର୍ବଳ, ସ୍ପର୍ଶକାତର ସ୍ଥାନ ଉପରେ ପ୍ରଚଣ୍ଡ ଚୋଟଟେ ପକେଇଲେ ସେ । ଶେଖରର ଅନ୍ତର ମନ୍ଥି ହୋଇଗଲା ଏବଂ ଏଇ ମନ୍ଥନରୁ ନିର୍ଗତ ହେଲା

ଏମିତି ଏକ ରସ ଯାହା ରଥ ଦଂପତିଙ୍କର ସବୁ ଆସ୍ଫାଳନ ଓ ଅହଙ୍କାରକୁ ତରଳାଇଦିଅନ୍ତା ନିମିଷକ ମଧ୍ୟରେ । ତା'ର ଶିରା-ପ୍ରଶିରା, ମାଂସପେଶୀ ଅଭୂତପୂର୍ବ ଟେନ୍‌ସନ୍ ଯୋଗୁଁ ଜଡ଼ସଡ଼ ହୋଇପଡ଼ିଲା । କଠୋର ହୋଇପଡ଼ିଲା ସେ । ତା'ର ତଥାକଥିତ ନିରୀହ, ପିଲାସୁଲଭ ଖୋଳପା ଭାଙ୍ଗିଯାଉଥିଲା ଖଣ୍ଡ ଖଣ୍ଡ ହୋଇ ।

ସେ ଚାହିଁଲା ସେ ଦୁହିଁଙ୍କୁ ଏବଂ ଘୋଷଣା କଲା ସ୍ପଷ୍ଟ, ନିର୍ଭୀକ ସ୍ୱରରେ– ''ମୁଁ ଭଲ ପାଏ ମନିକାକୁ । ସେ କେଉଁ ପରିବାରର, କାହାର ଝିଅ, ସେସବୁ କଥା ମୋ ପାଇଁ ଅବାନ୍ତର । ମୁଁ ରହିବି ଏଇ ଫ୍ଲାଟ୍‌ରେ, ଏଇ ସହରରେ । ଡୁ ୟୁ ଅଣ୍ଡରଷ୍ଟାଣ୍ଡ ? ଆପଣ ମୋ ବ୍ୟକ୍ତିଗତ ଜୀବନର ଗାର୍ଡ଼ିଆନ ହେବାର ନିର୍ବୋଧତା କରନ୍ତୁ ନାହିଁ ।''

ଗୋଟେ ମୁହୂର୍ତ୍ତ ପାଇଁ ଏ ଦୁହିଁଙ୍କର ଗରମ ମେଜାଜ୍ ଥଣ୍ଡା ହୋଇଗଲା । ସେମାନେ ଏଥର ଦେଖାଗଲେ ଅସହାୟ ଓ ଦୟନୀୟ । ଶ୍ରୀଯୁକ୍ତ ରଥ ଏମିତି ମୁକାବିଲାଟେ ଚାହୁଁ ନ ଥିଲେ । ନିଜ ପତ୍ନୀଙ୍କୁ ସେ ବାରମ୍ବାର ସତର୍କ କରି ଦେଉଥିଲେ ତାଉ ନ ଦେଖାଇବା ପାଇଁ । ବିଗାଡ଼ିଦେଲେ ସେ । ପ୍ରରୋଚନା ସହିତ କଠୋରତା ହୁଏତ କାମ ଦେଖାଇଥାନ୍ତା; ବଚସା ଓ ଆତଙ୍କ ପ୍ରଦର୍ଶନ ନୁହେଁ ।

ଏଥର ସେ କହିଲେ– ''ମୁଁ ଦୁଃଖିତ, ଶେଖରବାବୁ, ମୋ ମିସେସ୍‌ଙ୍କ ଆକ୍ଷେପ ପାଇଁ । ମୁଁ କହୁଥିଲି, ବ୍ୟାପାରଟା ଠିକ୍ ବାଟରେ ଗତି କରି ନାହିଁ । ଆପଣଙ୍କର ବହୁତ ସମୟ ଅଛି । ଆପଣ ପ୍ରସ୍ତୁତ ହୁଅନ୍ତୁ ପ୍ରଶାସନିକ ସେବାରେ ଭର୍ତ୍ତି ହେବା ପାଇଁ । ଆପଣଙ୍କର ସାମର୍ଥ୍ୟ ଅଛି । ଆପଣଙ୍କର ବୟସ ସୀମା ମଧ୍ୟ କୋହଳ କରାଯାଇଚି । ଏକ ନିରାପଦ, ମର୍ଯ୍ୟାଦାଜନକ ଭବିଷ୍ୟତ ଆପଣଙ୍କୁ ଅପେକ୍ଷା କରିଚି । ମନିକାକୁ ଆଦୌ ଡିଷ୍ଟର୍ବ କରନ୍ତୁ ନାହିଁ । ଦେଖନ୍ତୁ, ନିତାନ୍ତ ଅପ୍ରୀତିକର ପରିସ୍ଥିତିକୁ ଏଡ଼ାଇବା ଦାୟିତ୍ୱ ଆପଣଙ୍କର । ଆପଣ ନିଜ ପ୍ରତି ସଚେତନ ହେଲେ ସବୁ ସମସ୍ୟା ଉଭେଇଯିବ ଗୋଟିଏ ମୁହୂର୍ତ୍ତରେ ।''

ସେମାନେ ପଳେଇଯିବାର ବହୁ ସମୟ ପର୍ଯ୍ୟନ୍ତ ଶେଖର ବସିରହିଥିଲା । ଅନୁଭବ କରୁଥିଲା ଦୃଢ଼ତା ଓ ଶପଥ ତା' ଭିତରେ ଠୁଳ ହେଉଥିବାର । ନିଜପ୍ରତି ସଚେତନତା ! ନିରାପଦ ଭବିଷ୍ୟତ ! କ'ଣ ଏସବୁ ? ଏବେ ନିଜ କଥା ଭାବି ହୁଏ ନାହିଁ । ସେଠାରେ ମନିକା । ଭବିଷ୍ୟତ କଥା ଭାବି ହୁଏ ନାହିଁ । ସେଠାରେ ମନିକା । ମନିକା ତା' ଚେତନାରେ, ଶାରୀରିକ ଓ ମାନସିକ ସତ୍ତାରେ । ସବୁଠି ସେ । ତାକୁ ବାଦ ଦେଇ କିଛି ବି ଚିନ୍ତା କରିହେଉନି ।

ଏହାର ମାତ୍ର ଦୁଇଦିନ ପରେ କଲେଜ ଠିକଣାରେ ମନିକାର ଚିଠି । ତାକୁ ୟୁନିଭର୍ସିଟି ନ ଛାଡ଼ିବା ପାଇଁ ସିଦ୍ଧାନ୍ତ ନିଆଯାଇଥିଲା । ମାତ୍ର ସେ ଘୋଷଣା କଲା ଯେ, ତାହା ଯଦି ହୁଏ, ତେବେ ପରିବାରର ମାନମର୍ଯ୍ୟାଦାକୁ ସେ କେବଳ ଧୂଳିସାତ କରିବ ନାଇଁ; ସମସ୍ତଙ୍କୁ ଜେଲ ପଠେଇ ଦେବା ପାଇଁ ପଦକ୍ଷେପ ନେବ । ସେ ମିଛ ପ୍ରତିଶ୍ରୁତି ଦେଇଚି, ଶେଖର ସହିତ ସଂପର୍କ ନ ରଖିବାକୁ । ସେ ଆହୁରି ମଧ୍ୟ ଶେଖରକୁ ଜଣାଇଚି ଯେ, ସେ ଘର ବଦଳାଇ ନିଜ କଲେଜ ପାଖକୁ ପଳେଇଗଲେ ଭଲ ହେବ । ବାପା-ମାଙ୍କ ଆଗରେ ମନିକାକୁ ସେ ଭଲ ପାଏ ବୋଲି ପ୍ରକାଶ ନ କରିଥିଲେ ବୋଧହୁଏ ଭଲ ହୋଇଥାନ୍ତା ।

ଏ ଚିଠି ସୃଷ୍ଟି କଲା ତୀବ୍ର ପ୍ରତିକ୍ରିୟା ଓ ପ୍ରତିବାଦ ଶେଖର ମନରେ । ମୂଳରୁ ସବୁ କଥା ଭାବିବାବେଳେ ତାକୁ ଜଣାପଡ଼ିଲା, ଏ ପର୍ଯ୍ୟନ୍ତ ସେ କେବଳ ନିଷ୍କ୍ରିୟ ହୋଇ ମନିକାର ଅନୁରୋଧ ଓ ପରାମର୍ଶ ମାନି ଚଳି ଆସିଚି । ମନିକାର ଆନ୍ତରିକତା ଓ ଆବେଗ ପ୍ରତି ତା'ର ସନ୍ଦେହ ନ ଥିଲେ ମଧ୍ୟ ସେ ଆଉ କାହାର ଖେଳନାଟିଏ ହେବାକୁ ପସନ୍ଦ କଲା ନାଇଁ । ସେ ଯେପରି ପହଞ୍ଚିଯାଇଚି ଚରମ ମୁହୂର୍ତ୍ତ ପାଖରେ । ୟାପରେ ଯାହା ଘଟିବାର କଥା ଚଞ୍ଚଳ ଘଟିଯିବା ଉଚିତ । ଏମିତି ଅଭିନୟ ଓ ସତର୍କତା ମଧ୍ୟରେ ରହି ସେ ଅଣନିଃଶ୍ୱାସୀ ହୋଇପଡ଼ିଲାଣି ।

ୟା ସତ୍ତ୍ୱେ ସେ ସ୍ଥିର ମନରେ ଚିନ୍ତା କଲା ମନିକାର ପ୍ରସ୍ତାବ । ହଁ, ଅଛି ଯଥେଷ୍ଟ ବିଜ୍ଞତା ୟା ଭିତରେ । ମନିକା ହୁଏତ ଅପେକ୍ଷା କରୁଚି ଉପଯୁକ୍ତ ସମୟକୁ । ମାତ୍ର ସେଇ ସମୟ କେତେ ଦୂରରେ ? ପୁଣି ଗଣ୍ଡଗୋଳିଆ ହୋଇଗଲା ତା' ଭାବନା । ପୁଣି ଦ୍ୱନ୍ଦ୍ୱ । ପୁଣି ଇତସ୍ତତଃ ଭାବ । ସ୍ପଷ୍ଟ ସିଦ୍ଧାନ୍ତରେ ପହଞ୍ଚି ପାରୁ ନ ଥିବାର ଯନ୍ତ୍ରଣା ।

ସେ'ଦିନ ଫ୍ଲାଟ୍‌କୁ ଫେରି ଶେଖର ଆବିଷ୍କାର କଲା ଏକ କରୁଣ ଦୃଶ୍ୟ । ଶିଡ଼ି ଶେଷରେ, ଠିକ୍ ତା' ଫ୍ଲାଟ୍‌ର ଦ୍ୱାର ସାମନାରେ, ବିଛାଯାଇଚି ଗାମୁଛା । ତା' ଉପରେ ଜାକିଜୁକି ହୋଇ ଶୋଇପଡ଼ିଚନ୍ତି ବାପା । ସେ ବିସ୍ମିତ ହୋଇଗଲା ତାଙ୍କର ଏମିତି ଅଚାନକ ଆସିବା ଦେଖି ।

ସେ ତାଙ୍କୁ ନିଦରୁ ଉଠେଇଲା । ଘର ଭିତରକୁ ନେଲା । ଲୁଗାପଟା ବଦଳାଇବା ପାଇଁ ଓ ଧୋଇ ହେବା ପାଇଁ ଯୋଗାଇଦେଲା ସମସ୍ତ ଜିନିଷ । ପୁଣି ବାହାରିଗଲା, ତାଙ୍କ ସକାଶେ କ'ଣ ଖାଇବା ବନ୍ଦୋବସ୍ତ କରିବା ପାଇଁ ।

ପ୍ରାୟ ଅଧଘଣ୍ଟାଏ ପରେ ସେ ଦୁହେଁ ବସିଥିଲେ ସାମନା ସାମନି । ବାପା ! ଏଇ ଅଳ୍ପ କେତେଟା ମାସ ଭିତରେ ବୟସ ବଢ଼ିଯାଇଚି ଦଶବର୍ଷ । ଧଳା

ଦେଖାଯାଉଚି ମୁଣ୍ଡ । ଗାଲ ତରବର ହେଉଚି ପାଟି ଭିତରକୁ ପଶିଯିବା ପାଇଁ । ଭାଙ୍ଗିଗଲାଣି ବେଶ୍ କେତୋଟି ଦାନ୍ତ । କଠୋର ପରିଶ୍ରମୀ, ନିର୍ଝଞ୍ଝାଳ, ସ୍ୱଚ୍ଛ ଜୀବନ ଯାପନରେ ବିଶ୍ୱାସ କରୁଥିବା ବାପା । ଶେଖର ନିଜକୁ କ୍ଷମା କରିପାରିଲା ନାଇଁ, ବାପା-ମା, ଜମିବାଡ଼ି, ଗାଁ କଥା ବହୁଦିନ ହେଲା ସେ ଭାବି ନ ଥିବାରୁ । ପୁଣି ସୃଷ୍ଟି ହୋଇଗଲା ଆବେଗର ଢେଉ । ତାହା କ୍ଷଣକ ମଧ୍ୟରେ ତାକୁ ସଂଯୋଜିତ କରିଦେଲା ଏଇ ସବୁର ମାଟି ସହିତ । ସେ ଅନୁଭବ କଲା ଗାଁର ପିଲା ସେ । ବାପା-ମା'ଙ୍କ ପାଖରେ ସେ ଅଛି । ଅଛି ନିରାପତ୍ତା ଓ ଆତ୍ମୀୟତା ଭିତରେ ।

ବାପା ଆସିବାର କାରଣ କହିଲେ ସ୍ୱାଭାବିକ, ସ୍ଥିର ସ୍ୱରରେ । ମା' ଅସୁସ୍ଥ ଥିଲା । ଏବେ ଭଲ ଥିଲେ ମଧ୍ୟ ଦୁର୍ବଳ ହୋଇପଡ଼ିଚି । ସେ ଦେଖିବାକୁ ଚାହୁଁଚି ଶେଖରକୁ ।

କେଜାଣି ? ହୋଇଥିବ । ଶେଖରର ତଥାପି ସନ୍ଦେହ ଥିଲା ଯେ, ଏହା ହୁଏତ କାରଣ ହୋଇ ନ ପାରେ ବାପାଙ୍କର ଏଇ ଆକସ୍ମିକ ଆସିବା ମୂଳରେ । ମାତ୍ର ସେ ଗୁଡ଼େଇ ତୁଡ଼େଇ ପ୍ରଶ୍ନ ପଚାରିପାରିଲା ନାଇଁ ବାପାଙ୍କୁ, ସତ କଥା ପାଇବା ପାଇଁ । ଅବିଶ୍ୱାସ କରୁଚି ବୋଲି ସୂଚନା ମଧ୍ୟ ଦେଲା ନାଇଁ ।

ଗାଁ । ଘର । ବାରନ୍ଦାରେ ମା' ହସହସ ମୁହଁ ନେଇ ଢ଼ାଳେ ପାଣି ଧରି । ପରେ ଗାମୁଛା ବଢ଼େଇ ଦେଲା । ଶେଖର ପୋଛି ହେବ । ମା'ର ଅସୁସ୍ଥ ହେବା କଥା ମିଛ, ଯାହା ସେ ଅନୁମାନ କରିଥିଲା । ମାତ୍ର ତାକୁ ବାହାନା ଦେଖାଇ ଅଣାଯାଇଚି ବୋଲି ବିରକ୍ତ ହେଲା ନାଇଁ । ବରଂ ଏଠାରେ ତାକୁ ବହୁତ ଉଶ୍ୱାସ ଲାଗିଲା । ସବୁ ଜଣାପଡ଼ିଲା କୋମଳ, ସାବଲୀଳ । ମା'ର ମୁହଁ ଭଳି, ତା'ର ହାତରନ୍ଧା ଭଳି । ସେ ବୁଲିଆସିଲା ବାରିର ପରିପୂର୍ଣ୍ଣତା ଆଡୁ କାନ୍ଧରେ ଗାମୁଛା ପକେଇ, ଖାଲି ପାଦରେ । ସେ ଅପେକ୍ଷା କଲା, କେତେବେଳେ ସବୁ କଥା କୁହାଯିବ ତାକୁ ।

ଏଥିପାଇଁ ଅପେକ୍ଷା କରିବାକୁ ପଡ଼ିଲା ସଂଧ୍ୟା ପର୍ଯ୍ୟନ୍ତ । ମା' ତୁଳସୀ ଚଉରାରେ ଜାଳିଲା ସଳିତା । ଆଖି ବୁଜି ପ୍ରାର୍ଥନା କଲା । ମୁଣ୍ଡିଆ ମାରିଲା । ଲୁଗା ବଦଳେଇଲା । ଚା' ଆଣିବା ବେଳେ ବାପା ମଧ୍ୟ ଶେଷ କରିଥିଲେ ପ୍ରାର୍ଥନା । ଶେଖର ଟିଭି ଆଡୁ ଆଖି ଫେରାଇ ଚା' କପ୍ ଗ୍ରହଣ କଲା । ବାପା ମଧ୍ୟ ଆସିଲେ ପାଖକୁ । ଆଲମିରା ଭିତରୁ ବାହାର କଲେ ଲଫାପାଟେ । ବଢ଼େଇ ଦେଲେ ଶେଖର ହାତକୁ । ଡାକରେ ଆସିଥିବା ଚିଠି । ବାପାଙ୍କ ନାମରେ ଆସିଥିଲା । ଚିଠି ଲେଖିଥିଲେ ଇଂଜିନିୟର ରଥ । ସଂଯତ, ସୌଜନ୍ୟମୂଳକ

ଭାଷାରେ ଲେଖା ଯାଇଥିଲା । ତାହାର ସାରାଂଶ ହେଉଚି, ଶେଖରକୁ ସେମାନେ ବୁଝେଇବେ ମନିକା ସହିତ କୌଣସି ସଂପର୍କ ନ ରଖିବାକୁ । ଇଏ ଅନ୍ୟ ଏକ ପ୍ରକାରର ଚାପ ପ୍ରୟୋଗ । ନିଶ୍ଚିତ ଭାବରେ ବେଶି ପ୍ରଭାବଶାଳୀ ଚାପ । ଶେଖର ଭାବିଲା ଏବଂ ଚିଠିକୁ ଭର୍ତ୍ତି କଲା ଖାମ୍ ଭିତରେ । ବାପାଙ୍କୁ କହିଲା– "ଏଇଟାକୁ ଯତ୍ନର ସହିତ ରଖିଥାଅ ପାଖରେ ।"

ବାପା ତାହାକୁ ପୁଣି ଆଲମାରି ଭିତରେ ରଖିବା ବେଳେ ନିମ୍ନ ସ୍ୱରରେ କହିଲେ– "ତୋତେ ଏଇଥିପାଇଁ ଡାକିଆଣିଲୁ । ଘରେ କଥାବାର୍ତ୍ତା ହେବା ବୋଲି ।"

–"ବାପରେ, ମୋ ଧନଟା ପରା !" ମା'ର ସ୍ୱଭାବସୁଲଭ ଭାଷା– "ତୁ ସତରେ ଏମିତି କାନ ଶୁଣି ନ ଥିବା କାମଟେ କଲୁ କାହିଁକି ? କାହିଁ ସେମାନେ, କାହିଁ ଆମେ ! ମୋର ତ ଆଖି ପାଉ ନାଇଁ !"

ବାପା ଉଠିଗଲେ ବାରନ୍ଦାକୁ । ନିଶ୍ଚିନ୍ତ ହେଲେ ଯେ ପାଖରେ ନାହାନ୍ତି କେହି । କହିଲେ– "ତୁ କୁଆଡ଼େ ହାକିମ, ମାଜିଷ୍ଟ୍ରେଟ୍ ହୋଇପାରନ୍ତୁ । କେଜାଣି ? ତଥାପି ଏ ଖଣ୍ଡମଣ୍ଡଳରେ ତୁ କେତେ ପାଠ ପଢ଼ି ବଡ଼ ଚାକିରିଟେ କରୁଚୁ । ସେତିକିରେ ଆମ ପେଟ ପୂରିଯାଉଚି । ଅଧିକ କ'ଣ ହେବ ? ବାବୁରେ, ତୁ ଆମର ନିଜ ଜାଗାରେ ଥା । ଜମା ଯାଆନା ଅଡୁଆ ଭିତରକୁ । କ'ଣ ମିଳିବ ସେଥିରୁ ?"

ମା'ର ବିଗଳିତ ସ୍ୱର– "ଏ ଚିଠି ପାଇବା ଦିନ ରାତିରେ ଆମ ଆଖିକୁ ନିଦ ହେଲା ନାଇଁ । ଦୁଶ୍ଚିନ୍ତାରେ ଛଟପଟ ହେଲୁ । କାଳେ କିଛି ଅଘଟଣ ଘଟିବ କି ? ତୋ' ଉପରେ କିଛି ହୋଇଗଲେ ଆମେ ଦୁହେଁ ବଞ୍ଚିପାରିବୁ ନାଇଁ । ଜୀବନ ଚାଲିଯିବ ଆପଣାଛାଏଁ ।"

ଘୋଷଣାଟା ଅତିରଂଜିତ ନ ଥିଲା । ଶେଖର ଭଲକରି ଜାଣେ, ଏ ଦୁହେଁ କାହିଁକି, କାହା ପାଇଁ ବଞ୍ଚି ରହିଚନ୍ତି । ସେମାନଙ୍କର ନିଃଶ୍ୱାସ, ରକ୍ତ ସଞ୍ଚାଳନ, ହୃତ୍‌ପିଣ୍ଡ କ୍ରିୟାର ହେତୁ ହେଉଚି ସେ ନିଜେ । ଏ ଦୁହିଁଙ୍କର ଜୀବନ ହେଉଚି ସେ ନିଜେ । ବିଚିତ୍ର ଅନୁଭୂତି ଯା ପରେ । ସବୁ ଯେମିତି ଅପ୍ରାସଙ୍ଗିକ ଓ ମୂଲ୍ୟହୀନ ଜଣାପଡୁଚି । ସବୁ ଅର୍ଥହୀନ ଓ ବର୍ଜନୀୟ । ଜୀବନରେ ତା'ର କୃତିତ୍ୱ, ଚାକିରି ଏବଂ... ଏବଂ... ମନିକା ! ଅଟକିଗଲା ସେଇଠି ସେ । ଆଉ କିଛି ଭାବିବା ସମ୍ଭବ ହେଲା ନାଇଁ ।

ଦୁଇ ଦିନ ପରେ ଫ୍ଲାଟ୍ । ପୁଣି ନିଃସଙ୍ଗତା । ସେ ଠିଆହେଲା ଫ୍ୟାନ ତଳେ ନିର୍ବାକ୍ ହୋଇ । କିଛି ସମୟ ପରେ ଟଏଲେଟ୍‌ରୁ ବାହାରିବା ବେଳେ ଦରଜାରେ କରାଘାତ । ରାତି ଆଠଟା ବେଳେ କିଏ ହୋଇପାରେ ? ଅନ୍ୟ

ତିନୋଟି ଫ୍ଲାଟରେ ରହୁଥିବା କାହାରି ସହିତ ତା'ର ଭଲ ପରିଚୟ ନାହିଁ; ଆନ୍ତରିକତା ତ ଦୂରର କଥା । ସେ କେବଳ ଏତିକି ଜାଣେ ଯେ, ତା' ପାଖ ଫ୍ଲାଟ୍‌ରେ ରହନ୍ତି ୟୁନିଭର୍ସିଟିର ଜଣେ କେହି କର୍ମଚାରୀ । ତଳ ମହଲା ଫ୍ଲାଟ୍ ଦୁଇଟା ଅଧିକାର କରିଚନ୍ତି ଡ୍ୟାମ୍ ଏବଂ ବିଦ୍ୟୁତ ବିଭାଗର ଦୁଇଜଣ ସମ୍ଭବତଃ ଓଭରସିଅର୍ !

ସେ କବାଟ ଖୋଲିଲା । ତା' ସାମନାରେ ଫ୍ଲାଟ୍ ମାଲିକ ଶ୍ରୀ ମେହେର । ମାତ୍ର କିଛି ଦିନ ହେବ ସର୍କଲ୍ ଇନ୍‌ସପେକ୍ଟରର ଅଫିସ୍ ହେଡ୍‌କ୍ଲର୍କ ଭାବେ ରିଟାୟାର କରିଚନ୍ତି ।

—"ନମସ୍କାର । ଆସନ୍ତୁ ଭିତରକୁ ।" ବିନମ୍ର ହୋଇ ଶଙ୍କିତ ଶେଖର ନିମନ୍ତ୍ରଣ କଲା ଭଦ୍ରଲୋକଙ୍କୁ ।

ସେ ଆସିଲେ ଭିତରକୁ । ବସିଲେ ଗୋଟେ ଚେୟାରରେ । ଚାରିଆଡ଼େ ଆଖି ଫେରାଇ ଆଣିଲେ, ସମ୍ଭବତଃ ତାଙ୍କ ଘର ଉପରେ ଶେଖର ଅତ୍ୟାଚାର କରୁଚି କି ନାହିଁ ଜାଣିବା ପାଇଁ ।

—"ମୁଁ ନ ଥିଲି ଏଠାରେ କିଛି ଦିନ ହେଲା ।" ଶ୍ରୀ ମେହେର କହିଲେ । ଯୋଗ କଲେ— "ଯାଇଥିଲି ଝିଅ ଘରକୁ । ସେଠାକୁ ଯିବା ପାଇଁ ମୁଁ ବ୍ୟାଗ୍ ସଜାଡ଼ିବା ବେଳେ ଇଞ୍ଜିନିୟର ଜଣେ ପହଞ୍ଚିଲେ ତାଙ୍କ ମିସେସ୍‌ଙ୍କ ସହିତ । ଆପଣଙ୍କୁ ଏ ଘରୁ ବାହାର କରିଦେବା ପାଇଁ କହିଲେ ।"

ଉଭେଇଗଲା ସବୁ ରକ୍ତ ଶେଖର ମୁହଁରୁ । ସେ ଶୁଣିବାକୁ ପ୍ରସ୍ତୁତ ହୋଇ ରହିଲା ପରେ କଥା । ତା' ଆଡ଼ୁ ମୁହଁ ଫେରାଇ ସେ କହିଲେ— "ମୁଁ ଚାକିରି କଲା ବେଳେ ଭିଜିଲାନ୍‌ସ ଚଢ଼଼ଉ କରିଥିଲା ମୋ ଘର ଉପରେ । କ'ଣ ନା, ମୁଁ ଲାଞ୍ଚ ନ ନେଲେ କାହାରି ମୁହଁକୁ ଚାହୁଁ ନାହିଁ । ଅସଲ ବଦ୍‌ମାସ ଥିଲା ସି.ଆଇ. ନିଜେ । ଅନାମ ପଣ୍ଡା ବୋଲି ଏ ଲୋକଟାର କିଛି ହେଲା ନାହିଁ । ଅଥଚ ଭିଜିଲାନ୍‌ସ ଇନ୍‌ସପେକ୍ଟର ମୋତେ କହିଥିଲେ— ସରକାର ତୁମ ହରିଜନମାନଙ୍କୁ ଦୟାକରି ଚାକିରି ଦେଉଚି । ଦେଖିଲା ବେଳକୁ ତୁମେ ବି ଲୋକମାନଙ୍କୁ ଶୋଷଣ କରୁଚ ? ଆଜ୍ଞା, ମୋ ଦିମାକ୍ ବିଷାକ୍ତ ହୋଇଯାଇଥିଲା ସେ'ଦିନ । ଏଇ ଯେଉଁ ଇଂଜିନିୟର ଆସିଥିଲେ ମୋ ପାଖକୁ, ତାଙ୍କଠୁ କିଛି କଥା ଶୁଣିଲି ଆପଣଙ୍କ ବିଷୟରେ । ମୋତେ ଭାରି ଭଲ ଲାଗିଲା । ଆପଣ ରହିବେ, ଏ ଫ୍ଲାଟ୍‌ରେ । ଯେତେଦିନ ଆପଣଙ୍କର ମନ ହେବ ।"

କୌଣସି ଲୋକ ପ୍ରତି ଜୀବନରେ ଏତେ କୃତଜ୍ଞ ହୋଇ ନ ଥିଲା ଶେଖର । ବାସ୍ତବିକ ସେ ପ୍ରଥମେ ବିଶ୍ୱାସ କରି ପାରି ନ ଥିଲା ଶୁଣିଥିବା କଥା । ଭାଷା

ପାଇଲା ନାହିଁ ନିଜ ପ୍ରତିକ୍ରିୟା ପ୍ରକାଶ କରିବା ପାଇଁ । ଅଭିଭୂତ ହୋଇପଡ଼ିବାର ମୁହୂର୍ତ୍ତ ଥିଲା ସେଇଟା । କହିଲା– "ମୁଁ ଜାଣିପାରୁ ନାହିଁ କେମିତି କୃତଜ୍ଞତା ପ୍ରକାଶ କରିବି ।" ଘରମାଲିକ ବି ହୃଦୟବାନ ହୋଇପାରେ ?

–"ତାହା ମୋର ଦରକାର ନାହିଁ ।" ସେ ଉଠିଲେ ଏବଂ ଶେଖରର ପିଠି ଥାପୁଡ଼ାଇଲେ– "ଆପଣ ମୋ ପୁଅ ବୟସର ହେବେ । ତେବେ ମୋର ପରାମର୍ଶ ହେଉଚି, ନିଜ କାମ କରନ୍ତୁ । ଝାମେଲା ଭିତରେ ପଶନ୍ତୁ ନାହିଁ । କାରଣ ଆପଣ ଜାଣନ୍ତି, କେହି ଆପଣଙ୍କ ପିଠିରେ ପଡ଼ିବେ ନାହିଁ । ହସିବେ ସମସ୍ତେ ଆପଣଙ୍କ ଅବସ୍ଥା ଦେଖି । ଥଟ୍ଟା କରିବେ । ମୁଁ ହାଡ଼େ ହାଡ଼େ ଚିହ୍ନେ ଆମର ଏ ସମାଜକୁ, ସରକାରକୁ । ସବୁ ଫାଲ୍‌ତୁ, ସବୁ ଟ୍ରାସ୍ ।"

ବେଶ୍ ଉତ୍ତେଜିତ ହୋଇ ଏତକ କହିବା ବେଳେ ସେ ପହଞ୍ଚି ଯାଇଥିଲେ ଦରଜା ପାଖରେ । ପଚାରିଲେ– "ଖିଆପିଆ, ଘର-ଦ୍ୱାର ସଫା କରିବାରେ ଭାରି ହରକତ ହେଉଥିବେ । ରଖିବେ କି ଚାକର-ଚାକରାଣୀ ପିଲାଟେ ? ମୁଁ ଯୋଗାଡ଼ କରିଦେବି । ଅବଶ୍ୟ ଯଦି ଚୋରି କରି କୁଆଡ଼େ ପଳେଇଯାଏ, ତେବେ ଅସୁବିଧା । ଆପଣ ତ କଲେଜ ଯାଇଥିବେ । ଆଜିକାଲି ବିଶ୍ୱାସ ନାହିଁ କାହାରିକୁ । ଅଭାବରେ ଥିବା ଲୋକଗୁଡ଼ାକ ବେଶି ଖେଚଡ଼ ହୋଇଯାଇଚନ୍ତି ।" ଟିକିଏ ରହି ପୁଣି ଦାର୍ଶନିକ ଭଙ୍ଗୀରେ ଯୋଗ କଲେ– "ଆଜିକାଲି ଅଭାବ କାହାର ବା ନାହିଁ ? ଯାହାର ଯେତେ ପଇସା, ତା'ର ଅଭାବ ସେତେ ବେଶି ବୋଲି ସେ ଭାବେ ।"

ଶେଖରର ଉତ୍ତର ପାଇଁ ସେ ଅପେକ୍ଷା କଲେ ନାହିଁ । ଘର ଭିତରେ ଛାଡ଼ିଦେଇ ଗଲେ ଏକ ମନମତାଣିଆ ଅନୁଭୂତି । ଶେଖର ଏତେ ହାଲୁକା ଅନୁଭବ କରି ନ ଥିଲା ଅନେକ ଦିନ ହେଲା । ତା' ଭିତରୁ ନିଃସଙ୍ଗତା ବୋଧ କଟି ଯାଉଥିଲା । କେହି ଜଣେ ଅଛନ୍ତି ପାଖରେ, ଫ୍ଲାଟ୍ ପାଖ ଏକମହଲା ଘରେ । ମାତ୍ର କେତୋଟି ମିନିଟ୍ ଭିତରେ ହୃଦୟରେ ଆସ୍ଥାନ ଜମେଇ ପାରିବାର କୌଶଳ ଜଣାଥିବା ଶ୍ରୀ ମେହେର ହୁଏତ ଜାଣନ୍ତି ନାହିଁ କେତେ କୃତଜ୍ଞ କରି ଦେଇଗଲେ ଶେଖରକୁ ।

ପରଦିନ ସଂଧ୍ୟାରେ ଶ୍ରୀ ମେହେର ପୁଣି ତା' ଫ୍ଲାଟ୍‌ରେ । ସାଙ୍ଗରେ ଚଉଦ-ପନ୍ଦର ବର୍ଷର ପିଲାଟେ । ତାକୁ କୁହାଗଲା ଯେ ଶିବ ଥିଲା ଜଣଙ୍କ ଘରେ । ମାଲିକାଣୀ ଗରଗର ହୁଏ, ପିଟେ, ଅଇଁଠା ଦିଏ ଖାଇବାକୁ । ଦୁନିଆଁ କାମ କରାଏ । ଘରର ଦୁଇଟା ପିଲା ବି ପିଟନ୍ତି । ଭଲ ଲାଗିଲା ନାହିଁ ବୋଲି ଛେଉଣ୍ଡ ପିଲାଟା ପଳେଇଆସି କାମ ଖୋଜୁଥିଲା ।

ସବୁ ହେଲା ଯେ, ରୋଷେଇ କରିବାକୁ ସରଂଜାମ କାହିଁ ? ହତାଶ ହୋଇ ଶ୍ରୀ ମେହେର ପଚାରିଲେ– "କିଛି ବି ନାହିଁ ?"

–"ନା ।" ଶେଖରର ଆଉ ସଙ୍କୋଚ ନ ଥିଲା ତାଙ୍କ ପାଖରେ ।

–"କ'ଣ ତେବେ କରିବେ ? ପିଲାଟା ମୋ ମୂଳ ଗାଁ ପାଖ ଗୋଟେ ଗାଁର । ରହିଯାଇଥିଲେ ଆପଣଙ୍କର ସୁବିଧା ହୋଇଥାନ୍ତା ।" ସେ କହିଲେ ନିମ୍ନ ସ୍ୱରରେ ।

–"ନାଇଁ, ନାଇଁ ।" ପ୍ରତିବାଦ କଲା ଶେଖର– "ଇଏ ରହିବ ମୋ ପାଖରେ । ମୋତେ କିନ୍ତୁ ଆଉ ଗୋଟେ କାମରେ ସାହାଯ୍ୟ କରିବେ ।"

–"କି ସାହାଯ୍ୟ ?"

–"କ'ଣ ସବୁ ଦରକାର ରୋଷେଇଘର ପାଇଁ ମୋତେ ମାଲୁମ ନାହିଁ ।" ଶେଖର କହିଲା ଆମୋଦିତ ହୋଇଥିବା ଘର ମାଲିକଙ୍କ ମୁହଁଆଡୁ ଦୃଷ୍ଟି ଫେରାଇ– "ମୋତେ ଟିକେ ସାହାଯ୍ୟ କରନ୍ତୁ ।"

ପରଦିନ ସକାଳେ ପରଟା ଓ ଭଜା ଭଡ଼ାଘରେ । ହାତ ଧୋଇବା ବେଳେ ପ୍ରେସରକୁକରର ହୁଇସିଲ୍ । ଘରର ବାତାବରଣ ବଦଳିଗଲା କୁହୁକ ବଳରେ ସତେଯେପରି । ଏଇଭଳି ବାତାବରଣଟେ ସେ ଖୋଜୁଥିଲା । ଶ୍ରୀ ମେହେର ଆହୁରି ବଡ଼ ସାହାଯ୍ୟଟେ କରିଥିଲେ ତାକୁ । କେଉଁଠୁ କେଜାଣି ଯୋଗାଡ଼ କରି ଦେଇଥିଲେ ସିଲିଣ୍ଡର ଓ ପୁରୁଣା ଚୁଲି । ଯାପରେ ସେ ଅନୁଭବ କଲା, କିଛିତ ସ୍ଥିରତା ଆସିଯାଇଚି ତା' ଜୀବନରେ ।

–"ବାବୁ, ଯା ପାଖରୁ ଆଉ କ୍ଷୀର ରଖିବା ନାହିଁ ।" ତିନି ଦିନ ପରେ ନିଷ୍ପତ୍ତି ଶୁଣେଇଲା ଶିବ ।

–"କାହିଁକି, କ'ଣ ହେଲା ?" ସେ ପଚାରିଲା ଶିବକୁ, ଯେ'କି ଏତିକି ମାତ୍ର ଦିନରେ ପାଇପାରିଥିଲା ଅନେକ ସ୍ନେହ ତା'ଠାରୁ ।

–"ବହୁତ ପାଣି । ତଳ ଘର ବାବୁଙ୍କ ଘରେ ଯିଏ କ୍ଷୀର ଦେଉଚି, ସେ ଆମକୁ ଦେବ । ତା' କ୍ଷୀର ଗୋଟେ ପ୍ରକାର ।" ଶିବ ସାର୍ଟିଫିକେଟ୍‌ଟେ ଦେଲା ।

–"ତୁ ଜାଣିଲୁ କିମିତି ଆମ କ୍ଷୀରରେ ପାଣି ବେଶି ବୋଲି ?" ଶେଖର ପଚାରିଲା ବାସ୍ତବିକ ଆଶ୍ଚର୍ଯ୍ୟ ହୋଇ । ତା' ନିଜ ଘରେ କ୍ଷୀରର ସୁଅ; କିନ୍ତୁ ଭଲ କ୍ଷୀରର ସ୍ୱରୂପ ଅନ୍ୟଠାରୁ ଅଲଗା କିପରି, ତାହା ଜଣା ନ ଥିଲା ତାକୁ ।

–"କ'ଣ ହେଲା ! ଜାଣି ହେବ ନାହିଁ ?" ସେ ଓଲଟା ପଚାରିଲା ।

ଏଇ ବ୍ୟସ୍ତତା ଓ ସନ୍ତୋଷ ଅନ୍ତରାଳରେ ବଳବତ୍ତର ଥିଲା ଯନ୍ତ୍ରଣା, ଶୋକ ଓ ସଂଶୟ । ଦେଖା ହୋଇ ନାହିଁ ମନିକା ସହିତ କିଛି ଦିନ ହେଲା । ସେ ଜାଣି ନାହିଁ ହଷ୍ଟେଲକୁ ସେ ଫେରିଲାଣି କି ନାହିଁ ।

ଗୋଟିଏ ମୁହୂର୍ତ୍ତ ବି ଲାଟନ୍ତା ନାହିଁ ସେଠାରେ ପହଞ୍ଚିବାକୁ, ସମସ୍ତଙ୍କର ଦୃଷ୍ଟି ଓ କୌତୂହଳକୁ ଅବମାନନା କରି ତାକୁ ଦେଖା କରିବା ପାଇଁ । ମାତ୍ର ଗୋଟିଏ ଆଶଙ୍କା ତାକୁ ଅଟକାଇ ରଖିଥିଲା । ସେ ସେଠାକୁ ଗଲେ ମନିକାର କିଛି କ୍ଷତି ହେବ କି ? ତାକୁ ପ୍ରତ୍ୟାହାର କରି ନିଆଯିବ କି ୟୁନିଭର୍ସିଟିରୁ ? ଏତକ ଯଥେଷ୍ଟ ତାକୁ ପଙ୍ଗୁ ଓ ଅଥର୍ବ କରିଦେବା ପାଇଁ । ସେ ଅଛି ପାଖରେ । ସେଇଠି ଥାଉ । ଏହା କିଛି କମ ସନ୍ତୋଷର କଥା ନୁହେଁ । ସମ୍ଭବତଃ ସେ ଅଛି ଗୋଟେ ସତର୍କ ଦୃଷ୍ଟି ଘେର ଭିତରେ । ସେଠାରେ ମନିକାକୁ ସାକ୍ଷାତ କରିବା କଥା ଇଂଜିନିୟରଙ୍କ ଘରେ ପହଞ୍ଚିଯିବ । ବିଭ୍ରାଟ ହୋଇଯିବ ତା'ପରେ ।

ବ୍ୟାକୁଳତା ଦମନ କରିବା ଅବସ୍ଥାରେ ସେ ନ ଥିଲା । ବାପା-ମାଙ୍କର ଆଶଙ୍କା, ରଥ ଦଂପତିଙ୍କର ଚେତାବନୀ ତା' ଭିତରର ଆତୁରତାକୁ ଚୁପ୍ କରି ପାରୁ ନ ଥିଲା । ସେ ବାସ୍ତବିକ କ'ଣ କରିବ ? ଏଇ ଉପାୟହୀନତା ଭିତରେ ଥିବାବେଳେ ସେ ପହଞ୍ଚି ଯାଇଥିଲା ମନିକା ଡିପାର୍ଟମେଣ୍ଟରେ ।

ଏ ସୃଷ୍ଟିକୁ ଦେଖିବା ପାଇଁ ବ୍ୟାକୁଳ ଥିବା ଜଣେ ଅନ୍ଧ ଦୃଷ୍ଟିଶକ୍ତି ଲାଭ କଲେ ମଧ୍ୟ ଏତେ ପାଗଳ ହୋଇଯାଆନ୍ତା ନାହିଁ, ସେମାନେ ପରସ୍ପରକୁ ଦେଖି ଯେମିତି ହେଲେ ।

—"ଏତେ ଦିନ ପରେ ଆପଣଙ୍କର ମନେପଡ଼ିଲା ଯେ ଏଠାରେ ମନିକା ବୋଲି କେହି ଜଣେ ଅଛି ?" ସେ ସେଣ୍ଟିମେଣ୍ଟାଲ ଦୃଶ୍ୟଟେ ସୃଷ୍ଟି କରିବାକୁ ଯାଉଥିଲା, ଡିପାର୍ଟମେଣ୍ଟ ବାରନ୍ଦାର ଗୋଟେ କୋଣରେ । ଲୁହ ପୋଛୁଥିଲା, ବାରମ୍ବାର ସଜାଡ଼ିବାକୁ ଚେଷ୍ଟା କରୁଥିଲା ଭାଙ୍ଗି ଯାଉଥିବା ଓଠ । କହିଲା— "ଏଠାରେ ଗୁଡ଼ାଏ ଗୁପ୍ତଚର ଅଛନ୍ତି ମୋ ପାଇଁ । ମୁଁ କୁଆଡ଼େ ଯାଉଚି, କାହା ସହିତ ଗପୁଚି ଇତ୍ୟାଦି ଉପରେ ଦୃଷ୍ଟି ରଖିଚନ୍ତି ଏମାନେ । ଅବଶ୍ୟ ଅନ୍ୟ ଡିପାର୍ଟମେଣ୍ଟର ଏଇମାନଙ୍କୁ ମୁଁ ଖାତିର କରିବା ଲୋକ ନୁହେଁ । ମୁଁ ଯାଇଥାନ୍ତି ଆପଣଙ୍କ ଫ୍ଲାଟ୍‌କୁ କିମ୍ବା ଆପଣଙ୍କ କଲେଜ୍‌କୁ । ପ୍ରଥମ ଅସୁବିଧା ହେଉଚି, ଯଦି ଦେଖା ନ ହୁଏ ? ଦ୍ୱିତୀୟଟି ହେଉଚି, କେଉଁ ସର୍ତ୍ତରେ ସେମାନେ ମୋତେ ଏଠାରେ ପୁଣି ଛାଡ଼ିଚନ୍ତି, ତାହା ମୁଁ [illegible] ହେଉଚି ।"

—"ଆମେ ଏବେ ଗପୁଚେ ।" [illegible] କହିଲା— "ଏ କଥା ବି ପହଞ୍ଚିଯାଇ [illegible]ରେ ତୁମ ଘରେ ।"

—"ହଁ ।" କହିଲା ମନିକା— "କିନ୍ତୁ ମୁଁ ଆଉ କେୟାର କରିବା ଅବସ୍ଥାରେ ନାହିଁ । ଆପଣଙ୍କୁ ନ ଦେଖିଥିଲେ ମୁଁ ପାଗଳ ହୋଇଯାଇଥାନ୍ତି । ଏ ରାସ୍ତା ଘାଟ, ହଷ୍ଟେଲ, ଡିପାର୍ଟମେଣ୍ଟ— ଚାରିଆଡ଼େ ପ୍ରଳାପ କରିଥାନ୍ତି, ମୋର ଅବିକା ସାର୍ ଦରକାର ବୋଲି ।"

—"ଏମିତି କେତେଦିନ ଚାଲିବ ?" ପଚାରିଲା ଶେଖର— "ଏତେ ସତର୍କତା, ଆତୁରତା, ଏତେ ମାନସିକ ଚାପ ! ଅସହ୍ୟ ହୋଇପଡ଼ିଲାଣି ।"

—"ଭାବୁଥିଲି, ପି.ଜି.ଟା ଶେଷ କରିଥାନ୍ତି ।" ପ୍ରକାଶ କଲା ମନିକା । ସେତେବେଳକୁ ସେ ଯଥେଷ୍ଟ ପ୍ରକୃତିସ୍ଥ ହୋଇସାରିଥିଲା । ତା'ପରେ ଦୁହିଁଙ୍କର ବିବରଣୀ । ଗତ କିଛି ଦିନ ହେଲା କ'ଣ ସବୁ ଘଟିଚି, ତାହାର ଉପସ୍ଥାପନା ।

ଦିନେ, ଦୁଇଦିନ । ସପ୍ତାହେ । ଏଇ ସାକ୍ଷାତକାରର ପ୍ରତିକ୍ରିୟା ଜଣାପଡ଼ିଲା ନାହିଁ । ପ୍ରାୟ ଦଶଦିନ ପରେ ପୁଣି ମନିକା । କିଛି ଦିନ ପରେ ମନିକା ନିଜେ ଶେଖର ଫ୍ଲାଟ୍‌ରେ । ନା, କିଛି ଘଟିଲା ନାହିଁ । ବୋଧହୁଏ କିଛି ଘଟି ନ ପାରେ ।

ଏଇଭଳି ବିଜୟୋଦ୍ଦୀପ୍ତ ମୁହୂର୍ତ୍ତ ବଡ଼ ଧରଣର ଘଟଣା ଗୁଡ଼ିଏ ପ୍ରକାଶିତ ହେବା ପାଇଁ ବାଟ ଖୋଜୁଥିଲା ବୋଲି ଜାଣି ପାରି ନ ଥିଲେ ଏ ଦୁଇଜଣ ।

ରାତି ନ'ଟା ବେଳେ ରାସ୍ତା ଉପରେ ଅଟକିଲା ଗୋଟେ ଗାଡ଼ି । ପରେ ପରେ ଡୋର୍ ବେଲ୍‌ର ଆବାଜ । ଶିବ ବ୍ୟସ୍ତ ଥିଲା ରୋଷେଇ ଘରେ ରାତ୍ରିଭୋଜନ ପ୍ରସ୍ତୁତ କରିବା ପାଇଁ । ଅଳ୍ପ ଦିନ ତଳେ କିଣା ଯାଇଥିବା ଟିଭି ପରିବେଷଣ କରୁଥିଲା ସମ୍ବାଦ । ଶେଖର ଅନ୍ୟମନସ୍କ ହୋଇ ଚାହିଁଥିଲା ସେଇଆଡ଼େ ।

ଶିବ ଦରଜା ଖୋଲିବା ପରେ ଭିତରକୁ ଯେଉଁ ବ୍ୟକ୍ତି ଜଣକ ଆସିଲେ, ସେ ହେଉଚନ୍ତି ଭବେଶ୍, ମନିକାର ଭାଇ । ଶେଖର ଜାଣିଥିଲା ଏମିତି ଘଟଣା ଘଟିବ, ଖୁବ୍ ଚଞ୍ଚଳ । ଆତଙ୍କ ଏବଂ ହିଂସାକାଣ୍ଡର ନାଟକ ଅଭିନୀତ ହେବ ତା'ର ଏଇ ଫ୍ଲାଟ୍‌ରେ, ରାସ୍ତା ଉପରେ । ଯେକୌଣସି ସ୍ଥାନରେ । ବଡ଼ କଥା ହେଲା, ଏ ନାଟକ ତାକୁ ଅନୁସରଣ କରିବ । ଏଥିପାଇଁ ସମ୍ଭବତଃ ରିହର୍ସାଲ୍ ଶେଷ ହୋଇସାରିଥିବ । ଶେଖର ଅପାତତଃ ଅପେକ୍ଷା କରୁଥିଲା ଏଭଳି ଘଟଣାକୁ ।

—"ହାଲୋ ।" ଶେଖର ଆଗଭଳି ବସି ରହିଥିଲା; ମାତ୍ର କହିଲା ହସ ହସ ମୁହଁରେ— "ବସନ୍ତୁ । ଆପଣ ମୋ ଫ୍ଲାଟ୍‌କୁ ଆସିଲେ । ଧନ୍ୟବାଦ ସେଥିପାଇଁ ।"

ଭବେଶ ବସିଲା । ତା' କଠୋର ମୁହଁ ଉପରେ କୌଣସି ପ୍ରଭାବ ପକାଇଲା ନାହିଁ ଏ କଥା । କହିଲା— "ଆପଣ କାହିଁକି ଜାଣିଶୁଣି ବିପଦ ଭିତରକୁ ପଶୁଚନ୍ତି ? ଆପଣ ଏବେବି ଦିବାସ୍ୱପ୍ନ ଦେଖୁଚନ୍ତି ମନିକାକୁ ନେଇ । କ'ଣ

ବୋଲି ବର୍ଣ୍ଣନା କରାଯାଇପାରେ ଏ କଥାକୁ ? ଆପଣଙ୍କର ନିର୍ବୋଧତା, ଦୁଃସାହସ, ନା ଆପଣଙ୍କର ସୁଇସାଇଡ୍ ?''

ଶେଖର କୌଣସି ଜବାବ ଦେଲା ନାଇଁ ବାକ୍ୟ ଜରିଆରେ । ଜବାବ ଦେଲା ତା'ର ଆତ୍ମ-ବିଶ୍ୱାସ ଓ ଦୃଢ଼ତା ପ୍ରକାଶ କରୁଥିବା କ୍ଷୀଣ ହସ । ପଚାରିଲା– ''ଚା ଟିକିଏ ପିଇବେ ?''

ଭବେଶ୍ୱର ନିଃଶ୍ୱାସ-ପ୍ରଶ୍ୱାସ କ୍ଷିପ୍ରତର ହେଲା । ଉଠ୍ ପଡ଼୍ ହେଲା ଛାତି । ଅସ୍ଥିର ଦେଖାଗଲା ତା' ମୁହଁ । କାହାକୁ ପ୍ରବର୍ତ୍ତେଇବା, ଧୈର୍ଯ୍ୟ ଧରି କାହା କଥା ଶୁଣିବା ଇତ୍ୟାଦି କେବେବି ସମ୍ଭବ ହୋଇ ନାଇଁ ତା' ପକ୍ଷେ । ସେ ଯାହା କହିବ, ଯାହା ଇଚ୍ଛା କରିବ, ତାହା ଅନ୍ୟମାନେ ତା' ପାଖକୁ ପ୍ରତିଫଳନ କରିଦେବା ଦରକାର ବିନା ଯୁକ୍ତିତର୍କରେ । ଅବିଳମ୍ବେ । ତାହା ନ ହେଲେ ତୁମୁଳ କାଣ୍ଡଟେ ସେ କରିବସେ । କହିଲା– ''ମୁଁ ସିଧାସଳଖ ଉତ୍ତରଟେ ଚାହୁଁଚି ଆପଣଙ୍କଠାରୁ । ମନିକା ସଂପର୍କରେ ଆପଣ କ'ଣ ଯୋଜନା କରିଚନ୍ତି ?''

–''ତାହା କହିବାକୁ ପଡ଼ିବ ?'' ଶେଖର ଏଭଳି ପ୍ରଶ୍ନ କଲା, ସତେଯେପରି ଭବେଶ୍ୱର ମୂର୍ଖତା ପାଇଁ ସେ ହସିବ କି ବିସ୍ମିତ ହେବ, ତାହା ସେ ନିର୍ଣ୍ଣୟ କରିପାରୁ ନାଇଁ । କହିଲା– ''ଆମେ ବିବାହ କରିବାକୁ ଯାଉଚୁ ।''

ବୋଧହୁଏ ପ୍ରସ୍ତୁତ ଥିଲା ଭବେଶ୍ ଏଇ ଉତ୍ତର ଶୁଣିବାକୁ । ଟିକିଏ ହସିବାକୁ ଚେଷ୍ଟା କରି ପଚାରିଲା– ''ସତେ ? ଆପଣ ତାକୁ କେବେବି ପାଇବେ ନାଇଁ । ଏ ଜନ୍ମରେ ତ ଆଦୌ ନୁହେଁ; କୌଣସି ଜନ୍ମରେ ବି ନୁହେଁ ।'' ଏଥର ସେ ଉଠିଆସି ଠିଆହେଲା ଶେଖର ସାମନାରେ । ପଚାରିଲା– ''ଆପଣ କେବେ ଏ ଘର ଛାଡୁଚନ୍ତି ? କାଲି ?''

–''ଆପଣଙ୍କୁ ଖୁସି କରିବା ମୋର ଦାୟିତ୍ୱ ନୁହେଁ ।'' କହିଲା ଶେଖର– ''ମୋର ଯାହା ଦରକାର, ତାହା ପାଇବାକୁ ମୁଁ ଚେଷ୍ଟା ନ କରିବି କାହିଁକି ?''

ଯା ପର ମୁହୂର୍ତ୍ତରେ ଭବେଶ୍ୱର ଦୁଇ ପାପୁଲି ବେଷ୍ଟନ କରି ସାରିଥିଲା ଶେଖରର ବେକ– ''ଶୁଣ୍, ବୋକା କାହାଁକା ! ତୁ ଜମା ଜାଣିନୁ ମୋ ପରିବାରର ଶକ୍ତି ବିଷୟରେ । ମୋତେ ଖାତିରକରିନୁ ମୋ ପରିବାରର ପ୍ରେଷ୍ଟିଜ୍‌କୁ । ତୋ ଚିହ୍ନବର୍ଣ୍ଣ ମିଳିବ ନାଇଁ । ତୁ କେଉଁଆଡ଼େ ମିଳେଇଯିବୁ । ଗୋଟେ ବୁଦ୍‌ବୁଦ୍ ଭଳି । ପୁଳାଏ ଧୂଆଁ ଭଳି । ଏଇଟାକୁ ମିଛ ଧମକ ବୋଲି ଭାବ ନାଇଁ । ଏଇଟା ଚରମପତ୍ର । ମୁଁ ଚାହେଁ, ତୁ ହୋସ୍ ଭିତରକୁ ଚାଲିଆ ।''

ଦୁଇ ପାପୁଲିର ଚାପ ସଂକୁଚିତ ହେଉଥିଲା । ସଂଘର୍ଷ କରୁଥିଲା ଶେଖର ଏବଂ ଅନୁଭବ କରୁଥିଲା ଯେ ସେ ଶ୍ୱାସପ୍ରକ୍ରିୟା ହରାଇବାକୁ ଯାଉଚି । ତା' ଆଖି ଆଗରେ ସଂଘଟିତ ହେଉଚି ସଂଖ୍ୟାହୀନ ରଂଗିନ୍ ବିସ୍ଫୋରଣ । ତା' ଦେହ ନିସାଡ଼ ହୋଇଯିବା ପୂର୍ବରୁ, ଭବେଶ ପ୍ରତ୍ୟାହାର କରିନେଲା ହାତ । ଚେୟାର ଉପରେ ବିଧ୍ୱସ୍ତ ହୋଇ ବସିରହିଥିଲା ଶେଖର ।

ତା'ର ଏଇ ଅବସ୍ଥାକୁ ନିର୍ବିକାର ହୋଇ ଲକ୍ଷ୍ୟ କରୁଥିଲା ସମ୍ଭାବ୍ୟ ଆତତାୟୀ ଜଣକ । ସିଗାରେଟ୍ ଲଗାଇଲା । ଅପେକ୍ଷା କଲା କିଛି ସମୟ । ପଚାରିଲା – "କ'ଣ ? ମୁଁ କେତେ ବାଟ ଯାଇପାରେ, ସେ କଥାର ପ୍ରମାଣ ମିଳିଲା ତ ? ଏହାଠାରୁ ଆଉ ମାତ୍ର ପାହୁଣ୍ଡେ ଅଧିକା । ଆଉ ଗୋଟେ ମୁହୂର୍ତ୍ତ ଆଗକୁ । ଖୁବ୍ ସହଜ ମୋ ପାଇଁ । ଏବେ କହ, ତୁ ହୋସ୍ ଭିତରକୁ ଆସିବୁ ନା ନାହିଁ ।"

– "ମୁଁ ଅଛି ହୋସ୍ ଭିତରେ ।" ଶେଖର ଘୋଷଣା କଲା – "ମନିକା ମୋର । ସେ ଅନ୍ୟ କାହାର ଝିଅ ବା ଭଉଣୀ ହୋଇପାରେ ।"

ଏତକ କଥା ଠିକ୍ ଭାବରେ ଶେଷ କରିପାରିଲା ନାହିଁ ଶେଖର । ପୁଣି ଥରେ ସୃଷ୍ଟି ହୋଇଗଲା ଅନ୍ଧକାର, ରଂଗିନ ବିସ୍ଫୋରଣ । ତା'ର ଦୁଇ ଗାଲରେ ଶକ୍ତ ଚଟକଣା ବସି ସାରିଥିଲା । ଉନ୍ମତ୍ତ ହୋଇପଡ଼ିଥିଲା ଭବେଶ୍ । ସେ ଆଉ କିଛି କରିବା ପାଇଁ ଯାଉଥିଲା । ମାତ୍ର ସହସା ଅଟକିଗଲା । କହିଲା – "ପୁଣି କହିଯାଉଚି । ଗାଁର ବାପା-ମା' ତୋତେ ଖୋଜିବେ । ଖୋଜି ଚାଲିବେ, ମରିବା ପର୍ଯ୍ୟନ୍ତ । ତୋତେ ପାଇବେ ନାହିଁ । ଏମାନଙ୍କୁ ଛାଡ଼ିଦେଲେ ତୋତେ ପାଇବା ପାଇଁ ଆଉ କେହି ନାହାନ୍ତି, ଏ ପୃଥିବୀରେ ।"

ଶେଖର ଅନେକ ସମୟ ପରେ ସଚେତନ ହେଲା । ଜାଣିବାରେ ଅସୁବିଧା ହେଲା ନାହିଁ ଯେ, ସମଗ୍ର ପୃଥିବୀରେ କେବଳ ଗୋଟିଏ ଫ୍ୟାନ୍ ବୁଲିବାର ଶବ୍ଦ ହିଁ ରହିଚି । ତା' ସାମନାରେ ଅଛି ଜଣେ ମାତ୍ର ଲୋକ । ଶିବ ।

– "ବାବୁ, ସେ ଲୋକ୍‌ଜଣକ ତୁମ ତଣ୍ଟି ଚିପିଲା । ତୁମକୁ କେଡ଼େ ଜୋରରେ ବାଡ଼େଇଲା ।" ଶିବ ଆତଙ୍କିତ ଦେଖାଯାଉ ନ ଥିଲା । ସେ ମ୍ରିୟମାଣ ଓ ସମ୍ବେଦନଶୀଳ ହୋଇପଡ଼ିଥିଲା । ସେ ଏଇ କଥା ଜରିଆରେ ଜଣାଇ ଦେଉଥିଲା ଯେ, ଶେଖରର ସୁକୁମାର ଓ କୋମଳ ଦେହ ଉପରେ ଅତ୍ୟାଚାର କରାଯାଇପାରେନା । ଏହାକୁ ହେପାଜତରେ, ଯତ୍ନରେ ହିଁ ରଖାଯିବା କଥା ।

ଶେଖର ତା' ଆଡୁ ଆଖି ଫେରାଇଲା । ଅନୁଭବ କରୁଥିଲା, ଝଡ଼ ଯୋଗୁଁ ଯେଉଁ ଧୂଳି ଉଠିଯାଇଥିଲା ଉପରକୁ ଏବଂ ଦୃଶ୍ୟମାନ ପୃଥିବୀକୁ ଅସ୍ପଷ୍ଟ କରି

ଦେଇଥିଲା, ତାହା ପୁଣି ଫେରିଆସୁଚି ଧରଣୀ ଉପରକୁ । ସବୁ ଜିନିଷ ପୁଣି ଦେଖାଯାଉଚି ସ୍ପଷ୍ଟ, ନିଜର ଆକାର ନେଇ ।

—"ବାବୁ, ଆଣିଦେବି ଚା' କପେ ? ଗରମ କ୍ଷୀର ଗିଲାସେ ?" ଆହା, ଅଳ୍ପଦିନର ପରିଚିତ ଏ ପିଲାଟି କେତେ ବ୍ୟାକୁଳ ନ ହୋଇପାରେ ! ତା' କଷ୍ଟ କମେଇବା ପାଇଁ କେତେ ଆତୁର ହୋଇପଡ଼ିଚି, ଦେଖ !

—"ଶେଲ୍‌ଫରେ କାଗଜ-କଲମ ଅଛି । ଆଣ୍ ।" ଶେଖର କହିଲା ।

ଭଲ ଭାବରେ ଧରାଛୁଆଁ ଦେଉ ନ ଥିଲା ଏକାଗ୍ରତା । ବହୁ ଭାବିଚିନ୍ତି ଲେଖିବାକୁ ପଡୁଥିଲା ତା'କୁ । ବେଶ୍ କିଛି ସମୟ ପରେ ସେ ସନ୍ତୁଷ୍ଟ ଦେଖାଗଲା । କମିଜ୍-ପେଣ୍ଟ ପିନ୍ଧିବା ବେଳେ କହିଲା— "ତୁ ମୋ ପାଇଁ ଅପେକ୍ଷା ନ କରି ଖାଇନେଇଥିବୁ । ମୁଁ ଫେରୁ ଫେରୁ ଡେରି ହୋଇପାରେ ।"

ଥାନା । ତା' ଏତଲା ଗ୍ରହଣ କରିବା ପାଇଁ କେହି ନ ଥିଲେ । ବାରନ୍ଦା । ଶୂନ୍‌ଶାନ୍ ହୋଇ ପଡୁଥିବା ରାସ୍ତା । ବନ୍ଦ ହୋଇ ଯାଇଥିବା ଦୋକାନ । ଅଗଣିତ ପୋକଙ୍କ ଘେରରେ ବନ୍ଦୀ ରାସ୍ତା ଆଲୁଅ । କେତେବେଳେ କିପରି କୁକୁର ଭୁକା । ସେମାନଙ୍କର ଲଢ଼େଇ । ମୋଟର ଗାଡ଼ି କିମ୍ବା ସ୍କୁଟରଟେ । ଘରବାହୁଡ଼ା କିମ୍ବା ଜରୁରୀ କାମଜନିତ ତରବର ଭାବ । ଶେଖର କିନ୍ତୁ ନିରୁତ୍ସାହିତ ହେଉ ନ ଥାଏ । ସେ ପ୍ରସ୍ତୁତ ଥିଲା ଗୋଟିଏ ମୁହୂର୍ତ୍ତ, ଗୋଟିଏ ଘଣ୍ଟା, ଗୋଟିଏ ବର୍ଷ, ଗୋଟିଏ ଯୁଗରେ ସଂପ୍ରସାରିତ ହେବାର କଷ୍ଟକୁ ସହିବା ପାଇଁ ।

ଅବଶେଷରେ ଭାରପ୍ରାପ୍ତ ଅଧିକାରୀ । ଅବସନ୍ନ, ବିରକ୍ତ, କ୍ଲାନ୍ତ, ଝାଳୁଆ ମଣିଷ ଜଣେ । ପଢ଼ିଲେ ଏତଲାକୁ । ଚାହିଁଲେ ଶେଖର ଆଡ଼େ । ପଚାରିଲେ— "ମିଛଟାରେ ବାଡ଼େଇଲା ? କିଛି ଗୋଟେ କାରଣ ଥିବ ।"

—"ମୁଁ ତାଙ୍କ ଭଉଣୀକୁ ବାହା ହେବାକୁ ଯାଉଚି ।" ଶେଖର ଅବିଚଳିତ ହୋଇ ଘୋଷଣା କଲା ।

ବିରକ୍ତ ଓ ହତାଶ ହୋଇ ଅଫିସର ଗୋଟିଏ ବିଧା ଥୋଇଲେ ଟେବୁଲ ଉପରେ । କହିଲେ— "ମୁଁ ଜାଣେ ପରା, ଆପଣଙ୍କ ଆତ୍ମ ଯେମିତି ହେଲେ ଅନୁପ୍ରବେଶ ହୋଇଥିବ । କାହିଁକି ଏମିତି କରି ଆମକୁ ନାକେଦମ୍ କରୁଚନ୍ତି ? ନିଜ ସୀମା ଭିତରେ ରହିଲେ କ୍ଷତି କ'ଣ ହୁଅନ୍ତା ? ଏ ସହରକୁ ଆସିବା ଆଗରୁ ଥିଲି ଗୋଟେ ମଫସଲୀ ଥାନାରେ । ଜଣେ ହରିଜନ ସ୍ତ୍ରୀଲୋକର ସାହସ ଦେଖ ! ପଶିଗଲା ମନ୍ଦିର ବେଢ଼ା ଭିତରେ । ଲୋକେ ତାକୁ ଓ ତା'ର ଗେରସ୍ତକୁ ଲଙ୍ଗଳା କଲେ । ବୁଲେଇଲେ ଗାଁ ରାସ୍ତାରେ । ବଡ଼ ରାଜନୈତିକ

ବ୍ୟାପାରଟିଏ ହୋଇ ପଡ଼ିଲା । ସରକାର ଉପରଠାଉରିଆ ଭାବରେ କହିବ, ଅପରାଧୀମାନଙ୍କୁ କଠୋର ଶାସ୍ତି ଦିଆଯିବ । ଆମେ ଏଣେ ଆକ୍‌ସନ୍ ନେଲା ବେଳେ ଯାବତୀୟ ଚାପ ଆମ ଉପରେ । ବଦଳି । ସସ୍‌ପେନ୍‌ସନ । ଆଦିବାସୀ-ହରିଜନ ସଂଖ୍ୟାଲଘୁ ଭୋଟ ଅନ୍ୟଆଡ଼େ ପଳାଉଚି ବୋଲି ଏଣେ କୁଛଉଚନ୍ତି ଦଳେ ଲୋକ । ସେମାନଙ୍କୁ ନ୍ୟାୟ ଦେବା ବେଳେ ଅନ୍ୟମାନେ ପାଟି କରୁଚନ୍ତି ଯେ, ଏ ସରକାର ଏମାନଙ୍କର ମୁହଁ ବଢ଼େଇ ଦେଲାଣି । ଆଉ ଗୋଟେ ଦଳକୁ ଜିତାଇଦିଅ ସରକାର ବନେଇବା ପାଇଁ । ଏ ଦେଶରେ ଆଉ କିଛି ଭଲ ହୋଇପାରିବ ବୋଲି ମୁଁ ଭାବୁ ନାଇଁ ।'' ସହସା ସ୍ୱର ବଦଳାଇ ପରାମର୍ଶ ଦେଲେ– ''ଗୋଟେ କଥା କହିବି । ମାନିବେ ?''

ଶେଖର କିଛି ନ କହି ଚାହିଁରହିଲା ଖାକି ପୋଷାକ ଆଡ଼େ । ଶୁଣିଲା– ''ଏ ଲଭ୍ ଫଭ୍ ଧନ୍ଦା ଛାଡ଼ି ଦିଅନ୍ତୁ । କାହିଁକି ଭାବୁଚନ୍ତି ଯେ, କେବଳ ରଥ ପରିବାରରେ ହିଁ ଆପଣଙ୍କର ପ୍ରିୟତମା ଅଛି ? ଦେଖୁ ନାହାନ୍ତି, କି ଝାମେଲା ସୃଷ୍ଟି ହେବାକୁ ବସିଲାଣି ?''

ଶେଖର ପଚାରିଲା ଶାନ୍ତ ସ୍ୱରରେ– ''ଏଠାକୁ ମୁଁ ପରାମର୍ଶ ପାଇଁ ଆସି ନାଇଁ । ମୋ ଉପରେ ଅପରାଧ କରାଯାଇଚି । ଆପଣ ଅପରାଧୀ ପାଇଁ ଆଇନ୍ ପରିସରରେ ବ୍ୟବସ୍ଥାଟେ କରନ୍ତୁ । ତା' ନ ହେଲେ ମୁଁ ଡି.ଜି., ଆଇ.ଜି.ଙ୍କ ପାଖକୁ ଯିବି । ତା'ପରେ ହୋମ୍ ମିନିଷ୍ଟର ଓ ଚିଫ୍ ମିନିଷ୍ଟର ।''

ଅଫିସର ଶୁଣିଲେ । ମନ ଭିତରେ ହସିଲେ । ବିଚରା ! ଆଇନ୍ ଅନୁସାରେ କାର୍ଯ୍ୟାନୁଷ୍ଠାନ ! ସେ ଜିନିଷଟା ପୁଣି ଏ ଦେଶରେ କ'ଣ ? ପ୍ରତିଶ୍ରୁତି ଦେଲେ– ''ଆପଣଙ୍କ ମନରେ କଷ୍ଟ ଦେବା ପାଇଁ ମୁଁ ଏ କଥା କହି ନ ଥିଲି । ବିଲିଭ୍ ମି । ମୁଁ ଚାହୁଁଥିଲି, ଅଯଥା ଟକ୍‌କରକୁ ଆପଣ ଆଭଏଡ୍ କରନ୍ତେ । ଠିକ୍ ଅଛି, ଏ ଲୋକକୁ ଆମେ ବାନ୍ଧିଆଣିବୁ । ଦେବୁ ତାକୁ ସାଇଜ୍ କରି ।''

ଫ୍ଲାଟ୍‌ରେ ପହଞ୍ଚିବା ବେଳକୁ ରାତି ପ୍ରାୟ ଗୋଟାଏ । କୌଣସି ଉତ୍ତେଜନା କିମ୍ବା ସଂଶୟ ନ ଥିଲା ଶେଖର ଭିତରେ । ବରଂ ତା' ଭିତରେ ବହୁଦିନୁ ଠୁଳ ହେଉଥିବା ଟେନ୍‌ସନ୍ ଓ ଅସ୍ଥିରତା ସତେଯେପରି ନିଷ୍କାସିତ ହୋଇଯାଇଚି । ଏଥର ସେ ପ୍ରସ୍ତୁତ ହେବ, ଆହୁରି ଭୟଙ୍କର ଓ ଯନ୍ତ୍ରଣାଦାୟକ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ । ନିଷ୍ପତ୍ତିମୂଳକ ସ୍ଥିତିରେ ପହଞ୍ଚିବା ଆଗରୁ ଏସବୁ ଘଟିବ, ଅନିବାର୍ଯ୍ୟ ଭାବରେ । ସେ ବାସ୍ତବିକ ଆନନ୍ଦିତ ଥିଲା ଯେ, ତା'ର ଆଭ୍ୟନ୍ତରୀଣ ସତ୍ତା ଯଥେଷ୍ଟ କଠିନ ହୋଇଚି ଏଭଳି ମୁକାବିଲା ପାଇଁ ।

ପରଦିନ କଲେଜରୁ ଫ୍ଲାଟ୍ । ସମୟ ସେତେବେଳକୁ ସଂଧ୍ୟା ସାତଟା । ସେ ସ୍ତମ୍ଭୀଭୂତ ହୋଇ ଯାଇଥିଲା ଅସମୟରେ ମନିକାକୁ ଦେଖି । ସେ କିଛି କହିବା ଆଗରୁ ମନିକା ଆଗେଇଆସିଲା ଗମ୍ଭୀର, ଚିନ୍ତିତ ମୁହଁ ନେଇ । ଦୁଇ ପାପୁଲି ବୁଲାଇ ଆଣିଲା ତା' ଗାଲ, ବେକ ଉପରେ । ନିର୍ଯାତିତ ମୁହଁକୁ ନିଜ ଆଡ଼କୁ ଟାଣିଆଣି, ଆଙ୍କିଲା ଦୁଇଟି ଘନିଷ୍ଠ ଚୁମ୍ବନ ଏବଂ ଦୁଇ ହାତର ବଳୟ ଭିତରେ ଭିଡ଼ି ଧରିଲା ।

ବେଶ୍ କିଛି ସମୟ ପରେ । ଶେଖର ଘଡ଼ି ଦେଖି ବ୍ୟସ୍ତ ହେଲା– ''ବହୁତ ଡେରି ହୋଇଗଲାଣି । ଚାଲ, ମୁଁ ତୁମ ପାଇଁ ରିକ୍ସାଟେ ଠିକ୍ କରି ଫେରିବି ।''

–''ମୁଁ ଆଜିଠୁ ରହିବି ଏଇଠି ।'' ମନିକାର ମୁହଁ ପ୍ରଥମଥର ପାଇଁ ଦେଖାଯାଉଥିଲା ଶୁଷ୍କ; କିନ୍ତୁ ଦୃଢ଼ । ସେ ପହଞ୍ଚିସାରିଥିଲା ଉପସଂହାରରେ । ଏହାର ପରିଣତି ପାଇଁ ସେ ପ୍ରସ୍ତୁତ ରହିଥିଲା ।

–''ଏଇଠି ରହିବ ?'' ଏଥିରେ ମିଶିଥିଲା ଜିଜ୍ଞାସା ଓ ବିସ୍ମୟ ।

ମନିକା ଶେଖର ଆଡୁ, ଚାରିକାନ୍ଥ ଆଡୁ ଦୃଷ୍ଟି ଫେରାଇଲା । କହିଲା– ''ଆପଣ କେତେଜଣ ପରିଚିତ ଲୋକ କାଲି ଯୋଗାଡ଼ କରିବେ । ଆମେ କୋର୍ଟରେ ବିବାହ କରିବା । ଠିକ୍ ଶୁଣିପାରିଲେ ନା ? କାଲି । ଆମର ଦରକାର କାଗଜପତ୍ର । ଆଇନସମ୍ମତ କାଗଜପତ୍ର ।'' ସେ ସତେଯେପରି ରାୟ ଶୁଣାଇଲା । ଦେଖାଯାଉଥିଲା, କାହା ଉପରେ ପ୍ରତିଶୋଧ ନେବା ଭଳି, କାହାକୁ ଶାସ୍ତି ଦେବା ଭଳି କଠୋର ଏବଂ ନିର୍ବିକାର । ଏଭଳି ମୁହଁ ସହିତ ପ୍ରଥମ ଥର ପାଇଁ ପରିଚିତ ହେଲା ଶେଖର ।

ଆଠଟା ବାଜି ସାରିଲାଣି ସେତେବେଳେ । ଶେଖର ଶିବକୁ ପଠାଇଲା ଶ୍ରୀ ମେହେରଙ୍କୁ ଡାକି ଆଣିବା ପାଇଁ । ସେ ଯିବାପରେ ସମୁଦାୟ କୋଠରି ଭରପୂର ହୋଇଗଲା ଗଭୀର ଉଦ୍‌ବେଗ ଓ ଜଡ଼ସଡ଼ ଭାବରେ । ସେ ଦୁହେଁ ପରିଣତ ହୋଇଗଲେ ଏଇ କୋଠରିର ଆତୁର ହୃତ୍‌ସ୍ପନ୍ଦନରେ । ଶେଖର କାହିଁକି କେଜାଣି ଧସକି ପଡୁଥିଲା ନିଜ ଭିତରେ । ଯା ପରେ କ'ଣ ସବୁ ଘଟିବ ? ତାହା ସହିବା ପାଇଁ ତା'ର ସାହସ ଓ ଧୈର୍ଯ୍ୟ ଅଛି ବୋଲି ଘୋର ସନ୍ଦେହ ସୃଷ୍ଟି ହେଲା ତା' ଭିତରେ । ଅଥଚ ଏଇ ଘଟଣାଟି ଘଟୁ ବୋଲି ସେ କେତେ ବର୍ଷ ହେଲା ସ୍ୱପ୍ନ ଦେଖିଆସୁଚି । ମନିକା ରହିବ ତା' ପାଖରେ, ତା'ର ହୋଇ– ଏଇ ଭାବନା ଆଚ୍ଛନ୍ନ କରିଆସିଚି କେତେ ବର୍ଷ ଧରି । ଏହା ଭାବିବା ବେଳେ ବିଭୋର ହୋଇଚି, ସଂପ୍ରସାରିତ ହୋଇ ଯାଇଚି ସେ ନିଜେ ବାରମ୍ବାର । ଏଇ ଅଭାବିତ, ଈପ୍‌ସିତ ଲୋକଜଣକୁ ଏକାନ୍ତ ଭାବେ ନିଜର କରିବା ପାଇଁ ।

ମାତ୍ର ବର୍ତ୍ତମାନ, ଏଇ ଚରମ ମୁହୂର୍ତ୍ତରେ ସେ କାହିଁକି ଏମିତି ବିଭକ୍ତ ହୋଇ ଯାଉଚି ? ସେ ଚାହିଁଲା ମନିକାକୁ । ସେ ଅନ୍ୟମନସ୍କ ଥିଲେ ମଧ ଦେଖାଯାଉଥିଲା ଅଟଳ ଓ ସ୍ଥିର । ତଥାପି ସମୟ ଅଛି । କେହି ଜଣେ କହିଲା ତା' ଭିତରେ । ଏତେ ବଡ଼ କାମଟେ କରିବା ପାଇଁ ତୋ'ଠାରେ ଦକ୍ଷତା ନାଇଁ । ତୁ ଇତିହାସ ସୃଷ୍ଟି କରିବାକୁ ଯାଉଚୁ ନିଜ ଅଞ୍ଚଳରେ ଅନ୍ତତଃ । ପୁଣି ଭାବି ଦେଖ, ମନିକା ଆଦୌ ତୋ'ର ନୁହେଁ । ତୁ କେବଳ ଅଯୋଗ୍ୟ ନୋହୁଁ; ସନ୍ତୋଷଜନକ ମଧ ନୋହୁଁ, ତା' ପାଇଁ । ଅଟକି ଯା । ଆଉ ପାଦ ଆଗକୁ ବଢ଼ାନା । ବରବାଦ କରନା ନିଜକୁ, ମନିକାକୁ, ପରିବାରକୁ । ଶେଖର ଦୁଇ ପାପୁଲିରେ ମୁହଁ ଘଷିଲା । ପରେ ଜାବୁଡ଼ି ଧରିଲା ଚେୟାରର ହାତ । ଛଟପଟ ହେଲା କେଉଁଆଡ଼େ ଧାଇଁ ପଳାଇବା ପାଇଁ । ପାଟି କରି ପୃଥିବୀକୁ ଜଣାଇଦେବା ପାଇଁ ଚାହିଁଲା, କ'ଣ ସବୁ ଘଟିବାକୁ ଯାଉଚି ।

କିନ୍ତୁ ନା, ଓହରିଯିବ ସେ କାହିଁକି ? କାହିଁକି ସେ ଭୟ କରିବ କାହାକୁ ? ପ୍ରତିରୋଧ ଆସିଚି । ଆହୁରି ଆସିପାରେ । ସେତକ ସମ୍ଭାଳିନେବା କଥା । ମନିକାକୁ ପାଇବା ପାଇଁ ହେଲେ ଏତକ ମୂଲ୍ୟ ଦେବାକୁ ପଡ଼ିବ । ଆଗ ଘଟିସାରୁ ଚୂଡ଼ାନ୍ତ ଏବଂ ଆକାଙ୍କ୍ଷିତ ଘଟଣାଟା । ସତରେ ପରିଣତ ହୋଇସାରୁ ଏତେ ଦିନର ସ୍ୱପ୍ନ । ତା' ପରେ ଦେଖାଯିବ । ବର୍ତ୍ତମାନ ଏମିତି ହାରିଯାଇଥିବା ମଣିଷଟେ ହେବ କାହିଁକି ?

ଖୁବ୍ କମ୍ ସମୟ ଭିତରେ ଶ୍ରୀ ମେହେର । ଶେଖରକୁ ଅପେକ୍ଷା ନ କରି ମନିକା ପ୍ରକାଶ କଲା ସମସ୍ତ ଯୋଜନା । ଶ୍ରୀ ମେହେର ପ୍ରଥମେ ଚିନ୍ତାଗ୍ରସ୍ତ ଦେଖାଗଲେ । ମନିକା ଫ୍ଲାଟ୍‌ରେ ରହିବା କଥା ଯଦି ଏଠାରେ ଥିବା ତା'ର ଆତ୍ମୀୟସ୍ୱଜନ ଜାଣିପାରନ୍ତି ? କୋର୍ଟ ମ୍ୟାରେଜ୍ ପୂର୍ବରୁ ଯଦି ଚଢ଼ଉ ହୁଏ ଏମାନଙ୍କ ଉପରେ ? ତାହାହେଲେ ଏ ଦୁହେଁ ଆଉ କେବେହେଲେ ପାଇ ପାରିବେ ନାଇଁ ପରସ୍ପରକୁ ।

ଏକ୍‌ଜାକ୍‌ଟଲି ! ନିରୁପାୟ ଦେଖାଗଲେ ଶେଖର ଓ ମନିକା । ଏଥରର ହୃତ୍‌ସ୍ପନ୍ଦନ ଓ ସଂଶୟକୁ ଏତେ ସାନ ଶରୀର ମଧରେ ଧରିରଖିବା ଅସମ୍ଭବ ମନେହେଲା । ସେମାନଙ୍କର ଶୋଷ ବଢ଼ିଗଲା । ପ୍ରତି ମୁହୂର୍ତ୍ତରେ ସେମାନେ ଶୁଣିବାକୁ ପାଇଲେ ତଳେ ମଟରଗାଡ଼ି ଅଟକିବାର ଶବ୍ଦ । ଏ ଶବ୍ଦ ଏମିତି ଥିଲା ଯେ, ପ୍ରତ୍ୟେକ ଧୂଳିକଣାକୁ ଆତଙ୍କିତ କରି ପଚାରୁଥିଲା ଗୋଟେ ପ୍ରଶ୍ନ— ଦେଖିଚ, ମନିକାକୁ କେଉଁଠି ? ପ୍ରତି ମୁହୂର୍ତ୍ତରେ ସେମାନେ ଶୁଣିବାକୁ ପାଉଥିଲେ ଦରଜା ଉପରେ ଦୁର୍ଦ୍ଦାନ୍ତ କରାଘାତ । ଏହା ସତେଯେପରି ଭାଙ୍ଗି ପକାଉଥିଲା ସମସ୍ତ କୋଠରିର ଦରଜା ଏବଂ ପଚାରୁଥିଲା— ଯା ଭିତରେ କେଉଁଠି ଲୁଚି ରହିଚି କି ମନିକା ?

ଶ୍ରୀ ମେହେର ଦେଖିଲେ ଏ ଦୁଇଜଣଙ୍କର ଅବସ୍ଥା । ଭିଜିଗଲେ ଗଭୀର ମମତା ଓ ସ୍ନେହରେ । ନିର୍ଦ୍ଦୟ ଶବର ହାତରୁ କୌଣସିମତେ ଖସିଆସିଚନ୍ତି

ଏ ଦୁଇଜଣ । ଦରକାର ଆଶ୍ରୟ । ନିରାପଦ ଆଶ୍ରୟ । ସେତକ ନ ହେଲେ ଉଦ୍ୟତ ତୀର ବିଦୀର୍ଣ୍ଣ କରିବ ସେମାନଙ୍କର କଳିଜା । କହିଲେ– "ଶୁଣ, ମୋ ଘରେ ରହିବ ମନିକା । ଶେଖର, ତୁମେ ଆଗ ପହଞ୍ଚିଯିବ କଚେରିରେ । ମୁଁ ମୋ ମା'ଙ୍କୁ ଲୁଗାପଟା ପିନ୍ଧେଇ ପହଞ୍ଚେଇଦେବି ଠିକ୍ ସମୟରେ । କାଗଜପତ୍ର କାମ ସରିଗଲେ ଆଉ ଡର କାହାକୁ ?"

–"ଆଉ ଗୋଟେ କଥା ।" ଶେଖର କହିଲା ।

–"କ'ଣ ?"

–"ଆମର ଦରକାର ଟାକ୍‌ସିଟେ ।" ଶେଖର ପ୍ରକାଶ କଲା ଯୋଜନା– "ଆମେ କାମ ସାରି ଚଞ୍ଚଳ ପଳେଇବୁ ଗାଁକୁ । ଏଠାରେ ରହିଲେ ଝାମେଲା ହୋଇପାରେ । ଶିବ ମଧ୍ୟ ଯିବ ଆମ ଗାଁକୁ ।"

ପୁଣି ବିବ୍ରତ ଦେଖାଗଲେ ସେ । କହିଲେ– "ତୁମେ ଏତେଗୁଡ଼ାଏ ବାଟ ଯିବ କିପରି ? ବାଟରେ ଯଦି କିଛି ହେଲା ? ତା' ଛଡ଼ା ଏଠାରେ ଝାମେଲା ହେବ ବୋଲି ତୁମେ ଆଶଙ୍କା କରୁଚ । ଗାଁରେ ସେମିତି ନ ହେବ ବୋଲି କିଛି ଗ୍ୟାରେଣ୍ଟି ଅଛି ?"

ବାସ୍ତବିକ କିଛି ଗ୍ୟାରେଣ୍ଟି ନାହିଁ । ସେ ପୁଣି କହିଲେ– "ବରଂ ଭଲ ହେବ, ତୁମେ ଦୁହେଁ ଏଇଠି ରହିଲେ । ଆମେ ଅଛୁ ସମସ୍ତେ । ମୁଁ କହିବା ମାତ୍ରେ ଶହେ ଲୋକ ଚାଲିଆସିବେ ତୁମ ଚାରିପଟେ ଘେରିରହିବା ପାଇଁ ।"

ସିଦ୍ଧାନ୍ତରେ ପହଞ୍ଚିପାରିଲା ନାଇଁ ଶେଖର । ସେ ଚାହିଁଲା ମନିକା ଆଡ଼େ, ତା' ମତାମତ ଜାଣିବା ପାଇଁ । ସମସ୍ତଙ୍କ ଆଡୁ ଦୃଷ୍ଟି ଫେରାଇ ମନିକା କହିଲା– "ଆମେ କୋର୍ଟ କାମ ସାରି ଗାଁକୁ ପଳେଇବୁ । ଝାମେଲାକୁ ଡରିକରି ନୁହେଁ । ମୁଁ ଯାଙ୍କ ପରିବାରର ଜଣେ ହୋଇଗଲି । ଏତକ ଜଣେଇବା ପାଇଁ ।"

ବିଭୋର ଦେଖାଗଲେ ଶ୍ରୀ ମେହେର । ମୁଗ୍ଧ ହୋଇପଡ଼ିଲା ଶେଖର । ଏଥର ସେ ଉଠିଲେ । କହିଲେ– "ଚାଲ, ଆମ ଘରକୁ । ଏ ଫ୍ଲାଟ୍‌ର କେତେ ଜଣ ଲୋକ ତୁମକୁ ଏ ଘରୁ ବାହାରିବାର ଦେଖିବା ନିତାନ୍ତ ଦରକାର । ସେମାନେ କହିବେ ଯେ ତୁମେ ଏଠାରେ ନାହଁ ।"

ସେମାନେ ବାହାରିଗଲେ । ପୁଣି କୋଠରିକୁ ଦଖଲ କଲା ଝାଁ ଝାଁ ଶବ୍ଦ । ଶେଖରର ଉଦ୍‌ବିଗ୍ନତା ଓ ଦୁଶ୍ଚିନ୍ତା ପୁଣି ପହଞ୍ଚିଗଲା ଚରମ ସ୍ତରରେ । ମୋଟରଗାଡ଼ି ଏବଂ ଦରଜାରେ କରାଘାତ ବ୍ୟତୀତ ପୃଥିବୀ ଭୁଲି ଯାଇଥିଲା ଅନ୍ୟ ସମସ୍ତ ଶବ୍ଦ । ଏତେ ଦୀର୍ଘ ରାତି ସତେ ଯେପରି ଛଟପଟ ହେଉଥିଲା ସକାଳକୁ ପ୍ରସବ କରିବା ପାଇଁ । ମାତ୍ର ପ୍ରସବ ମୁହୂର୍ତ୍ତ ଜମା ଧରାଛୁଆଁ ଦେଉ ନ ଥିଲା ।

# ପାଞ୍ଚ

ଘଟଣାମୁକ୍ତ ରାତି । ସକାଳ । ନିର୍ଦ୍ଧାରିତ ସମୟରେ ହାକିମଙ୍କ ଦପ୍ତର । ଚଞ୍ଚଳ କାମ ଶେଷ ହେଉ । ଶେଖର ହାକିମଙ୍କୁ ଜଣାଇଲା ସମସ୍ତ ବ୍ୟାପାର । ତାକୁ ବିସ୍ମିତ କରି ହାକିମ ଏ ଦିଗରେ ତତ୍ପରତା ଦେଖାଇଲେ । ଶ୍ରୀ ମେହେରଙ୍କ ପ୍ରଦତ୍ତ ପାଟଶାଢ଼ି ପିନ୍ଧି ଅପୂର୍ବ ଦେଖାଯାଉଥିବା ମନିକା ସେଠାରେ ପହଞ୍ଚିବା ବେଳକୁ ଆନୁଷଙ୍ଗିକ କେତେକ କାମ ଶେଷ ହୋଇ ଯାଇଥିଲା ।

କେତୋଟି ଦସ୍ତଖତ । ହାତଗଣ୍ଠି । ହାକିମଙ୍କର ଶୁଭେଚ୍ଛା । ମନ୍ତ୍ରଧ୍ୱନି । ଅନ୍ୟ କେତେଜଣଙ୍କର ଦସ୍ତଖତ । ବରଯାତ୍ରୀ । ମାତ୍ର କେତୋଟି ମିନିଟ୍ ମଧ୍ୟରେ ଶେଖର ଓ ମନିକା ଠିଆ ହୋଇଥିଲେ ହାକିମଙ୍କ ସାମନାରେ ପତି-ପତ୍ନୀ ହୋଇ । ସେ ସ୍ମିତ ହସିଲେ । ଦେଖାଗଲେ ଆତ୍ମୀୟ ଓ ଅନ୍ତରଙ୍ଗ । ଏ ଦୁହେଁ ତରତର ହୋଇ ବାହାରିଯିବାକୁ ବସିଥିଲେ ମଧ୍ୟ ହାକିମଙ୍କ ଅନୁରୋଧ ଏଡ଼ାଇ ପାରିଲେ ନାହିଁ । ଦୁଇଟି ଲେଖାଏଁ ମିଠା, ଦୁଇଟି ପ୍ଲେଟ୍‌ରେ । ତାଙ୍କ ବଗିଚାରୁ ପିଅନ ଆଣିଥିଲା ଦୁଇଟି ଲାଲ୍ ଗୋଲାପ । ହାକିମ ଧରାଇଦେଲେ ଏ ଦୁଇଟି ସେମାନଙ୍କ ହାତରେ । କହିଲେ— "ଫୁଲମାଳ ବଦଳରେ ଏ ଦୁଇଟି ନିଜ ମଧ୍ୟରେ ଆଦାନ ପ୍ରଦାନ କରିପାର । ପିଲେ, ତୁମେ ସୁଖରେ ରୁହ । ମୋର ଆନ୍ତରିକ ଆଶୀର୍ବାଦ ଓ ଶୁଭକାମନା । ମନିକା, ତୁମେ ମୋର ଅଭିନନ୍ଦନ ଗ୍ରହଣ କରିବ । ଆଉ ଗୋଟେ କଥା । ତୁମ ଦୁହିଁଙ୍କର ଫଟୋ ପଠାଇବ । ମୋ ବ୍ୟକ୍ତିଗତ ଆଲ୍‌ବମ୍ ପାଇଁ ।"

ଏ ଦୁହେଁ ଆପାତତଃ ଅସମ୍ଭାଳ ହୋଇପଡ଼ିଥିଲେ ତାଙ୍କ ପାଦସ୍ପର୍ଶ କରିବା ପାଇଁ । ତାହା କରାଇଦେଲେ ନାହିଁ ସେ । କହିଲେ— "ତୁମେ ଦୁହେଁ ଏଇଠି ରହିବ । ମୋ ହୃଦୟରେ । ଯାଅ, ବେଷ୍ଟ ଅଫ୍ ଲକ୍ ।"

ଟାକ୍‌ସିରେ ବସିବା ଆଗରୁ ଶ୍ରୀ ମେହେରଙ୍କୁ କହିଥିଲା ଶେଖର— "ମଉସା, ତୁମେ ନ ଥିଲେ ଆମ ଦୁହିଁଙ୍କ ଅବସ୍ଥା କ'ଣ ହୋଇଥାନ୍ତା ?"

—"କିଛି ଅସୁବିଧା ହୋଇ ନ ଥାନ୍ତା ।" କହିଲେ ସେ— "ତୁମେ ଦୁହେଁ ପିଲା ଲୋକ । ସଂସାରକୁ ଭଲ କରି ଚିହ୍ନିବା ପାଇଁ ଆହୁରି ଡେରି ହେବ । ସମାଜ ଏବଂ ସରକାରଠୁ ତୁମେ ସହଯୋଗ ଆଶା ନ କରିପାର; କିନ୍ତୁ ଅପ୍ରତ୍ୟାଶିତ ଭାବରେ ଅପରିଚିତ ମଣିଷ ଜଣେ ଆଗେଇଆସିପାରେ ତୁମକୁ ସାହାଯ୍ୟ କରିବା

ପାଇଁ । ସର୍ତ୍ତହୀନ ଭାବରେ । ବିକ୍ଷିପ୍ତ ଭାବରେ ଏମିତି ମୁହୂର୍ତ୍ତ ଆସେ ସମସ୍ତଙ୍କ ଜୀବନରେ । ଏଇ ଅନୁଭୂତି ଟିକକ ତୁମକୁ କୃତଜ୍ଞ କରେ । ମଣିଷମାନଙ୍କୁ ଅଶ୍ରଦ୍ଧା କରିବା ସମ୍ଭବ ହୁଏ ନାହିଁ ସବୁବେଳେ । ବଞ୍ଚିରହିବା ପାଇଁ ତୁମକୁ ପ୍ରବର୍ତ୍ତାଉଥାଏ ଏଇ ଅମୃତ ମୁହୂର୍ତ୍ତ । ଆଉ ଗୋଟେ କଥା । ହାକିମଙ୍କ ଆଚରଣରେ କ'ଣ ଦେଖିଲ ? ସ୍ୱଚ୍ଛ, ନିର୍ମଳ ଧାରାଟିଏ ନୁହେଁ କି ? ସବୁ ସବର୍ଣ୍ଣ ଶୈତାନ ନୁହନ୍ତି । କେବଳ ଅନେକେ ବନ୍ଦୀ ହୋଇ ରହିଥାନ୍ତି ହାସ୍ୟାସ୍ପଦ ପରଂପରା ଓ ଅନ୍ଧବିଶ୍ୱାସର କାନ୍ଥ ଭିତରେ । ବାହାରକୁ ଆସିବା ପାଇଁ ସାହସ ଯୋଗାଡ଼ କରିପାରନ୍ତି ନାହିଁ । ଭଗବାନ୍ ତୁମକୁ ସୁଖ-ଶାନ୍ତି ଦିଅନ୍ତୁ ।''

ସେ ଆଖି ପୋଛିଲେ । ଟାକ୍ସିରେ ବସିବା ପୂର୍ବରୁ ଏ ଦୁହିଁଙ୍କ ମୁଣ୍ଡ, ଦେହ ଉପରେ ସେ ବୁଲାଇଆଣିଲେ ସ୍ନେହପ୍ରବଣ ହାତ । ଶିବ ସହିତ ଏମାନେ ବାହାରିଯିବା ପର୍ଯ୍ୟନ୍ତ ସବୁ ଘଟିଗଲା ନିର୍ବିଘ୍ନରେ ।

ସଞ୍ଜ ବେଳକୁ ଘର । ସାମନା ଆଲୁଅ ଜଳି ସାରିଥିଲା ସେତେବେଳେ । ତା' ତଳେ ଠିଆ ହେଲା ଟାକ୍ସି, କ୍ଳାନ୍ତ ବାଟୋଇ ଜଣେ ନିର୍ଭରଯୋଗ୍ୟ ଆଶ୍ରୟ ପାଖରେ ପହଞ୍ଚିଯିବା ଭଳି । ହେଡ୍ ଲାଇଟ୍ ଲିଭିଲା । ତା' ସହିତ ବିଶ୍ରାମ ନେଲା ଇଂଜିନ୍ । ଛୋଟ ସୁଟ୍‌କେଶ୍ । ମନିକା ଓ ଶିବ । ଓହ୍ଲେଇପଡ଼ିଲେ ଗାଡ଼ିରୁ । ଶେଖର ଡ୍ରାଇଭର ହାତକୁ ବଢ଼େଇଦେଲା ଟଙ୍କା । ଅନ୍ତତଃ ଚା' କପେ ପିଇବା ପାଇଁ ତା'ର ଅନୁରୋଧକୁ ବିନୟର ସହିତ ପ୍ରତ୍ୟାଖ୍ୟାନ କରି ଡ୍ରାଇଭର ପୁଣି ନିଦରୁ ଉଠେଇଲା ଟାକ୍ସିକୁ । ଆଖି ଖୋଲିବାର ବ୍ୟବସ୍ଥା କଲା । ପଛେଇ ଆଣିଲା । ଅଳ୍ପ ସମୟ ମଧ୍ୟରେ ଗାଡ଼ିର ପଛ ନାଲି ଆଲୁଅ ଦେଖାଗଲା ନାହିଁ । ଶବ୍ଦ ହଜିଗଲା ଦୂରତା ମଧ୍ୟରେ । ସେତେବେଳକୁ ସାହିର ସାନ-ବଡ଼ ଦଶ-ବାର ଜଣଙ୍କ ଘେର ଭିତରେ ସେମାନେ ।

ଶେଖର ବାହାର କବାଟ ଠେଲି ପଶିଲା ଭିତରେ । ଆଲୋକିତ, ପରିଚ୍ଛନ୍ନ ଅଗଣା । ଶେଖରର ଅନୁମାନ ମିଛ ହେଲା ନାହିଁ । ଘର ପାଖରେ ଗାଡ଼ି ଅଟକିଲା ଏବଂ ପୁଣି ପଳେଇଗଲା । ଏହାର କ'ଣ ତାତ୍ପର୍ଯ୍ୟ ହୋଇପାରେ ବୋଲି ଜିଜ୍ଞାସୁ ହୋଇ ରୋଷେଇଘର ବାରନ୍ଦା ଉପରେ ଠିଆ ହୋଇଥିଲା ମା' । ବୋଧହୁଏ ସାହି ଭିତରେ ହିଁ ବାପା ଥିଲେ । ସେ ଆସିଯାଇଥିଲେ ଶେଖର ପଛେ ପଛେ ।

ସାଙ୍ଗରେ ମନିକା, ଘରର ବୋହୂ ହୋଇ । ବାପା-ମା' ମୂଢ଼ ହୋଇଯାଇଥିଲେ ସଂପୂର୍ଣ୍ଣ ଭାବରେ । ସେମାନେ ଜାଣିପାରିଲେ ନାହିଁ, ପୃଥିବୀର ପରିସମାପ୍ତି ଘଟିଲା ନା ଆରମ୍ଭ ହେଲା । ଶେଖର ବିପୁଳ ସଂପଦଟେ ଅପହରଣ କରି ନେଇଆସିଚି କି ସେମାନଙ୍କ ପାଖକୁ ? ସେମାନେ କେଉଁଠି, କିପରି ସାଇତି ରଖିବେ ଏହାକୁ ?

ବିବ୍ରତ ହୋଇପଡ଼ିଲେ ସେ ଦୁହେଁ । ଏ ଅଞ୍ଚଳରେ କାନ ନ ଶୁଣିଥିବା ଘଟଣା ସତକୁ ସତ ଘଟିଯାଇଚି । ସାମନାରେ ମନିକା ! ହଁ, ସତରେ ମନିକା । ଘରର ବୋହୂ ହୋଇ ।

ଗୋଟିଏ ମିନିଟ୍‌ର ବ୍ୟବଧାନ । ସମଗ୍ର ଗାଁ ଧଡ଼ପଡ଼ ହୋଇ ଉଠିପଡ଼ିଲା ଏଇ ଚାଞ୍ଚଲ୍ୟକର, ରୋମାଞ୍ଚକର ଘଟଣା ଶୁଣି । ଘରେ ଆଉ ରହିଲେ ନାଇଁ କେହି । ଧାଇଁଲେ ମନିକାକୁ ଦେଖିବା ପାଇଁ । ଗହଳି କମୁ ନ ଥିଲା; ମନିକାକୁ ଯେତେ ଦେଖୁଥିଲେ ମଧ୍ୟ ସେ ନୂଆ ଆଶ୍ଚର୍ଯ୍ୟଟିଏ ଭଳି ଦିଶୁଥିଲା ସେମାନଙ୍କ ଆଖିକୁ ।

ବେଶ୍ କିଛି ସମୟ ପରେ କେହି ଜଣେ ମନେ ପକାଇଦେଲା ଯେ ବୋହୂକୁ ଅନ୍ତତଃ ଟିକିଏ ବନ୍ଧାପନା କରି ନିଆଯିବା ଦରକାର ଘର ଭିତରକୁ । ମା' ଏତେ ନର୍ଭସ୍ ଓ ଛାନିଆ ହୋଇପଡ଼ିଥିଲା ଯେ, ଏ ଦିଗରେ ବିଶେଷ କିଛି କରିପାରିଲା ନାଇଁ । କେଉଁ ଜିନିଷ କେଉଁଠି ଅଛି ତାହା ମନେ ପଡୁ ନ ଥିଲା ତା'ର । ଯା ସତ୍ତ୍ୱେ ଶୁଭିଲା ଶଙ୍ଖ ଓ ହୁଳହୁଳି । ବୋଧହୁଏ କିଛି ଅରୁଆଚାଉଳ ବିଞ୍ଚା ହେଲା ଏମାନଙ୍କ ଉପରେ । ଗୋଟେ କଂସା ଥାଳି ଉପରେ ଜଳୁଥିବା ଦୀପ ପରିକ୍ରମା କଲା ବର-କନ୍ୟା ସାମନାରେ । ଆଉ କିଛି ବାକି ରହିଗଲା କି ? କେଜାଣି ?

ହାଡ଼ିବନ୍ଧୁ ବହୁ କଷ୍ଟରେ ଦେଖଣାହାରୀଙ୍କୁ ବିଦା କଲା ଅଗଣାରୁ । ବାରି କବାଟ ବନ୍ଦ କଲା । ବିଶ୍ୱାସ କରିପାରିଲା ନାଇଁ ଯେ ଯାହା ଶୁଣୁଚି, ତାହା ବାସ୍ତବିକ ସତ ।

ମନିକା କହୁଚି– "ମା, ମୁଁ ଲୁଗାପଟା କିଛି ଆଣି ନାଇଁ । ଦିଅ ପୁରୁଣା ଲୁଗାଟେ । ସକାଳୁ ପିନ୍ଧିଚି ଏଇ ନୂଆ ଲୁଗା । ମୋତେ ବ୍ୟସ୍ତ ଲାଗିଲାଣି ।"

ସେତେବେଳ ପର୍ଯ୍ୟନ୍ତ ମନିକା ସାମନାରେ ଠିଆ ହେବାପାଇଁ ମଧ୍ୟ ସାହସ ସଞ୍ଚୟ କରି ପାରି ନ ଥିଲା ଜେମା । ଘର-ବାହାର ଏବେ ଅପାତତଃ ନିରବ, କବାଟ ବନ୍ଦ ହେବା ପରେ । ଏଇ ନିରବତା ସତେଯେପରି ଗୋଟିଏ ବାର୍ତ୍ତା ବିଛେଇ ଦେଇଥିଲା ସେଠାରେ । ହାଡ଼ିବନ୍ଧୁ ଓ ଜେମା ଅନୁଭବ କରୁଥିଲେ ଯେ, ବର୍ଷ ବର୍ଷ ଧରି ସେ ଦୁହେଁ କଠୋର ପରିଶ୍ରମ କରି ଗଢ଼ିଛନ୍ତି ଏଇ ଘର । ପଲସ୍ତରା ତଳେ ଥିବା କେତେକ ଇଟାରେ ହୁଏତ ଲାଗିଥାଇପାରେ ସେମାଙ୍କର ରକ୍ତ ଏବଂ ଝାଳ ଦାଗ । ଗାଈ-ବାଛୁରୀମାନଙ୍କର ପିଠି ଉପରେ ଅଟକି ରହିଥାଇପାରେ ସେମାନଙ୍କର ସ୍ନେହ-ବତୁରା ପାପୁଲି ଚିହ୍ନ । ଘର ପଛରେ ଥିବା କୂଅର ପାଣିଟୋପା ଧରି ରଖିପାରିଥାଏ ସେମାନଙ୍କର ପ୍ରତିଛବି । କିଆରି,

ହୁଡ଼ା, ଘାସ, ଗଛ, କୋଦାଳ । ସବୁଠି ମଖେଇ ହୋଇ ରହିଚନ୍ତି ସେମାନେ । ଅଥଚ ସହସା ସବୁ ଯେପରି ବଦଳିଗଲା । ମନିକା ଏଠାରେ ପହଞ୍ଚିବା ମାତ୍ରେ ଏ ଦୁହେଁ ଅନୁଭବ କରୁଥିଲେ ସତେ ଯେପରି ସେମାନଙ୍କର ସାଧନାର ସାକାର ଏଇ ଘର, ବଗିଚା, ଜମିବାଡ଼ି ଅଧିକୃତ ହୋଇଯାଇଚି ଆଉ କାହା ଦ୍ୱାରା । ସେମାନେ ଏବେ ତାତ୍ପର୍ଯ୍ୟହୀନ, ନଗଣ୍ୟ ଏବଂ ଅପ୍ରାସଙ୍ଗିକ । ସବୁଠୁ ବଡ଼ କଥା ହେଉଚି, ଶେଖର ହାତଛଡ଼ା ହୋଇଯାଇଚି । ସେମାନଙ୍କର ଯୋଗସୂତ୍ର ଛିଣ୍ଡିଯାଇଚି ସବୁ ଜିନିଷଠାରୁ । ସେମାନେ ହୋଇପଡ଼ିଚନ୍ତି ଅନାବଶ୍ୟକ ଓ ପରିହାର୍ଯ୍ୟ ।

ଲୁଗା ? ତା' ପୁରୁଣା ଲୁଗା ପିନ୍ଧିବ ମନିକା ? ସବୁ ଦୃଷ୍ଟିରୁ ଅତୁଳନୀୟ ଓ ଅଭୂତପୂର୍ବ ଏଇ ଲୋକଜଣକ ଜଣେ ସଂମ୍ଭ୍ରାନ୍ତ ବଂଶର ଇଂଜିନିୟରଙ୍କ ଝିଅ ଏବଂ ଅନେକ କୃତିତ୍ୱ ହାସଲ କରିଥିବା ଏମ୍.ଏ. ଛାତ୍ରୀ ନା ଶେଖରର ପତ୍ନୀ, ସେମାନଙ୍କର ବୋହୂ ? ସେମାନେ ଏ ପର୍ଯ୍ୟନ୍ତ ଜାଣିପାରୁ ନ ଥିଲେ । ବାସ୍ତବ କଥା ଗ୍ରହଣ କରି ପାରୁ ନ ଥିଲେ । ସେମାନଙ୍କର ମଗଜ ବିପର୍ଯ୍ୟସ୍ତ ହୋଇ ପଡ଼ିଥିବାରୁ ।

ହସହସ, ଅନ୍ତରଙ୍ଗ ଏଇ ଅପୂର୍ବ ମୁହଁକୁ ଆପଣାର କରିନେବା ପାଇଁ କେତେ ବ୍ୟାକୁଳତା ! ମାତ୍ର ମଝିରେ ଏବେବି ସତେଯେପରି ରହିଚି ବ୍ୟବଧାନଟେ । ମା' କହିବା ପାଇଁ ଚେଷ୍ଟା କଲା – "ତୁମେ... ତୁମେ କ'ଣ.... ।"

ପାଟି କଲା ଶେଖର – "ତାକୁ ତୁମେ, ତୁମେ ବୋଲି କ'ଣ କହୁଚୁ ? ଘରର ବୋହୂକୁ ତୁ ବୋଲି କହିପାରିବୁ ନାହିଁ ?" ଏଥର ସ୍ୱର ବଦଳାଇ – "ଦେ, ତାକୁ ପୁରୁଣା ଲୁଗାଟେ । ପିନ୍ଧିବ ।"

ଜେମା ଆସିଲା ପ୍ରାୟ ଅପ୍ରତିଭ ହୋଇ । ତା'ର ଶୋଇବା ଘର । ଗୋଟେ ର୍ୟାକ୍‌ରେ ଭଙ୍ଗାଭଙ୍ଗି ହୋଇ ରହିଚି ପୁରୁଣା ଲୁଗାପଟା । ଜେମା ଠିଆ ହେଲା ଏଇଠି । କହିବା ପାଇଁ ମନ ହେଉଥିଲା – ମା'ରେ, ତୁମେ ଦୁହେଁ ସହସା ପହଞ୍ଚିଗଲ । ଆମେ ବା ଜାଣିଥାନ୍ତୁ କିପରି ? କିଛି ବ୍ୟବସ୍ଥା କରି ପାରିଲୁ ନାହିଁ । ମଫସଲୀ ଘର । ଶେଖର ଆମକୁ ଯେମିତି ଘର କରିବା ପାଇଁ, ଜିନିଷପତ୍ର ସଜେଇବା ପାଇଁ କହିଚି, ଆମେ ସେମିତି କରିଚୁ । ଆମେ ମୋଟେ ଯୋଗ୍ୟ ନୋହୁ ତୋ ପାଇଁ । ତୁ ମୋତେ ଯେମିତି ମା' ବୋଲି ଡାକିଲେ ବି ମୋର ସାହସ କୁଳଉ ନାହିଁ ତୋତେ ମୋ' ଛାତି ଭିତରକୁ ଟାଣିଆଣିବା ପାଇଁ । ନେ, ଯେଉଁ ଲୁଗା ତୋ'ର ପସନ୍ଦ ହେଉଚି, ନେଇ ଯା ।

କେବଳ ଶାଢ଼ି ନୁହେଁ, ମା'ର ପୁରୁଣା ବ୍ଲାଉଜ୍ ଓ ସାୟା ପିନ୍ଧି ମନିକା ଠିଆହେଲା ଶେଖର ସାମନାରେ । ତା' ଦୃଷ୍ଟିରେ ମନିକାର ପରିଚୟ ଦ୍ରୁତ ଗତିରେ ବଦଳି

ଯାଉଥିଲା । ସେ ସଂପର୍କିତ ହୋଇଯାଉଥିଲା ଏ ଘର ସହିତ । ରଥ ପରିବାର ସହିତ ତା'ର ବନ୍ଧନ ଲୋପ ପାଇଯାଉଥିଲା । ଶେଖର ଭାବିପାରୁ ନ ଥିଲା ଜୀବନ ଓ ସଂସାରଠାରୁ ସେ ଅଧିକ କିଛି ପାଇବାକୁ ଚାହେଁ ବୋଲି । ତା'ର ସମସ୍ତ ପ୍ରାପ୍ୟ ତା' ପାଖରେ । ଏତକ ହିଁ ଯଥେଷ୍ଟ । ଏହାହିଁ ପରିପୂର୍ଣ୍ଣତାର ସଂଜ୍ଞା ।

ପୁଣି ଏକ ଘଟଣାମୁକ୍ତ ରାତି । ଆଶଙ୍କା ଓ ଉଦ୍‌ବେଗ କମି ଯାଇଥିଲା । ସକାଳ । ନିତ୍ୟକର୍ମ । କୂଅ ମୂଳେ ଗାଧୁଆ । ପୁଣି ପୁରୁଣା ଲୁଗା । ଯା ପରେ କ'ଣ କରାଯିବ, ତାହା ଜଣା ନ ଥିଲା ମନିକାକୁ ।

ଜେମା ଗୁହାଳରୁ ଆସୁଥିଲା ଅଧ ବାଲ୍‌ଟିଏ କ୍ଷୀର ଧରି । ମନିକାକୁ ଦେଖିଲା ରୋଷେଇଘର ଦରଜା ପାଖରେ । ହସିଲା ଟିକିଏ । ପଚାରିଲା— "ଏତେ ସକାଳୁ ଗାଧୋଇ ସାରିଲୁଣି କିଲୋ, ମା ? ତୋ' ପାଇଁ ଚା' ଟିକିଏ କରିବି ବୋଲି ମୁଁ ଏଣେ ତରତର ହେଉଚି ।"

ଏଥର ଦୁହେଁ ରୋଷଇ ଘରେ । ମନିକା କହିଲା— "କ'ଣ ସବୁ କରିବାକୁ ହେବ, ମୋତେ କହିଲେ ମୁଁ କାମ ଆରମ୍ଭ କରନ୍ତି ।"

—"ତୁ ଗୋଟେ କାମ କରିବୁ କ'ଣ ?" ଜେମା କହିଲା ସନ୍ତୁଷ୍ଟ ହୋଇ— "ଯା, ଚୁପ୍‌ଚାପ ବସିବୁ । ମୁଁ ଆଗ ଚା' କରିସାରେ ।" ପୁଣି କହିଲା— "ମୁଁ ଜାଣିପାରୁ ନାଇଁ ତୋତେ କେଉଁ ଜଳଖିଆ ଦେବି । ବିରି ଚକୁଳି ଖାଇବୁ ? ଗଣ୍ଡେ ଚୁଡ଼ା ଭିଜେଇ ଦେବିକି ? ଚୂଡ଼ା ସହିତ କ୍ଷୀର; ନ ହେଲେ ଦହି । ଚିନି । କାଲି କଦଳୀ କାନ୍ଦି କଟା ଯାଇଚି । ଗାଁ ଦୋକାନରେ ଏବେ ସିମେଇ ମିଳୁଚି । ସୁଜି ବି । କ'ଣ କହୁଚୁ ? ସିମେଇ କିମ୍ୱା ଉପମା କରିଦେବି ? ଘରେ ଅଟା ଅଛି । ପରଟା କରିଦେବି ? ପୁରି ହୋଇପାରିବ । କହ, କ'ଣ କରିଦେବି ?" ସେ ମନିକାକୁ ସନ୍ତୁଷ୍ଟ କରିବା ପାଇଁ ରୀତିମତ ବ୍ୟସ୍ତ ହୋଇ ପଡୁଥିଲା । ଗୋଟେ ଗୁରୁତ୍ୱପୂର୍ଣ୍ଣ କଥା ମନେପଡ଼ିବା ଭଳି— "ଛେନା ଟିକେ କରିଦେବି ?"

ମନିକା ଲକ୍ଷ୍ୟ କରୁଥିଲା ଏଇ କଥା । ଜେମାର ବ୍ୟସ୍ତତା ବଢ଼ିବା ସହିତ ସେ ଆହୁରି ଭିଜି ଯାଉଥିଲା ସ୍ନେହ ଓ ଘନିଷ୍ଠତାରେ । ପଚାରିଲା— "ସେ ଗାଁକୁ ଆସିଲେ କ'ଣ ଖା'ନ୍ତି ସକାଳେ ?"

—"କିଏ ? ଶେଖର ?" ଜେମା କହିଲା ଓ ହତାଶ ହେବା ଭଳି ମୁଣ୍ଡ ହଲେଇଲା— "ତା'ର କ'ଣ କିଛି ଠିକ୍ ଠିକଣା ଥାଏ ? ସକାଳୁ ଉଠେ ଡେରିରେ । ପିଏ ଦୁଇ-ତିନି କପ୍ ଚା' । ତା'ପରେ ପଳାଏ ବିଲଆଡ଼େ ।

ନ ହେଲେ ବାଗିରେ କ'ଣ ଟିକେ କାମ କରେ । ହଜାରେଥର କହିଲେ, ପାଟି କଲେ ଗାଧୁଆ ପାଧୁଆ କରେ ଦିନ ଏଗାରଟା, ବାରଟା ଆଡ଼େ । ମନ ହେଲେ ଚକୁଳି ଖଣ୍ଡେ ଖାଏ । ନ ହେଲେ ଗୋଟାଏ ଆଡ଼କୁ ବଢ଼ା ବଢ଼ି କଲେ ଖାଏ ।''

ଶେଖର ନିଜ ତରଫରୁ ଘର କଥା କେବେ କହି ନ ଥିଲା ମନିକାକୁ । ପଚାରିଲେ ସଂକ୍ଷିପ୍ତ ଉତ୍ତର ଦେଉଥିଲା । ଧାରଣା ସୃଷ୍ଟି କରୁଥିଲା ଯେ, ଘର କଥା ନ ପଚାରିଲେ ସେ ଖୁସି ହେବ । ଏଥିପାଇଁ ମନିକାର ଏ ଘର ବିଷୟରେ ସ୍ପଷ୍ଟ ଚିତ୍ର ନ ଥିଲା । ଏବେ ସେ ବୁଝୁଚି, ଏହାକୁ ଏକ ଧନୀ ପରିବାର ବୋଲି କୁହାଯାଇପାରେ । ଏଠାରେ ସବୁ ଅଛି, ଗ୍ରାଇଣ୍ଡରଠୁ ଆରମ୍ଭ କରି ଫ୍ରିଜ୍ ପର୍ଯ୍ୟନ୍ତ । ସିମେଣ୍ଟ ଟାଇଲ୍ ଢଙ୍କା, ଓସାରିଆ ପଟା ଓ ମାଟିର ଶିଲିଙ୍ଗ୍ ଥିବା ଚାରିଟା ସାନ ବଡ଼ ରୁମ୍ । ଗୋଟିକରେ ଧାନ, ଚାଉଳ, ବିରି-ମୁଗ ଇତ୍ୟାଦିର ସ୍ତୁପୀକୃତ ବସ୍ତା । ବିଶାଳ ଗୁହାଳରୁ ଆସେ ଗୋବର ଓ ଗାଈମାନଙ୍କର ଆଶା ଉଦ୍ଦୀପକ ଗନ୍ଧ । ପଛପଟ ବାରନ୍ଦାରେ ଠିଆ ହେଲେ ବିସ୍ତୃତ ସବୁଜ ବାରି ଓ କୂଅ । ମାଟି ଓ ଗଛମାନଙ୍କଠାରୁ ଆସେ ଭରସା ପରିପୂର୍ଣ୍ଣ ଗନ୍ଧ । ମନିକା ବାରମ୍ବାର କହୁଥିଲା ନିଜକୁ– ''ଏମିତି ଚମତ୍କାର ଘର ଭିତରକୁ, ଏତେ ସ୍ୱଚ୍ଛ ମଣିଷମାନଙ୍କ ଗହଣକୁ ଆହୁରି ଆଗରୁ ଆସିବାର ଥିଲା ।''

ମା' ରୋଷେଇ କରୁଥିଲା । ପାଖରେ ଗୋଟେ ପିଢ଼ା ଉପରେ ବସିଥିଲା ମନିକା । ଗପୁଥିଲେ । ହସୁଥିଲେ । କମିଯାଉଥିଲା ବ୍ୟବଧାନ । ଘନିଷ୍ଠ ହୋଇ ପଡୁଥିଲେ । ତଥାପି ସାହିରୁ, ଗାଁରୁ ପହଞ୍ଚିଯାଉଥିଲେ ଲୋକ, ନୂଆ ଅସାଧାରଣ ମଣିଷଜଣକୁ ଦେଖିବା ପାଇଁ । ହାଡ଼ିବନ୍ଧୁ ବାହାରିଯାଇଥିଲା କାମକୁ । ଶେଖର ବହୁତ ସମୟ ଧରି ବାଗିରେ ଥିଲା । ଏବେ ଅଛି କି ନାହିଁ କେଜାଣି ? ଶିବ ପେଣ୍ଟ-ଗଞ୍ଜି ପିନ୍ଧି, ଅଣ୍ଟାରେ ଗାମୁଛା ବାନ୍ଧି ଉପଭୋଗ କରୁଚି ଏକ ମନମୁଗ୍ଧକର ପିକ୍‌ନିକ୍‌କୁ । ସାହି ପିଲାଙ୍କ ଗହଣରେ ଜଣେ ହିରୋ ହୋଇଯିବା ଖୁବ୍ ସହଜ ଥିଲା ତା'ପକ୍ଷେ ।

ବହୁ ଦୂରରୁ କିଛି ଗୋଟେ ଶବ୍ଦ ଆସୁଚି କି, ନିସ୍ତବ୍ଧତା ଭେଦ କରି ? ସ୍ୱପ୍ନ ହୋଇପାରେ । ମା' ପୁଣି ଆଖି ବନ୍ଦ କରି ଶୋଇବାକୁ ଚେଷ୍ଟାକଲା ବେଳେ ଏ ସ୍ୱର ଆହୁରି ସ୍ପଷ୍ଟ ହୋଇ ପଡୁଥିଲା । ଅନ୍ୟ ରୁମ୍‌ରେ ମନିକା ନିଶ୍ଚିତ ହୋଇପଡ଼ିଲା ଯେ, ଏହା ମୋଟରଗାଡ଼ିର ଶବ୍ଦ । ପ୍ରଥମେ ଗୋଟେ ବାମ୍ଫ ଉଠା ତରଙ୍ଗ । ମୁଣ୍ଡରୁ ପାଦ ପର୍ଯ୍ୟନ୍ତ । ଶୀତ୍କାର । ଏଥିରେ ଏମିତି ଆତଙ୍କିତ ହେବାର କ'ଣ ଅଛି ? କଡ଼ ଲେଉଟାଇବା ବେଳେ ତା'ର ମନେହେଲା

ଯେ କେବଳ ଖଟ ନୁହେଁ; ଘରର ଚଟାଣ, କାନ୍ଥ ଓ ଛପର ଥରହର ହେବା ଆରମ୍ଭ କଲେଣି, ତା'ର ହୃତ୍‌ସ୍ପନ୍ଦନ ଯୋଗୁଁ । ହଁ, ମୋଟରଗାଡ଼ି । ବୋଧହୁଏ ଏକାଧିକ । ପ୍ରାୟ ଏକ ସଙ୍ଗେ ଦୁଇଟି କୋଠରିର ଦରଜା ଖୋଲିଲା । ବାରନ୍ଦା ଉପରେ ବାପା ଓ ଶେଖର । ଦ୍ୱାର ବନ୍ଧ ଉପରେ ମା' ଓ ମନିକା । ପ୍ରାୟ ଏକ ସଙ୍ଗେ ଦୁଇଟି ମୋଟରଗାଡ଼ି ଘର ସାମନାରେ ।

ବିଭାଜନକାରୀ ରେଖା ଭାବରେ ଠିଆ ହୋଇଥିବା ବାହାର ଦରଜା ଉପରେ ଜରୁରୀ କରାଘାତ । ବାପାଙ୍କ ଦମ୍ଭିଲା ସ୍ୱର – "କିଏ ?"

ଆଦେଶ ଆସିଲା ଅନ୍ୟପଟୁ – "ଖୋଲ ଜଲ୍‌ଦି କବାଟ ।"

ବାପା ବାରନ୍ଦା ତଳକୁ ଓହ୍ଲାଇବା ବେଳେ ଶେଖର ପାଟି କଲା – "ନା, ତୁମେ ସେଠାକୁ ଯାଇପାରିବ ନାହିଁ ।" ବାପା ବାରନ୍ଦା ଉପରକୁ ପୁଣି ଆସିବା ବେଳେ ଏଥର ଶେଖରର ସ୍ୱର – "ତୁମେ ସବୁ କିଏ ? ଖୋଜୁଚ କାହାକୁ ?"

ସେ ବାରନ୍ଦା ତଳକୁ ଓହ୍ଲାଇବା ବେଳେ ବାପା ତାକୁ ଟାଣିଆଣିଲେ ଉପରକୁ । କହିଲେ – "ତୁ ଯାଉଚୁ କୁଆଡ଼େ ? ରହ, ମୁଁ ପଚାରିଆସେ କିଏ ସେମାନେ, କ'ଣ ଦରକାର କରୁଚନ୍ତି ।"

ସେତେବେଳକୁ ଗୋଟିଏ ନୁହେଁ; ସମସ୍ତ ଦରଜା ଅସମ୍ଭାଳ ହୋଇସାରିଥିଲା ପ୍ରଚଣ୍ଡ କରାଘାତ ଯୋଗୁ । ବାପାଙ୍କୁ କବାଟ ଖୋଲିବାକୁ ପଡ଼ିଲା ନାହିଁ । ଏ ପଟକୁ ତାହା ଢଳି ପଡ଼ିଲା । ପ୍ରବେଶ କରିସାରିଥିଲେ ପାଞ୍ଚ ଜଣ ଅଚିହ୍ନା ଲୋକ । ଦୁଇଟା ଟର୍ଚ୍ଚର ଫୋକସ୍ ପହଁରିଆସିଲା ଚାରିଆଡୁ । ଶୁଭିଲା ଦୁର୍ଦ୍ଧାନ୍ତ ସତର୍କବାଣୀ – "କେହି ପାଟିତୁଣ୍ଡ କଲେ, ଆମ କାମରେ ବାଧା ଦେଲେ ଉଡ଼େଇ ଦିଆଯିବ ଏ ଘର ବୋମା ଦ୍ୱାରା ।"

ବାପା ଚାଲିଆସିଲେ ସେମାନଙ୍କ ଆଗକୁ ହାସ୍ୟାସ୍ପଦ ପ୍ରତିରୋଧଟିଏ ହୋଇ । ଚିତ୍କାର କଲେ – "ଖବରଦାର, ଏମିତି ବେଆଇନ୍ ଭାବରେ ମୋ ଘର ଭିତରକୁ – ।"

ଶେଷ କରିପାରିଲେ ନାହିଁ ବାକ୍ୟ । ପ୍ରଚଣ୍ଡ ଧକ୍କାରେ ସେ ଅଗଣାରେ ପଡ଼ିଯିବା ବେଳେ ଶୁଭିଲା ଆର୍ତ୍ତନାଦ । ଶେଖର କାବୁ କରିବା ପାଇଁ ଯାଉଥିଲା ଜଣକୁ; ମାତ୍ର ପୁଣି ଗୋଟେ ଧକ୍କା । ଆର୍ତ୍ତନାଦ । କାନ୍ଦ ବୋବାଳି ଏବଂ ବନ୍ଧୁକର ଆବାଜ । ଆଖି ଆଗରେ ଅପହୃତା ହୋଇଗଲା ମନିକା, ପ୍ରତିବାଦ ଓ ଚିତ୍କାର ସତ୍ତ୍ୱେ । ଗାଡ଼ି ଷ୍ଟାର୍ଟ ହେବା ପୂର୍ବରୁ ବାହାରେ ଜମିଥିବା ଲୋକଙ୍କୁ ଘଉଡ଼ାଇବା ପାଇଁ ଦୁଇଟି ବୋମା ବିସ୍ଫୋରଣ । ଏହାର ଧୂଆଁ ପବନରେ ମିଶିଯିବା ଆଗରୁ ଗାଡ଼ି ଦୁଇଟି ବାହାରିଯାଇଥିଲେ । ସମଗ୍ର ଗାଁକୁ କାବୁ କରିଥିଲା ନାହିଁ ନ ଥିବା ଆତଙ୍କ ।

ଏତେ ବଡ଼ ଲୁଣ୍ଠନ ଘଟିଗଲା ମାତ୍ର ଦୁଇ ମିନିଟ୍ ମଧ୍ୟରେ । ସୃଷ୍ଟି କରି ଦେଇଗଲା ସେ ଅଞ୍ଚଳରେ ଗଭୀର କ୍ଷତ । ଥପ୍ ଥପ୍ ହୋଇ ରକ୍ତ ଝରିବା ଆରମ୍ଭ କଲା ହାଡ଼ିବନ୍ଧୁ ପରିବାରରେ । ଶେଖରର ଆତ୍ମା ଖଣ୍ଡ ଖଣ୍ଡ ହୋଇଗଲା । ପାରାଲିସିସ୍ ଓ ସଂଜ୍ଞାହୀନତାର ସମୟ ଖୁବ୍ ମନ୍ଥର ଗତିରେ ଅତିକ୍ରାନ୍ତ ହେଉଥିଲା । ସଚେତନତା ଭିତରକୁ ଫେରୁଥିଲେ ସମସ୍ତେ । ବାପା ବସି ରହିଥିଲେ ବାରନ୍ଦାରେ ମୁଣ୍ଡରେ ହାତ ଦେଇ । ଏଭଳି ଏକ ଅପରିଚିତ ସମସ୍ୟାର ସମାଧାନ ପାଇଁ କୌଣସି ସୂତ୍ର ଜଣା ନ ଥିଲା ତାଙ୍କୁ । ମା' ସର୍ବହରା ଭଳି କାନ୍ଦୁଥିଲା ବଡ଼ ପାଟିରେ । ଏ କାନ୍ଦଣା ସୃଷ୍ଟି କରିସାରିଥିଲା ମହା ସମୁଦ୍ର । ଗାଁ ଖୋଜି ପାଉ ନ ଥିଲା ଥଳକୂଳ । ଶିବ ତଥାପି ବୁଝିପାରୁ ନ ଥିଲା ଘଟଣାର ଗୁରୁତ୍ୱ । ତା'ର ଭୟଭୀତ ମୁହଁ ପରିଚିତ ହେଉଥିଲା ହିଂସାକାଣ୍ଡ, ବିସ୍ଫୋରଣ ଓ ଅପହରଣର ସଂସ୍କୃତି ସହିତ ।

ଶେଖର ଠିଆ ହେଲା ଧରାଶାୟୀ କବାଟ ପାଖରେ । ସବୁ ଉନ୍ମୁକ୍ତ ଓ ପ୍ରତିରକ୍ଷାହୀନ । ତଳେ ପଡ଼ିଥିବା କାଗଜ ଉଠାଇଲା । ଇଂରାଜୀରେ ଟାଇପ୍ କରାଯାଇଥିଲା ସତର୍କବାଣୀ – ଏ ଖବର ପୋଲିସ୍‌ରେ ଦେଲେ ଧ୍ୱଂସ ପାଇଯିବ ସମୁଦାୟ ପରିବାର । ସେ ଅଣ୍ଟିରେ ତାହାକୁ ଖୋସିଲା । ବାହାରେ ସୃଷ୍ଟି ହେଉଥିଲା ଗହଳି ଓ କୋଳାହଳ । ଏହା ନିର୍ବିଘ୍ନରେ ଅଗଣା ଉପରକୁ ବ୍ୟାପିଆସିଲା ।

କୌଣସି ଅର୍ଥ ନ ଥିଲା ଏ କୋଳାହଳର । କିଏ, କ'ଣ ଦେଖିଲା, ଶୁଣିଲା । ଏଥିପାଇଁ କେଉଁ ବ୍ୟବସ୍ଥା କରାଯିବା ଉଚିତ ବୋଲି ପ୍ରଶ୍ନ । ଶେଖର ଫେରିଲା ରୁମ୍ ଭିତରକୁ ଓ ପେଣ୍ଟ-କମିଜ୍ ପିନ୍ଧିଲା ।

ସେ ଆଦୌ ଆଶା କରି ନ ଥିଲା ଯେ ସାଇମନ ତଥାପି ଅଛି ଥାନାରେ । ଏତେଗୁଡ଼ାଏ ଦିନ ଜଣେ ପୋଲିସ ଅଫିସର ନିର୍ଦ୍ଦିଷ୍ଟ ଥାନାରେ ରହିବା କଥା ଜଣା ନ ଥିଲା ଶେଖରକୁ ।

ସବୁ ଶୁଣିସାରିବା ପରେ କଠୋର ଓ ପ୍ରତିଜ୍ଞାବଦ୍ଧ ହେବା ପରିବର୍ତ୍ତେ ସେ ଦେଖାଗଲା ବିସ୍ମିତ । କହିଲା – "ଯା ଭିତରେ ଏତେ ବଡ଼ ଦୁଇଟି ଘଟଣା ଘଟିଗଲାଣି ବୋଲି ମୁଁ ବା ଜାଣନ୍ତି କିପରି ?" କିନ୍ତୁ ଗୋଟିଏ କଥା, ଶେଖର । ତୁ ସତ କହୁଚୁ ?"

–"କାହିଁକି ? ତୋର ବିଶ୍ୱାସ ହେଉ ନାଇଁ ?" ଆହତ ହେଲା ଶେଖର ।

ତା' ପିଠି ଥାପୁଡ଼ାଇଲା ସାଇମନ । ହସିଲା । କହିଲା, ଆଶ୍ୱାସନା ଦେବା ସ୍ୱରରେ – "ଅପରାଧୀମାନେ ଏମିତି ନିର୍ବୋଧ, ବ୍ରେନ୍‌ଲେସ୍ କାମଟେ କରିବା କଥା

ମୋତେ ଆଶ୍ଚର୍ଯ୍ୟ କରୁଚି, ଦୋସ୍ତ । ଖାସ୍ ଏଇଥିପାଇଁ ତୁ ସତ କହୁଚୁ କି ନା ବୋଲି ପଚାରିଲି ।'' ଟିକିଏ ଦମ୍ ନେଲା ସେ । ପୁଣି– ''ଇନ୍ ଦି ନେମ୍ ଅଫ୍ କ୍ରାଏଷ୍ଟ, ଶେଖର ! ମୋତେ ଚବିଶ୍ ଘଣ୍ଟା ସମୟ ଦେ । ଓନ୍ଲି ଟ୍ୱେଣ୍ଟି ଫୋର୍ ଆୱାର୍ସ ! ତୁ ଫେରିପାଇବୁ ମନିକାକୁ । ତା' ପରିବାରର ସମସ୍ତେ ରହିବେ ମୋ ହେପାଜତରେ । ଥାନା ହାଜତରେ । ଆଇ ପ୍ରୋମିଜ୍ !'' ପୁଣି ନିରବତା ପରେ– ''ଯେସସ୍ ମୋତେ ଏଇ ଥାନାରେ ରଖିଥିଲେ ଏତେ ଦିନ ପାଇଁ । ତୋ ସମସ୍ୟାର ସମାଧାନ କରିବି ବୋଲି ତାଙ୍କର ନିର୍ଦ୍ଦେଶ ଥିଲା ।'' ସେ ଉପରକୁ ଚାହିଁ ଡାହାଣ ହାତରେ ସୃଷ୍ଟି କଲା ଗୋଟେ କ୍ରସ୍ ଛାତି ଉପରେ ।

ସେ ପୁଣି ଶେଖର ଆଡ଼େ ଚାହିଁ କହିଲା– ''ଏଇ ଯେଉଁ ଟାଇପ୍ କରା ଚେତାବନୀ ପାଇଲୁ, ତାହାକୁ ମୁତ୍‌ଫର୍କା ବୋଲି ତୁ କହିପାରୁ । ପ୍ରକୃତରେ ତା' ଉପରେ ତୁ ପରିସ୍ରା କରିପାରୁ । କିଛି ହେବ ନାଇଁ ତୋର କିମ୍ବା ତୋ ପରିବାରର । କହିବୁ ସମସ୍ତଙ୍କୁ, ବେଧଡ଼କ ହୋଇ ଶୋଇବେ ।''

ସେ ଚୁପ୍ ହେଲା । କିଛି ମନେପକେଇବା ପାଇଁ ଚେଷ୍ଟା କଲା । ପଚାରିଲା– ''ମନିକାର ବୟସ । ଏ ଦିଗରେ ତୁ ନିଶ୍ଚିତ ତ ?''

–''ସିଓର !'' ଦୃଢ଼ତାର ସହିତ ଘୋଷଣା କଲା ଶେଖର– ''ରେଜିଷ୍ଟ୍ରି ମ୍ୟାରେଜ୍ ପାଇଁ ଏହା ଦରକାର ହୋଇପାରେ । ସେଥିପାଇଁ ମନିକା ସେଦିନ ସକାଳେ ହଷ୍ଟେଲକୁ ଯାଇ ସାର୍ଟିଫିକେଟ୍ ଆଣିଥିଲା ।''

ସକାଳେ ପୋଲିସ୍ ଗାଡ଼ି ଗାଁରେ । ପଡ଼ିରହିଥିବା କବାଟ । କେଉଁଠି ବୋମା ଫୁଟିଥିଲା । ସେମାନଙ୍କ ଗାଡ଼ି ଅଟକିଥିଲା କେଉଁଠି । କେତେ ଜଣ ଥିଲେ । ଇତ୍ୟାଦି । ବଡ଼ କଥା ହେଉଚି, ଗାଡ଼ିର ନମ୍ବର ମାଲୁମ ନ ଥିଲା କାହାରିକୁ । ନମ୍ବର ଥିଲା କି ନା, ତାହା ଲକ୍ଷ୍ୟ କରି ନାହାନ୍ତି କେହି । ତେବେ ଦୁଇଟି ଗାଡ଼ି ଆସିଥିଲା । ସେମାନଙ୍କୁ କେହି ଚିହ୍ନନ୍ତି ନାଇଁ । ଶେଖର କେବେବି ଦେଖି ନ ଥିଲା ସେମାନଙ୍କୁ । ନାମ ଜାଣିବା ତ ଦୂରର କଥା ।

ଚବିଶ୍ ଘଣ୍ଟା ।

କିଛି ଘଟି ନାଇଁ ଇତିମଧ୍ୟରେ । କେବଳ ଫାଦର ଯୋଶେଫ୍ ଆସିଥିଲେ ସାନ୍ତ୍ୱନା ଦେବା ପାଇଁ ଏବଂ କ୍ରାଏଷ୍ଟଙ୍କ ଅପାର କରୁଣା ଉପରେ ଆସ୍ଥା ରଖିବାକୁ ପରାମର୍ଶ ଦେବା ପାଇଁ– ''ସେ ରକ୍ଷା କରିବେ ତୁମକୁ । ତାଙ୍କର ଇଚ୍ଛା ହିଁ ପ୍ରକଟିତ ହେବ । ସେ ତୁମକୁ ପରୀକ୍ଷା କରୁଚନ୍ତି । ସେ ପୁଣି ଚାହାନ୍ତି, ତୁମେ ଏଥିରେ କୃତକାର୍ଯ୍ୟ ହୁଅ ।''

ଫାଦର ଯୋଶେଫ୍ ! ଧୈର୍ଯ୍ୟ ଓ କ୍ଷମାର ଶେଷହୀନ ଉତ୍ସ । ବିଧାତା ସୃଷ୍ଟି କରିଥିଲା ଏ ମୁହଁକୁ, ସ୍ମିତ ହସ, ଭରସା ଓ ଆଶ୍ୱାସନା କହିଲେ କାହାକୁ ବୁଝାଏ, ତାହା ଉପସ୍ଥାପନ କରିବା ପାଇଁ । ତାଙ୍କର ଧଳା ପୋଷାକ ତଳେ ରହିଚି ଅନେକ କ୍ଷତ ଚିହ୍ନ । ଅସହିଷ୍ଣୁତା ଓ ହିଂସାର ହସ୍ତାକ୍ଷର ଲେଖାଯାଇଚି ଏଇ ବାଗରେ । ସରଳ, ଅଶିକ୍ଷିତ ଲୋକଙ୍କୁ ଖ୍ରୀଷ୍ଟଧର୍ମ ପରିସରକୁ ଆଣୁଚନ୍ତି ବୋଲି ପ୍ରତିବାଦ ଓ ଚିତ୍କାରର ତାହା ହେଉଚି ଭାଷା ।

ସେ ବାପା ଓ ମା'ଙ୍କୁ ସତେଯେପରି କୋଳାଗ୍ରତ କଲେ । ତାଙ୍କ ଭିତରର ସମସ୍ତ ଶୋକ ଓ ଯନ୍ତ୍ରଣା, ରିକ୍ତତା ଓ ନିଃସଙ୍ଗତାକୁ ନିଜ ଭିତରକୁ ଶୋଷି ନେବା ପାଇଁ ଚେଷ୍ଟା କଲେ । କହିଲେ– "ପ୍ରଭୁଙ୍କ କୃପାରୁ ତୁମ୍ଭମାନଙ୍କୁ ନ୍ୟାୟ ମିଳୁ । ତୁମେ ମନିକାକୁ ଫେରିପାଇବା ଦରକାର; କିନ୍ତୁ ଏମିତି ହେଲା କାହିଁକି ? କାହିଁକି ଏପରି ହେବ ? ଆମେ ସମସ୍ତେ ମଣିଷ, ଈଶ୍ୱରଙ୍କ ସନ୍ତାନ । ଏତକ କ'ଣ ଯଥେଷ୍ଟ ପରିଚୟ ନୁହେଁ, ଆମ୍ଭମାନଙ୍କ ପାଇଁ ?"

ସେ ପଳେଇଲେ ପ୍ରାୟ ଘଣ୍ଟାକ ପରେ । ସାହିର କେହି ଜଣେ କହିଲା– "ମୁଁ କେତେ ଦିନୁ କହିସାରିଚି । ଚାଲ, ସମସ୍ତେ ଖ୍ରୀଷ୍ଟିଆନ୍ ହୋଇଯିବା । ଏ ନିର୍ଯ୍ୟାତନା ଆଉ ସହିହେବ ନାଇଁ । ମଣିଷର ମର୍ଯ୍ୟାଦା ଦରକାର ଆମ୍ଭମାନଙ୍କର । ଆଦିବାସୀ-ହରିଜନ ବୋଲି ପରିଚୟ ବଡ଼ ଅପମାନଜନକ ହୋଇପଡୁଚି ।"

ଶେଖର ବିସ୍ମିତ ହେଲା ଏଇଥିପାଇଁ ଯେ, ତା' ଅଭ୍ୟନ୍ତରର ସତ୍ତା ତାକୁ ପ୍ରରୋଚନା ଦେଲା ଏଇ ପରାମର୍ଶ ଗ୍ରହଣ କରିନେବା ପାଇଁ । ଏହା ଗୋଟେ ପ୍ରତିବାଦ ହେବ । କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ପ୍ରତ୍ୟାଖ୍ୟାନ କରିବାର ସହଜ ଉପାୟଟେ ହେବ । ଅଜାଣତରେ ସେ ଚଞ୍ଚଳ ହୋଇପଡ଼ିଲା । ସେ ସାଇମନ୍ ସଂପ୍ରଦାୟର ଜଣେ ବୋଲି ପରିଚିତ ହେବାକୁ ଚାହେଁ । ଏ ଭାବନା ଆସିଲା । ପୁଣି ଅତିକ୍ରାନ୍ତ ହୋଇଗଲା । ଗଭୀର ପ୍ରଭାବ ପକାଇପାରିଲା ନାହିଁ । ମନିକା ଏବେ କେଉଁଠି ? ବ୍ୟାକୁଳତା ଘନୀଭୂତ ହେଉଥିଲା ।

ଅଡ଼ଚାଳିଶ୍ ଘଣ୍ଟା ।

ପୃଥିବୀ ତଥାପି ରହିଥିଲା ଅବିଚଳିତ ଓ ନିର୍ବିକାର । ସତେଯେପରି ଏହା ମନିକା ବୋଲି କାହାକୁ ଚିହ୍ନେ ନାଇଁ । କେବଳ ଦିନ ବାରଟା ବେଳେ ଗାଁରେ ପହଞ୍ଚୁଥିବା ଗୋଟିଏ ଖବରକାଗଜର ନଗଣ୍ୟ ସ୍ଥାନରେ ପ୍ରକାଶିତ ହୋଇଥିଲା ଛୋଟ ସମ୍ବାଦଟେ, ଘଟଣାକୁ କେନ୍ଦ୍ରକରି । ଶେଖର ପଢ଼ିଲା । କୌଣସି ପ୍ରତିକ୍ରିୟା ସୃଷ୍ଟି ହେଲା ନାଇଁ ତା'ଠାରେ । ବରଂ ଗୋଟେ ବିଳାପ ଉତୁରିଆସୁଥିଲା ତା' ଭିତରୁକୁ– ମନିକା ଏବେ ଅଛି କେଉଁଠି ?

ଘର ଆସିପାରି ନାହିଁ ପୂର୍ବର ସ୍ଥିତାବସ୍ଥା ପାଖକୁ । ମା' ସବୁବେଳେ ପୋଛୁଚି ଆଖିର ଲୁହ । ବାପା ଦେଖାଯାଉଚନ୍ତି ନିର୍ବୋଧ ଓ ଅସହାୟ । ଏତିକି ଘଣ୍ଟା ଭିତରେ ସମସ୍ତଙ୍କର ବୟସ ଅନ୍ତତଃ ଦଶବର୍ଷ ବଢ଼ିଯାଇଚି । ଭୟ ଓ ଶୋକର ଭାଷା ଲେଖି ହୋଇ ଯାଇଚି ଚାରିଆଡ଼େ । ପୁଣି କେଉଁ ଅପ୍ରସ୍ତୁତ ମୁହୂର୍ତ୍ତରେ ଆସିଯିବ କି ଗାଡ଼ି ? ଫୁଟିବ ବୋମା ? ଗର୍ଜନ କରିବ ବନ୍ଧୁକ ?

ହଁ, ପୁଣି ଗାଡ଼ି, ଘର ସାମନାରେ । ରୋଷେଇଘରୁ ମା' ବାହାରି ଆସିଲା । ବାରନ୍ଦା ଚୌକିରୁ ଉଠି ପଡ଼ିଥିବା ନିରୁପାୟ ବାପାଙ୍କ ଆଡ଼େ ଚାହିଁଲା । ଥାନାକୁ ଯାଇ ଅନୁସନ୍ଧାନ କେତେଦୂର ଆଗେଇଲା ବୋଲି ବୁଝିବାକୁ ଯିବା ପାଇଁ ପ୍ରସ୍ତୁତ ହେଉଥିବା ଶେଖର ମଧ୍ୟ ବାରନ୍ଦାରେ । ହାତରେ କମିକ୍ ଧରି । ଶିବ ପାଖେଇଆସିଲା ବାପାଙ୍କ ଆଡ଼କୁ ।

ଜର୍ଣ୍ଣାଲିଷ୍ଟ । ଭିଡ଼ିଓ କ୍ୟାମେରାରେ ସଜ୍ଜିତ । ସବୁଠାରୁ ବେଶି ସମ୍ମାନାସ୍ପଦ ସାପ୍ତାହିକୀ ପାଇଁ ଦରକାର ଇଣ୍ଟରଭିଉ ଓ ସମସ୍ତ ତଥ୍ୟ । ଶେଖର ମୁଣ୍ଡ ହଲାଇଲା ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରୁଚି ବୋଲି ସୂଚନା ଦେଇ । କହିଲା— ''ମୋତେ କ୍ଷମା କରିବେ, ଆପଣମାନଙ୍କ ସହିତ ସହଯୋଗ କରୁ ନ ଥିବାରୁ । ଏ ଇଣ୍ଟରଭିଉ, ଫଟୋ, ଫିଚର୍‌ରୁ ମୋତେ କ'ଣ ମିଳିବ, ଜେଣ୍ଟେଲ୍‌ମେନ୍ ? ମୋର ଦରକାର ମନିକା । ପବ୍ଲିସିଟି ନୁହେଁ । ମୋର କୌଣସି ଜିନିଷ ଉପରେ ଆଉ ଆସ୍ଥା ନାହିଁ ।''

ହତାଶ ହୋଇପଡୁଥିବା ଜର୍ଣ୍ଣାଲିଷ୍ଟ ଏକରକମ ପାଟି କରି ଉଠିଲେ— ''କହି ପାରିଲେ ଆପଣ ଏ କଥା ? ଜଣେ ବ୍ରିଲିଆଣ୍ଟ ବୁଦ୍ଧିଜୀବୀ ହୋଇ ଆପଣ ଏମିତି ଧାରଣାଟେ ରଖିଚନ୍ତି ପ୍ରେସ୍ ସଂପର୍କରେ ? ପୁଣି ଆମ ସାପ୍ତାହିକୀ ସଂପର୍କରେ ? ଆମେ ପଲିଟିକ୍‌ସ୍ କରୁନା । ସେକ୍‌ସ୍ କିମ୍ବା ସେନ୍‌ସେସନ୍ ଭିତ୍ତିକ ତଥ୍ୟର ପାଖ ମାଡୁନା ଆମେ । ମାନବିକ ଏବଂ ସାମାଜିକ ଆବେଦନ ଥିବା ଘଟଣା ଦରକାର ଆମର । କମ୍ ଅନ୍ ! ଦେଖନ୍ତୁ, ଆମେ କିପରି ସହଯୋଗ କରୁଚୁ ଆପଣଙ୍କ ସହିତ । ଆପଣଙ୍କ ଘଟଣାରେ ରହିଚି ବହୁବିଧ ତାତ୍ପର୍ଯ୍ୟ ।''

ଦୀର୍ଘ ସମୟ ପରେ ସନ୍ତୁଷ୍ଟ ସାମ୍ବାଦିକ ବାହାରିଲେ । ତା' ଭିତରେ ଚା', ଦହି ସର୍ବତ ପରଶା ଯାଇଥିଲା ଏକାଧିକ ବାର । ସବୁଠୁ ବଡ଼ କଥା ହେଲା, ମା' କାନ୍ଦୁଥିଲେ ମଧ୍ୟ ସ୍ପଷ୍ଟ ଓ ନିର୍ଭୀକ ଭାବରେ ଦେଇଥିଲା କେତେକ ପ୍ରଶ୍ନର ଉତ୍ତର । ବାପା ବି କହିବା ବେଳେ ଦେଖା ଯାଉଥିଲେ ଆତ୍ମ-ବିଶ୍ୱାସୀ । ଜର୍ଣ୍ଣାଲିଷ୍ଟଙ୍କୁ ଅବାକ୍ କରି ସେ ପ୍ରକାଶ କରିଥିଲେ ଯେ, ଅନେକ ଲୋକ ତାଙ୍କୁ ପରାମର୍ଶ ଦେଉଚନ୍ତି ଖ୍ରୀଷ୍ଟିଆନ୍ କିମ୍ବା ମୁସଲ୍‌ମାନ ହୋଇଯିବା ପାଇଁ । ସେ ଅବଶ୍ୟ ତରବର

ହୋଇ କିଛି କରିବାକୁ ଚାହୁଁ ନାହାନ୍ତି; କିନ୍ତୁ ପରିସ୍ଥିତି ବାଧ୍ୟ କଲେ ସେ ମୁସଲମାନ ହୋଇ ଯାଇପାରନ୍ତି । ସେ ଏତକ କରିବା ମାତ୍ରେ କେବଳ ଗାଁର ନୁହଁ, ଆଖପାଖ ଗାଁରେ ଥିବା ତାଙ୍କ ସଂପ୍ରଦାୟର ସମସ୍ତେ ଏଇ ଧର୍ମ ଗ୍ରହଣ କରିବେ । ଆଗ ସୁରକ୍ଷା, ନିରାପତ୍ତା ଦରକାର । ଦଳିତ ହୋଇ, ଅନ୍ୟମାନଙ୍କର ପଦଦଳିତ ହୋଇ ରହିବା ଆଉ ସମ୍ଭବ ନୁହେଁ । ସେ ବାପାଙ୍କୁ ଆଶ୍ୱାସନା ଦେଲେ । ଚା' ଓ ସର୍ବତ ପାଇଁ ଧନ୍ୟବାଦ ଦେଲେ ମା'କୁ; ଯାହାକୁ ସେ କେତେଥର ମାଉସୀ ବୋଲି ସମ୍ବୋଧନ କରି ସାରିଥିଲେ ।

ସଂଧ୍ୟାବେଳେ ଉଲ୍ଲସିତ ହେବାର ମୁହୂର୍ତ୍ତ । ସାଇମନ ମୋଟର ସାଇକେଲ ରଖି ଭିତରକୁ ପଶିଲା । ଘରର ଜଣେ ସଦସ୍ୟ ଭଳି ବସିଲା ବାରନ୍ଦା ଉପରେ । ମୁଣ୍ଡରୁ ଟୋପି ବାହାରକରି ପାଟିକଲା – ''ମା, ଗିଲାସେ ଥଣ୍ଡା ପାଣି ଦେ ।''

ଗିଲାସ ସହିତ ଘରର ସମସ୍ତେ ସାଇମନ ଚାରିପାଖରେ । ମା' ପଚାରିଲା – ''ମୋ ବୋହୂକୁ ପାଇଲୁ ?''

– ''ନା ।'' ସେ ଗିଲାସ ବଢ଼େଇଦେଲା । ଉଭେଇଗଲା ଉଲ୍ଲସିତ ଭାବ ସମସ୍ତଙ୍କ ମୁହଁରୁ । ନୈରାଶ୍ୟ ଜର୍ଜରିତ ମୁହଁରେ ସେମାନେ ଚାହିଁଲେ ପରସ୍ପରକୁ । ପୁଣି କହିଲା – ''ଖୋଜା ଚାଲିଚି । ମିଳିଯିବ ନିଶ୍ଚୟ ।''

ହରଣଚାଳ କରି ନିଆଯାଇଥିବା ଗୋଟେ ଲୋକକୁ ଖୋଜାଯାଏ କିପରି ଏ ପୃଥିବୀରେ ? ସାନ ଦେଖାଯାଉଥିବା ଗୋଟେ କୋଠରିରେ ମଧ୍ୟ ଗାଏବ ହୋଇଯାଇ ପାରେ ଦରକାର ହେଉଥିବା କାଗଜ । ଚାବିକାଠି । ଟଙ୍କା । ରହସ୍ୟମୟ ଓ ବିଶାଳ ହୋଇଯାଏ କୋଠରି । ଇଏ ତ ଅପରାଧୀମାନଙ୍କର ଖେଳ । କେଉଁଠି ଲୁଚେଇଚନ୍ତି ମନିକାକୁ ?

– ''ତିନିଟା ଯାକ ଏବେ ଥାନାରେ ।'' ଏଇଟା ସେମିତି କିଛି ବଡ଼ ସଫଳତା ନୁହେଁ ବୋଲି ଜଣାପଡୁଥିଲା ସାଇମନ୍ ସ୍ୱରରୁ । କହିଲା – ''ତାଙ୍କୁ ପଚରା ଉଚରା କରାଯିବ । ଅପରାଧଟା ଘଟିବା ଦିନ ଇଂଜିନିୟର ଥିଲା ତା' ଦପ୍ତରରେ । ତା' ପୁଅ ଥିଲା ଦୋକାନରେ । ଏ ତିନିଟାଙ୍କୁ ଆଣିବା ପାଇଁ ମୁଁ କ'ଣ କମ୍ ନାକେଦମ୍ ହୋଇଚି ? ସେଠାକାର ପୋଲିସ୍ ଏ କଥା ଜାଣିବ, ଆମକୁ ସାହାଯ୍ୟ କରିବ । ସାହାଯ୍ୟ ମିଳିଲା ବଡ଼ କଷ୍ଟରେ । ଏଇଟା ଇଂଜିନିୟରଟେ ତ !'' ଅନେକ ତାଚ୍ଛଲ୍ୟ ଓ ତିକ୍ତତା ଥିଲା ତା' ସ୍ୱରରେ ।

– ''ଯାପରେ ପୁଣି କ'ଣ ?'' ଶେଖର ପଚାରିଲା ।

—"ସିଂପଲ୍ !" ଘୋଷଣା କଲା ସାଇମନ୍ । "ଏମାନଙ୍କ ଭିତରୁ କେହି ଜଣେ କିମ୍ୱା ମିଳିତ ଭାବରେ ଭଡ଼ାଟିଆ ଗୁଣ୍ଡାମାନଙ୍କୁ ନିଯୁକ୍ତ କରିଚନ୍ତି । ସେତକ ଜଣା ପଡ଼ିଯିବା ପରେ ତୁମ ବୋହୂ ତୁମ ଘରେ ।"

କେତେ ସହଜ, ସରଳ ଜଣାପଡୁଚି ସବୁ । କେତୋଟି ଘଣ୍ଟା, ଖୁବ୍ ବେଶିରେ କେତୋଟି ଦିନର ବ୍ୟବଧାନ ମନିକା ଏବଂ ଏମାନଙ୍କ ମଧ୍ୟରେ । ଉଶ୍ୱାସ ଲାଗିଲା ସମସ୍ତଙ୍କୁ । ଆଶାବାଦୀ ହେବାରେ ଥିଲା ଯଥାର୍ଥତା ।

—"ସେତକ ଜଣାପଡୁ ନାଇଁ ?"

—"ଏ ଯାଏଁ ଜଣା ପଡ଼ି ନାଇଁ ।" କହିଲା ସାଇମନ ଦୀର୍ଘଶ୍ୱାସ ପରେ । ରୁମାଲରେ ମୁହଁ ପୋଛି ଯୋଗ କଲା— "ଏମାନଙ୍କୁ ଏ ପର୍ଯ୍ୟନ୍ତ ମୁଁ ଭଦ୍ର, କୋମଳ ବ୍ୟବହାର ଦେଖାଇଚି; କିନ୍ତୁ ସତକଥା ପାଇବା ପାଇଁ ମୁଁ ଥାର୍ଡ ଗ୍ରେଡ୍ ମେଥଡ୍ ବ୍ୟବହାର କରିବି । ଏ କଥା ବୋଧହୁଏ ନିଶ୍ଚିତ ଯେ, ପୁଅ ହିଁ ଏ ଘଟଣାର ମାଷ୍ଟର ମାଇଣ୍ଡ ! ଯେମିତି ଢଙ୍ଗରେ ସେ ଶେଖରକୁ ତା' ଫ୍ଲାଟ୍‌ରେ ଆକ୍ରମଣ କରିଥିଲା ଓ କଥା କହିଥିଲା, ଯେମିତି ଷ୍ଟାଇଲ୍‌ରେ ଅପହରଣ ନାଟକ ଘଟିଲା ସେଇଥିରୁ ଜଣାପଡୁଚି ଯେ, ଏ ଲୋକଜଣକ ହୁଣ୍ଡା କିନ୍ତୁ ନିଆଁଗିଳା । ବଦ୍‌ମାସ୍‌ଟାର ଅକଲ୍ କମ୍ ହେଲେ କ'ଣ ହେବ, ବିପଜ୍ଜନକ ସଇତାନଟେ ।"

ଦୀର୍ଘ ନିରବତା । ସାଇମନ୍ ଚା' ପିଇଲା । ଯିବାପାଇଁ ଠିଆ ହୋଇ କହିଲା— "ଇଂଜିନିୟର ଆଉ ତା' ସ୍ତ୍ରୀ ତୋତେ ଅନୁରୋଧ କରିଚନ୍ତି, ସେମାନଙ୍କୁ ଦେଖା କରିବାକୁ ।"

—"ନାଇଁ, ନାଇଁ ।" ହସ୍ତକ୍ଷେପ କଲା ମା' ଏଇ ପ୍ରତିବାଦ ନେଇ— "ସେ କାହିଁକି ଯିବ ସେଠାକୁ ?" ପୁଣି ସ୍ୱର ପରିବର୍ତ୍ତନ କରି— "କହୁନୁ, କାହିଁକି ୟାକୁ ଦେଖିବା ପାଇଁ ସେମାନଙ୍କର ଏତେ ମନ ?"

—"ତୁ ଭାବୁଚୁ, ମୋତେ ସେମାନେ କହିଦେବେ, ସେମାନଙ୍କର ମତଲବ ?" ସାଇମନ ଟୋପି ଥୋଇ ସାରିଥିଲା ମୁଣ୍ଡ ଉପରେ— "ଏମାନଙ୍କୁ ବୁଝିବା ପାଇଁ ସ୍ୱୟଂ ବିଧାତା ବି ଯଥେଷ୍ଟ ନୁହେଁ । ବିଚରା ! କଥାଟା ଜଳଜଳ ହୋଇ ଦେଖାଯାଉଚି; କିନ୍ତୁ କହୁଚନ୍ତି କ'ଣ ନା, ଏ ବିଷୟରେ ସେମାନେ ଜାଣନ୍ତି ନାଇଁ କିଛି ।"

ଗୋପନ ଇଚ୍ଛାଟେ ସୃଷ୍ଟି ହେଲା ଶେଖର ଭିତରେ । ଯିବକି ଟିକିଏ ଥାନା ଆଡ଼େ ? ଦେଖିଆସନ୍ତା ଏମାନଙ୍କର ଅବସ୍ଥା । ଉପଭୋଗ କରିବା ପାଇଁ ନୁହେଁ; ଲକ୍ଷ୍ୟ କରିବା ପାଇଁ ସେମାନଙ୍କର ମନୋଭାବ । ସେମାନେ ଛଳନା କରିବେ;

ଜମା ପ୍ରକାଶ କରିବେ ନାହିଁ ଅସଲ କଥା । ତଥାପି ଦେଖା କଲେ କ୍ଷତି କ'ଣ ? ହଁ, କେତେକ ମଧୁର ମୁହୂର୍ତ୍ତ ସେମାନେ ଦେଇଥିଲେ ତାକୁ । ହାଜତରେ ଏବେ ସେମାନେ । ଭାରି କଷ୍ଟ ଲାଗୁଥିବ ସେମାନଙ୍କୁ ।

ଯା ପରର କେତୋଟି ଦିନ ଗୋଟିଏ କଥା ପ୍ରମାଣ କଲା । କ୍ୟାମେରା ଓ ଭିଡ଼ିଓ କ୍ୟାମେରାର ଆଖି ତା' ଉପରେ । ଅନେକ ସାମ୍ବାଦିକଙ୍କର କାଗଜ-କଲମର ବିଷୟବସ୍ତୁ ହେଉଚି, ତାହାର କାହାଣୀ । ପ୍ରଥମେ ଶେଖର କୁଣ୍ଠିତ ଥିଲା ଆଉ ଅଧିକ ସାକ୍ଷାତକାର ଦେବା ପାଇଁ । ମାତ୍ର ମନ ପରିବର୍ତ୍ତନ କଲା ସେ । ତାହାର ଘର ହିଁ ଲକ୍ଷ୍ୟସ୍ଥଳ ହୋଇପଡ଼ିଥିଲା ଅନେକଙ୍କ ପାଇଁ । ସେ ଆଗ୍ରହର ସହିତ ସହଯୋଗ କଲା ସେମାନଙ୍କ ସହିତ । ଦ୍ୱିଧାହୀନ ଭାବରେ ପ୍ରକାଶ କଲା ସମସ୍ତ କଥା; କାରଣ ଲୁଚେଇବା ଭଳି କୌଣସି ତଥ୍ୟ ସେ ପାଇ ପାରି ନ ଥିଲା ।

ଗୋଟେ ମାସିକ ସାହିତ୍ୟ ପତ୍ରିକା ତରଫରୁ ତା' ପାଖକୁ ଆସିଲା ଅନ୍ୟ ଏକ ଅଭିନବ ପ୍ରସ୍ତାବ । ସେ ନିଜ କାହାଣୀ ଲେଖିବ । ଜଣେ ଦଳିତ, ଉଚ୍ଚଶିକ୍ଷିତ ଓ ସ୍ୱର୍ଣ୍ଣକାତର ଯୁବକର ମାନସିକତା କ'ଣ, ତାହା ପ୍ରାଞ୍ଜଳ ଭାବରେ ଲେଖିବ ସେ । ସେ କିପରି ଆଚରଣ କରେ ଏବଂ ଅନ୍ୟମାନଙ୍କଠାରୁ କି ପ୍ରକାରର ଆଚରଣ ପାଏ, ତାହା ରହିବ ସେ ଲେଖାରେ । ମନିକା ସହିତ ତା'ର ସଂପର୍କ ଏବଂ ବିବାହ ତ ଅସଲ ଆକର୍ଷଣ ହେବ, ସେ ଲେଖାର ।

—"ଲେଖାଟି ଯଦି ଦୀର୍ଘ ହୋଇଯାଏ ?" ପଚାରିଲା ଶେଖର ।

—"ଡଜ୍‌ଣ୍ଟ ମାଟର୍ !" ଉତ୍ସାହିତ ହୋଇ କହିଲେ, ପତ୍ରିକାର ପ୍ରତିନିଧି— "ଆପଣଙ୍କ ଲେଖାଟି ଯେତେ ଦୀର୍ଘ ହେବ, ସେତେ ଭଲ ହେବ ଆମ ପାଇଁ, ସମସ୍ତଙ୍କ ପାଇଁ । ଆପଣ ଯଦି ଅଳ୍ପ ଦିନ ଭିତରେ ଲେଖାଟି ଦେଇପାରିବେ, ଆମେ ଏକାଥରେ ଏହାକୁ ଛପେଇବୁ । ତାହା ଯଦି ସମ୍ଭବ ନୁହେଁ; ତେବେ ଏହା ଧାରାବାହିକ ଭାବରେ ପ୍ରକାଶିତ ହେବ । ମୁଁ ବୁଝୁଚି, ଆପଣଙ୍କର ମନର ଅବସ୍ଥା । ହୁଏତ ଏମିତି ଏକ ଆତ୍ମଜୀବନୀମୂଳକ ଲେଖା ଲେଖିବା ପାଇଁ ମଧ୍ୟ ଆପଣଙ୍କର ବର୍ତ୍ତମାନର ପରିସ୍ଥିତି ଅନୁକୂଳ ନୁହେଁ; କିନ୍ତୁ ପ୍ଲିଜ୍ ଟ୍ରାଏ ।"

ଶେଖର ଚଞ୍ଚଳ ହୋଇ ପଡ଼ିଲା ଏଇ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ । ମାତ୍ର ପର ମୁହୂର୍ତ୍ତରେ ଶୁଣାଗଲା ତା'ର ନୈରାଶ୍ୟ ଜର୍ଜରିତ କଥା— "ଏମିତି ଘଟଣା ଘଟୁଚି ସବୁ ସ୍ଥାନରେ, ସବୁ ଦିନ । ମୋ ଲେଖାରେ ନୂତନତା ବୋଲି ଜିନିଷଟେ ରହିବ କେମିତି ? ବଡ଼ କଥା ହେଲା, ମୋ ଲେଖା କୌଣସି

ପ୍ରଭାବ ପକାଇପାରିବ ବୋଲି ମୁଁ ଭାବୁ ନାହିଁ । ଆମେ ଗାଁ ଗହଳିରେ ରହିଚୁ ନିର୍ଦ୍ଧାରିତ ପରିସୀମା ଭିତରେ । ବିଭାଜନକାରୀ ଏଇ ସୀମା ଗୋଟେ ଗୋଟେ ସୁଦୃଢ଼ ପଥର କାନ୍ଥ । ମୋ ଲେଖା କେବଳ ମୁଣ୍ଡ ବାଡ଼େଇବ ଏହା ଉପରେ । କେଉଁ ଫାଇଦା ମିଳିବ ସେଥିରୁ ?''

ପତ୍ରିକାର ପ୍ରତିନିଧି ଜାଣିପାରିଲେ ନାହିଁ, ଶେଖର ଭଳି ଜଣେ ଲୋକଙ୍କୁ ବୁଝେଇବ କେମିତି । ପରାଜିତ ଦେଖାଯାଉଥିଲେ ମଧ୍ୟ କହିଲେ– ''ଯେ କୌଣସି ବିପ୍ଳବର ଲକ୍ଷ୍ୟ ହେଉଚି ପରିବର୍ତ୍ତନ, ପୁନର୍ଗଠନ । ବିପ୍ଳବ ସାମୂହିକତାରେ ବିଶ୍ୱାସ କରେ; ଅନ୍ତତଃ ସଂଖ୍ୟାଗରିଷ୍ଠର ଆଶା-ଆକାଙ୍କ୍ଷାରୁ ଶକ୍ତି ଓ ତାତ୍ପର୍ଯ୍ୟ ପାଏ । ଏ ବିପ୍ଳବ ଗୋଟିଏ ଦିନରେ ଜନ୍ମ ନେଇ, ସେଇ ଦିନ ହିଁ ପ୍ରତିକ୍ଷିତ ପରିଣାମ ଆଣେ ନାହିଁ । ଏହା ପରିପୁଷ୍ଟ ହେଉଥାଏ, ବର୍ଷ ବର୍ଷ ଧରି । ପହଞ୍ଚେ ଚରମ ମୁହୂର୍ତ୍ତରେ । ପ୍ରକାଶିତ ହୁଏ ନିଜର ଯଥାର୍ଥତା ନେଇ ।'' ଏଥର ନିମ୍ନମୁଖୀ ହେଲା ତାଙ୍କର ସ୍ୱର– ''ଆପଣଙ୍କ ଭଳି ଜଣେ ରାଜନୀତି ବିଜ୍ଞାନୀଙ୍କୁ ଏ କଥା କହିବାବେଳେ ମୋତେ ଲାଜ ଲାଗୁଚି, ଶେଖରବାବୁ । ଆପଣ ଆଗ ଲେଖନ୍ତୁ । ଶହେ ଜଣ, ଦଶ ଜଣ, ପାଞ୍ଚ ଜଣଙ୍କ ଚିନ୍ତାଧାରାକୁ ସେ ଲେଖା ସ୍ପର୍ଶ କରୁ । ହଁ, କେବଳ ସ୍ପର୍ଶ କରୁ । ତାହା କିଛି କମ୍ କଥା ହେବ ନାହିଁ, ଭବିଷ୍ୟତର ରୂପରେଖ ନିର୍ଦ୍ଧାରଣ କରିବା ପାଇଁ ।''

ଶେଖରର ପ୍ରତ୍ୟେକ ରକ୍ତକଣିକା ସକ୍ରିୟ ହୋଇ ପଡ଼ିଲା । ଅସୁବିଧା କିଛି ନାହିଁ ଏମିତି ଗୋଟେ ଲେଖା ଲେଖିବା ପାଇଁ । ତତ୍ପର ହୋଇପଡ଼ିଲା ସେ । କାଗଜ ଆଣିଲା । ଭାବିଲା, ଆଗ ଲେଖାଟା ଶେଷ ହେଉ । ତାହାକୁ ଭିତ୍ତି କରି ସେ ଏହାର ନାମକରଣ କରିବ । ଶୀର୍ଷକଟି ଏମିତି ହେବ ଯେ, ଲେଖାର ଆତ୍ମା ଯେପରି ସେଥିରେ ପ୍ରତିଫଳିତ ହେବ । ମାତ୍ର ସେ ଅପେକ୍ଷା କରିପାରିଲା ନାହିଁ ଲେଖା ଶେଷ ହେବା ପର୍ଯ୍ୟନ୍ତ । ଏହାକୁ ଆରମ୍ଭ କରିବା ପୂର୍ବରୁ ସେ ଲେଖିଲା– ମନିକା ଏବେ କେଉଁଠି ? ଏହା ହିଁ ହେବ ତା' ଲେଖାର ନାମ । ସେ ବସିରହିଲା ହାତରେ କଲମ ଧରି । ଆରମ୍ଭ କରିବ କିପରି, କେଉଁଠୁ ?

ସେ'ଦିନ ସଞ୍ଜରେ ଟିକିଏ ଉତ୍ତେଜନା ଓ ଉଷ୍ମ ଆଲୋଚନା ଅନୁଷ୍ଠିତ ହୋଇଗଲା ଘରେ । କୈଳାଶ କିଛି ଦିନ ପାଇଁ ନ ଥିଲା ଗାଁରେ । ସେଇଦିନ ଘରକୁ ଫେରି ସବୁ ଶୁଣିଲା । ଆସିଲା ହାଡ଼ିବନ୍ଧୁ ଘରକୁ ଆହୁରି କେତେଜଣଙ୍କ ସହିତ । ବହୁ ବର୍ଷ ହେଲା ସେ ଲୁଙ୍ଗି ପିନ୍ଧୁଚି ଏବଂ ଦାଢ଼ି ରଖୁଚି । କେତେ ଜଣ କହନ୍ତି ଯେ, ସେ କୁଆଡ଼େ ନମାଜ ପଢ଼ିବା ଜାଣେ । ଗୋପନରେ ପଶ୍ଚିମ ଦିଗ ଆଡ଼କୁ ମୁହଁ କରି ଦିନରେ ପାଞ୍ଚଥର ଏହା କରୁଚି ।

ଦାନ୍ତ ହରେଇବା ପରଠାରୁ ଏବଂ ଡାକ୍ତରଖାନାରୁ ଫେରିବା ପରଠାରୁ ସେ ଅଲଗା ମଣିଷ ଜଣେ ହୋଇସାରିଚି । ଉତ୍ତ୍ୟକ୍ତ ରହୁଚି ସବୁବେଳେ । ପୂଜା, ଠାକୁର; ଏପରିକି ହିନ୍ଦୁ ବୋଲି ଶବ୍ଦ ତା' ଆଗରେ ଉଚ୍ଚାରଣ କଲେ, ସେ ଭୁଲିଯାଉଚି ହିତାହିତ ଜ୍ଞାନ । ବେଶ୍ କିଛି ବର୍ଷ ହେଲା ସେ ପ୍ରବର୍ତ୍ତଉଚି ସାହି ଲୋକଙ୍କୁ, ମୁସଲମାନ ହୋଇଯିବା ପାଇଁ । ତା'ର ଯୁକ୍ତି ହେଉଚି, ତାହା ହୋଇସାରିଲା ପରେ, କେହି ତାଙ୍କ ଉପରକୁ ହାତ ଉଠେଇବାକୁ ସାହସ ମଧ୍ୟ କରିପାରନ୍ତେ ନାଇଁ । ରକ୍ଷଣଶୀଳ ଉଚ୍ଚ ଜାତିର ଲୋକମାନେ ଗୁଡ଼ାଏ ଆଦିମ, ଅସଭ୍ୟ ରୀତିନୀତିକୁ ଜାବୁଡ଼ି ଧରିଚନ୍ତି ସିନା; ବାସ୍ତବରେ ନିତାନ୍ତ ଭୀରୁ ଗୁଡ଼ାଏ । ତାଳଫୋଟକାର ବିସ୍ଫୋରଣ ଶୁଣିବା ମାତ୍ରେ ସେମାନେ ଦୟନୀୟ ଭାବରେ ଜଡ଼ସଡ଼ ହୋଇଯାନ୍ତି । ଜୀବନ ବଞ୍ଚେଇବା ପାଇଁ ଛିନ୍ନଛତ୍ର ହୋଇଯା'ନ୍ତି ।

ଏତେ କଥା କହିବା ସତ୍ତ୍ୱେ ସାହିର ଲୋକମାନେ ଶୁଣୁ ନାହାନ୍ତି ତା' କଥା । ପାଟି କଲା ସେ— ''ନ ଶୁଣ । ଏମିତି ପଡ଼ିଥାଅ । ଏମିତି ପଡ଼ିରହିବା ପାଇଁ ଜନ୍ମ ହୋଇଚ ତୁମ୍ଭେମାନେ ।''

—''ବେଶି ଗୁଡ଼ାଏ ବକ୍ ବକ୍ ହ'ନା ।'' କେହି ଜଣେ କହିଲା ବିରକ୍ତ ହୋଇ— ''ତୋ' ମାମୁ କଥା କହୁଥିଲୁ ଢେର ଦିନ ଆଗେ । କ'ଣନା, ସେ ମୁସଲମାନ ହୋଇଯିବା ପରେ, ତା' ଖାତିର ବଢ଼ିଗଲା । ତା'ଙ୍କ ଗାଁର କୌଣସି ଲୋକ ଆଉ ଏମାନଙ୍କୁ କିଛି ବି କହିପାରୁ ନାହାନ୍ତି, ଅପମାନ ଦେବା ତ ଦୂରର କଥା । ଏବେ କ'ଣ ହେଲା ?'' ସେ ଚାଲେଞ୍ଜ କଲା କୈଳାଶକୁ ଉତ୍ତର ପାଇବା ପାଇଁ ।

କୈଳାଶ ଇତସ୍ତତଃ ହେଲା, ଅପ୍ରତିଭ ହୋଇଯିବାରୁ । ଏଥର ପରାଜିତ ସ୍ୱର ଶୁଭିଲା— ''ମାମୁ ବିଚରା ଏକୁଟିଆ କ'ଣ କରିବ ? ଦଳେ ଲୋକ ଟିଙ୍କ ଭଜି ଲାଗିରହିଲେ ତା' ପାଖରେ । ପ୍ରବଳ ଟଙ୍କା ଦେଲେ ସମସ୍ତଙ୍କୁ । ଯଜ୍ଞ ହେଲା । ଜଣେ ହରିଜନ ମନ୍ତ୍ର ପଢ଼ିଲା, ହୋମ କଲା । ସମସ୍ତେ ପୁଣି ହିନ୍ଦୁ ହୋଇଗଲେ । ମାମୁର ଦୋଷ କ'ଣ ?'' ଗୋଟିଏ ମୁହୂର୍ତ୍ତ ପରେ ପୁଣି କହିଲା— ''ଖ୍ରୀଷ୍ଟିଆନ୍ ହୋଇଯାଇଥିବା ଅନେକ ଲୋକ ତ ପୁଣି ମୂଳ ଧର୍ମ ଭିତରକୁ ଫେରିଆସୁଚନ୍ତି ! ଯଦି ଟଙ୍କା ଅଛି, ତେବେ ଆମକୁ କିଣାଯାଇ ପାରିବ, ବିକା ଯାଇପାରିବ ।''

ଆଉ ଜଣେ କହିଲା— ''ମୁଁ ମଧ୍ୟ ସେଇକଥା କହୁଚି । ଆମ୍ଭମାନଙ୍କୁ ଖ୍ରୀଷ୍ଟିଆନ୍ କିମ୍ବା ମୁସଲମାନ କରିବା ପାଇଁ ମଧ୍ୟ ଟଙ୍କା ଦିଆଯାଉଚି । ପୁଣି ଟଙ୍କା ଦିଆ ଯାଉଚି ସେଠାରୁ ଫେରିଆସିବା ପାଇଁ ।''

ଅନ୍ୟ ଜଣକର ସ୍ୱର– ''ଏସବୁ କଥା ଉଠେଇ ଲାଭ କ'ଣ ? ଆମ ଅଞ୍ଚଳର, ଆମ ସଂପ୍ରଦାୟର ଗର୍ବ ହେଉଚି ଶେଖର । ତା' ଉପରେ ଏଇ ଯେଉଁ ଝଡ଼ଟେ ବହିଗଲା, ତା'ର ସମାଧାନ କ'ଣ ହୋଇଯିବ, ଆମେ ସମସ୍ତେ ଆଉ ଗୋଟେ ଧର୍ମକୁ ଆଦରିନେଲେ ?''

ଆଉ ସମ୍ଭାଳିପାରିଲା ନାଇଁ କୈଳାଶ । ତା' କଥା ପରିଣତ ହୋଇଗଲା ଗୋଟେ ଚିତ୍କାରରେ– ''ଆବେ, ନ ଶୁଣ କେହି ମୋ କଥା । ଥାଅ ଏମିତି । ଅନେଇଥାଅ ଷ୍ଟାଇପେଣ୍ଡକୁ, କୋଟାରେ ମିଳୁଥିବା ଚାକିରିକୁ । କ'ଣ ନା ସରକାର ମାଗଣାରେ ବିଜୁଳି ଆଲୁଅ ଦେଇଚି । ଅନେଇ ଥାଅ ସେଇ ଆଲୁଅକୁ । କ'ଣ ନା, ଆମ ସାହିରେ ନଳକୂଅ ବସାଯାଇଚି । ପିଉଥାଅ ତାହାର ପାଣି । ତୁମ ଭଳି କେହି ଜଣେ ଯଦି ଇଂଜିନିୟର ଆଉ ତା' ପୁଅ ଯେମିତି କଲେ ସେମିତି କରିଥାନ୍ତି, ଏବେ କ'ଣ ହେଉଥାନ୍ତା ? ମୁ ପଚାରୁଚି, କ'ଣ ହେଉଥାନ୍ତା ଅବିକା ? ଆରେ, ସରକାରୀ କଳ ଲାଗି ପଡ଼ିଥାନ୍ତା ଇନ୍‌କ୍ୱାରି ପାଇଁ । ଘଣ୍ଟେ-ଦୁଇ ଘଣ୍ଟାରେ ଖତମ୍ ହୋଇ ଯାଇଥାଆନ୍ତା କାମ । କେତେଦିନ ହୋଇ ଗଲାଣି ? ପାଞ୍ଚ-ଛ' ଦିନ ନା, ତା'ଠୁ ବେଶି ? କ'ଣ ହେଇଚି ଏ ଯାଏଁ ? ଆରେ, ଆମ ସାହିର ବୋହୂ କାଇଁ ?''

ଧଇଁସଇଁ ହୋଇଗଲା ସେ । ବାଷ୍ପାକୁଳ ହୋଇଗଲା ତା' ସ୍ୱର । କହିଲା କାନ୍ଦ କାନ୍ଦ ହୋଇ– ''ଶେଖର, ମୋ ବାପଟା ପରା । ମନ କଷ୍ଟ କର ନାଇଁ । ଶୁଣ, ଆଉ ଗୋଟେ କଥା । ମନିକା ଆଉ ମିଳିବ ବୋଲି ମୋର ବିଶ୍ୱାସ ହେଉ ନାଇଁରେ, ବାପ ! ନା, ମିଳିବ ନାଇଁ । ସେ ମିଳିଗଲେ ଶାସ୍ତ୍ର ଅଶୁଦ୍ଧ ହୋଇଯିବ । ଫାଟିଯିବ ଛାତି ଅନ୍ୟମାନଙ୍କର ।''

ସମସ୍ତେ ଚୁପ୍ ହୋଇଗଲେ । କୈଳାଶ କଥା ଓ ସ୍ୱରରେ କ'ଣ ଥିଲା କେଜାଣି ? ବିଗଳିତ ହୋଇଗଲା ଅନେକଙ୍କ ହୃଦୟ । ବରଫ ପାଲଟିଗଲା ଭାବନାର ସୁଅ । କୈଳାଶ ହୁଏତ ଖୋଜୁଥିଲା ଏମିତି ମୁହୂର୍ତ୍ତଟେ । କହିଲା– ''ମୋ କଥା ମାନ । ଥରେ ହଁ କର । ଅନ୍ୟସବୁ ବ୍ୟବସ୍ଥା କରିବାକୁ ମୋତେ ଗୋଟିଏ ଦିନ ବି ଲାଗିବ ନାଇଁ ।''

–''କି ବ୍ୟବସ୍ଥା ?''

ଏ ପ୍ରଶ୍ନର ଉତ୍ତର ମିଳିବା ଆଗରୁ ମା' ଆଉ ନୀରବ ଶ୍ରୋତା ହୋଇ ରହି ନ ଥିଲା । ସେ ମଧ୍ୟ ପାଟି କଲା– ''ବନ୍ଦ କର, ଏ ଅଲକ୍ଷଣା କଥା । ତୁମେସବୁ ମୋତେ କ'ଣ ବୋଲି ଭାବୁଚ କି ? ସତେ ? ଗୋଟିଏ

ଦିନ ଭିତରେ ମିଛ ହୋଇଯିବ ଏ ତୁଳସୀ ଚଉରା ? ମୋ ଠାକୁରଘରର ଚନ୍ଦନକାଠ-ଚନ୍ଦନ ପେଡ଼ି ? ବାଜିବ ନାହିଁ ସେଠାରେ ଘଣ୍ଟି ? ଚଉରାମୂଳେ ଜଳିବ ନାହିଁ ସଳିତା ? ଆଁ ? ଏମିତି ଘଟିଯିବ ଦିନକ ଭିତରେ ? କେଡ଼େ ଶ୍ରଦ୍ଧାରେ ସମୁଦ୍ର କୂଳରୁ କିଣିଚି ଅପୂର୍ବ ଶଙ୍ଖଟେ । ଓଠ ଥୋଇଦେଲେ ବାଜି ଉଠେ । ଫୋପାଡ଼ିଦେବି, ତୁ ଯେମିତି ମୃଦଙ୍ଗ-ଝାଞ୍ଜ ଫୋପାଡ଼ି ଦେଲୁ ? ରଥ ଉପରର ଠାକୁର ମୋର ହୋଇ ଆଉ ରହିବେ ନାହିଁ ?''

ମା' ଆଉ ଭଲ କରି କହିପାରୁ ନ ଥିଲା । ଧଇଁସଇଁ ହୋଇ ଯାଇଥିଲା । ତା' ସ୍ୱରକୁ ଅକ୍ତିଆର କରୁଥିଲା ଲୁହ ଓ କୋହ; ମାତ୍ର ଏହି ବାଡ଼ ଅତିକ୍ରମ କଲା ତା' କଥା– ''ପାହାଡ଼ ଉପରେ ଥିବା ମନ୍ଦିରର ଆଳତି-ଘଣ୍ଟା ବାଜିବା ମାତ୍ରେ, ଆପଣାଛାଏଁ ମୋର ଦୁଇ ହାତ ଯୋଡ଼ି ହୋଇ କପାଳ ପାଖରେ ପହଞ୍ଚିଯାଏ । କିଏ ମୋର ହାତକୁ ଅଟକାଇବ, ଦିନକ ପରେ ? ତୁ ? ତୁମ ଭିତରୁ ଆଉ କେହି ? ଆରେ, ବାଜା କି ମୃଦଙ୍ଗ ବାଜିବା କ୍ଷଣି ମୋ ଜିଭ ଖଲଖଲ ହୁଏ ହୁଳହୁଳି ପାଇଁ । କାଟିଦେବି ସେ ଜିଭକୁ ? ଠାକୁର ସାମନାରେ ଲମ୍ବ ହୋଇ ପଡ଼ିବା ବେଳେ ଶୀତେଇ ଉଠେ ଏ ଦେହ, ଭିଜିଯାଏ ମୋ ଆଖି । ଆସ, କାଟି ପକାଅ ଏ ଦେହକୁ । ଖୋଳିନିଅ ଏଇ ଅବାଧ, ନିର୍ବୋଧ ଆଖିକୁ । ଦେଖିବ ? ଏଇ କାଛକୁ ଆଉଁଶି ଦେଲେ ତୁମ ଆଗରେ ଉଭା ହୋଇଯିବ ମାର୍ଗଶିର ମାସ ଗୁରୁବାରର ଝୋଟି । ଡାକିଆଣ ବାରଶହ ମିସ୍ତ୍ରୀ । ପଲସ୍ତରା କରନ୍ତୁ ଏ କାଛ । ଲିଭିବ ନାହିଁ ମୋ ଝୋଟି । ବିଶୁ ମହାରଣା ? ଡାକି ଆଣ ତାକୁ ଏଇଠିକି । ତାକୁ କହିବି, ଗୋଟିଏ ନୁହେଁ; ଏ ସଂସାରକୁ ଆଣ, ଶହେ ଧର୍ମପଦ । ଆସନ୍ତୁ ସେମାନେ ଏଇଠିକି । ଲିଭାନ୍ତୁ ଏଇ ଚିହ୍ନ । ଲିଭାନ୍ତୁ ଚଉରାର ସିନ୍ଦୂର ଟୋପା । ପାରିବେ ଏତକ କରି ? ଯେଉଁଦିନ ଏତକ ହୋଇଯିବ, ସେ'ଦିନ କାହାରିକୁ କହିବା ପାଇଁ ପଡ଼ିବ ନାହିଁ । ମୁଁ ଆପଣାଛାଏଁ କହିବି, ମୋର ଦରକାର ଗୀର୍ଜା କିମ୍ବା ମସ୍‌ଜିଦ୍ ।''

ସେ ଚୁପ୍ ହୋଇଗଲା ସିନା; କେହି କିଛି କହିପାରିଲେ ନାହିଁ । ସମସ୍ତେ ଦେଖାଗଲେ ଅପରାଧୀ, ନଗଣ୍ୟ, ତୁଚ୍ଛ । ମା' ପଣତ ଜାକି ଧରିଥିଲା ମୁହଁ ଉପରେ । ଅନ୍ୟମାନେ ମୁହଁ ପୋତି ବସିଥିଲେ ନିର୍ବାକ୍ ଓ ଅଭିଭୂତ ହୋଇ । ଚାହିଁ ପାରୁ ନ ଥିଲେ ପରସ୍ପରକୁ । ବୋଧହୁଏ ସରି ନ ଥିଲା ମା'ର କଥା । ସେ ସୁଁ ସୁଁ ହେଲା । ନାକ ପୋଛିଲା; ଯାହା ତା'ର ଅଭ୍ୟାସ ଆବେଗମୟ ମୁହୂର୍ତ୍ତ ବେଳେ । ପୁଣି କହିଲା କାନ୍ଦ କାନ୍ଦ ହୋଇ– ''ମୁଁ ଶବରୀ ହୋଇପାରିବି ନାହିଁ କେବେ । ସେ ଭାଗ୍ୟ ମୋର ନାହିଁ । କୋଳି ଚାଖୁଥିବି । ଅଇଁଠା

ମିଠା କୋଳି ବଢ଼େଇ ଦେଉଥିବି ଠାକୁରଙ୍କ ହାତକୁ । ମୁଁ ଚଣ୍ଡାଳୁଣୀ ନୁହେଁ । ଠାକୁରେ ମଣିଷ ଦେହ ନେଇ ଆସିବେ ନାଇଁ ମୋର ଏ ଘରକୁ । ତେବେ, ଶବରୀ ହେବାର, ଚଣ୍ଡାଳୁଣୀ ହେବାର ସ୍ୱପ୍ନ ଦେଖିବି ନାଇଁ କାହିଁକି ? କିଏ ମୋତେ ମନା କରିବ ? ମୋ ଭାବନାକୁ ଅଟକାଇବା ପାଇଁ ତୁମଠି ତାକତ୍ ଅଛି ?''

ବହୁ ସମୟ ପରେ ସମସ୍ତେ ସଚେତନ ହେଲେ ଯେ, ସେମାନେ ବସିଚନ୍ତି, ନିଜ ନିଜ ଦେହ ନେଇ; ଯାହା ଭିତରେ ହୁଏତ ରକ୍ତ ସଞ୍ଚାଳନ ଓ ଶ୍ୱାସ ପ୍ରକ୍ରିୟା ବାତିଲ୍ ହୋଇ ଯାଇଥିଲା । ବଲ୍‌ବ ଜଳୁଚି । ପାଖ ଗୁହାଳରୁ ଶୁଭୁଚି ଗାଈମାନଙ୍କର ଦୀର୍ଘଶ୍ୱାସ । ପ୍ରବାହିତ ହେଉଚି ପବନ । ଉପରକୁ ଚାହିଁଲେ ଦିଶି ଯାଉଚନ୍ତି ତାରକାମାନେ । ତଳେ ମାଟି । ସିମେଣ୍ଟ ଢଙ୍କା ବାରନ୍ଦା । ସମସ୍ତେ ଫେରି ଆସୁଥିଲେ ପରିଚିତ ଭୂଗୋଳ ଭିତରକୁ, ଅନୁଭବ କରିପାରୁଥିଲେ ନିଜକୁ ।

ବିତିଗଲା ସପ୍ତାହେ । ସାଇମନ ଯେଉଁ ଚବିଶ ଘଣ୍ଟା କଥା କହୁଥିଲା, ତା'ର ସାତଗୁଣ । କୁଆଡ଼େ ଗଲା ମନିକା ? କେଉଁଠି ଲୁଚେଇ ରଖାଯାଇଚି ତାକୁ ? ଏମିତି କେଉଁ ଅଶୋକ ବନ ରହିଥିଲା ତା' ପାଇଁ ? ମା' ଲକ୍ଷ୍ୟ କରୁଥିଲା, ଉଦାସ ହୋଇପଡୁଚି ଶେଖର । ଶୋକର ବଳିଷ୍ଠ ସୁଅ ଯୋଗୁଁ ପ୍ରକାଣ୍ଡ ଅତଡ଼ା ଖସିପଡୁଚି ତା' ଭିତରେ । ଅନ୍ୟମନସ୍କ ହୋଇ ଯାଉଚି । ବସି ରହୁଚି ଚୁପ୍‌ଚାପ୍ ଗୁମ୍‌ରେ । କାନ୍ଦୁଚି । ହଲେଇ ଦେଉଚି କୋହ ତା'ର ସର୍ବାଙ୍ଗକୁ ।

ମା'ର ଛାତି ଫାଟିଯାଏ ତା'ର ଏଇ ଅବସ୍ଥା ଦେଖି । ସାଇମନ କହୁଥିଲା, ଖୋଜା ଚାଲିଚି । ଠାବ କରାଯାଇପାରୁ ନାଇଁ । ବାଟରେ କେଉଁଠି ଜଟାୟୁ ନାଇଁ ଯେ ମରିବା ପୂର୍ବରୁ କହି ଦେଇପାରନ୍ତା, କେଉଁ ଦିଗ ଆଡ଼କୁ ନିଆ ଯାଇଚି ମନିକାକୁ । ଇଂଜିନିୟର ଦଂପତି ଓ ଭବେଶ ଜାମିନ୍ ଯୋଗୁ ଖଲାସ୍ ହୋଇ ଯାଇଚନ୍ତି ହାଜତରୁ । ଇଂଜିନିୟର ଦଂପତି କୁଆଡ଼େ ଭୟଙ୍କର ଭାବେ ଅସୁସ୍ଥ ହୋଇ ପଡ଼ିଚନ୍ତି । ଶେଖର ଶୁଣିଲା, ଶୁଣିଲେ ବାପା-ମା । ଏସବୁ କଥାର ଉତ୍ତର ପାଇଁ ସେମାନଙ୍କଠାରେ ଥିଲା କେବଳ ଦୀର୍ଘଶ୍ୱାସ ।

ଆହୁରି ଦୀର୍ଘଶ୍ୱାସ ଥିଲା ଗାଁ ଲୋକଙ୍କର ମନ୍ତବ୍ୟ ପାଇଁ । ଶେଖର କୁଆଡ଼େ ସୀମା ଲଂଘନ କଲା । କ'ଣ ଦରକାର ଥିଲା ଏତେ ଦୂରକୁ ହାତ ବଢ଼େଇବା ପାଇଁ ? ଏମିତି କରି ଉଚ୍ଚ ଜାତିକୁ ଅପମାନ ଦେବା ପାଇଁ ତା'ର ଏଇ ହୀନ ପ୍ରଚେଷ୍ଟାର ଫଳ ସେ ନ ଭୋଗିବ କାହିଁକି ? ସେମାନଙ୍କର ପ୍ରତିକ୍ରିୟା ପରିଣତ ହେଲା ତିରସ୍କାରରେ । ସହଜେ ତ ତା' ପରିବାର ପ୍ରତି ଅନେକ ଦିନୁ ଈର୍ଷା ଠୁଳ ହୋଇଥିଲା ଅନେକଙ୍କ ଭିତରେ । ସେମାନେ ଖୋଲାଖୋଲି ପ୍ରକାଶ କଲେ ଯେ ଖୁବ୍ ବେଶି ଉଚ୍ଚାଭିଳାଷୀ ହେବା ମଧ୍ୟ ଗୋଟେ ପାପ ।

ଏମିତି ବିବାହ କରିଆରେ ଶେଖର କାହିଁକି ଅନ୍ୟମାନଙ୍କର ସମସ୍କନ୍ଧ ହେବାକୁ ଚେଷ୍ଟା କରୁଥିଲା ? ଏ ପାପର ପ୍ରାୟଶ୍ଚିତ୍ତ ସେ ଏବଂ ତା'ର ବାପା-ମା' କରିବେ ।

ଦଶଦିନ ମଧ୍ୟରେ ଏକାଧିକ ପତ୍ରିକାର ମୁଖ୍ୟ ବିଷୟବସ୍ତୁ ଥିଲା ଶେଖରର କାହାଣୀ । ରଂଗିନ ଫଟୋ, ସାକ୍ଷାତକାର ଇତ୍ୟାଦି କରିଆରେ ଉପସ୍ଥାପନ କରାଗଲା ଅଶ୍ଳୀଳ, ରୋମାଞ୍ଚକର ସତ ଘଟଣାକୁ । ସାଧାରଣ ନିର୍ବାଚନ ବହୁତ ଡେରି ନ ଥିଲା । ସମ୍ଭବତଃ ସେଇ କାରଣରୁ ବିଭିନ୍ନ ରାଜନୈତିକ ଦଳ ଏଥିରୁ ଫାଇଦା ଉଠାଇବାକୁ ଚେଷ୍ଟା କଲେ । ଫଳରେ ଏହାର ମାନବିକ ଓ ସାମାଜିକ ଦିଗଟି ଲକ୍ଷ୍ୟଚ୍ୟୁତ ହୋଇ ପଡ଼ିଲା । ସରକାରର ଅପାରଗତା, ଦଳିତ ଓ ସଂଖ୍ୟାଲଘୁମାନଙ୍କୁ ନ୍ୟାୟ ଏବଂ ନିରାପତ୍ତା ଯୋଗାଇବାରେ ଚରମ ବିଫଳତା ଇତ୍ୟାଦି କଥା ମୁଖରିତ କଲା ସମଗ୍ର ପ୍ରଦେଶକୁ ।

ଶେଖର ଖବରକାଗଜରେ ପ୍ରକାଶିତ ଅନ୍ୟ ଏକ ସମ୍ବାଦ ପଢ଼ିଲା କିଞ୍ଚିତ ଆମୋଦିତ ହୋଇ । ସେ ଜାଣିଥିଲା ଯେ, ରାଜନୈତିକ ଦଳ ନିର୍ବିଶେଷରେ ଆଦିବାସୀ-ହରିଜନ ଏମ୍.ଏଲ୍.ଏ.ମାନଙ୍କର ଏକ ଗୋଷ୍ଠୀ ଅଛି । ସମ୍ବାଦରେ ପ୍ରକାଶିତ ହୋଇଥିଲା ଯେ ଏଇ ବିଧାୟକମାନେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ତୁରନ୍ତ ମନିକାକୁ ଶେଖର ପାଖରେ ପହଞ୍ଚାଇବା ପାଇଁ ତତ୍ପର ହେବାକୁ ଦାବି କରିଚନ୍ତି । ସେମାନଙ୍କ ମଧ୍ୟରେ ଥିବା ବିରୋଧୀ ଦଳର କେତେଜଣ ବିଧାୟକ ଗାନ୍ଧୀ ଏବଂ ଆମ୍ବେଦକରଙ୍କ ପ୍ରତିମୂର୍ତ୍ତି ତଳେ ଆମରଣ ଅନଶନ କରିବା ପାଇଁ ଧମକ ମଧ୍ୟ ଦେଇଚନ୍ତି । ଶାସକ ଦଳର ସଭ୍ୟମାନେ ନିରୁପାୟ ଓ ଅପ୍ରତିଭ ହୋଇ ପଡ଼ିଚନ୍ତି । ସେମାନେ କହୁଚନ୍ତି ଯେ, ଏଭଳି ଘଟଣା ସରକାରର ଭାବମୂର୍ତ୍ତି ଉପରେ ଆଞ୍ଚ ଆଣୁଚି । ସରକାରର ସଫଳତା ସଂପର୍କରେ ଭାଷଣ ଦେବା ବେଳେ ଏଇ ଘଟଣା ସେମାନଙ୍କୁ ପରିଣତ କରିଦେଉଚି ମୂଢ଼ ଜୋକର୍‌ରେ । ସେମାନେ ନିର୍ବାଚନ ମଣ୍ଡଳୀର ଲୋକଙ୍କ ଆଗରେ କହିପାରୁ ନାହାନ୍ତି କିଛି ।

ବିଧାନସଭା ସରଗରମ ହୋଇ ପଡ଼ିଥିଲା ଏଇ ଘଟଣାକୁ ନେଇ । କକ୍ଷ ତ୍ୟାଗ, ସରକାରର ଇସ୍ତଫା ଦାବି ଭଳି ଚିରାଚରିତ ଫାର୍ସ ଅନୁଷ୍ଠିତ ହେଲା ସେଠାରେ । ଟେବୁଲ୍ ଉପରେ ବିଧା । ଖବରକାଗଜ ଓ ପତ୍ରିକା ଫୋପଡ଼ା । ବାଚସ୍ପତିଙ୍କ ଆଡ଼କୁ ମାଡ଼ିଯିବା । ଗୃହ ମଧ୍ୟରେ ଧାରଣା । ବଚସା । ଥରେ ଅଧେ ମୁଥ ମରାମରି । ଉଚ୍ଛୃଙ୍ଖଳ ଓ ପାଟିତୁଣ୍ଡ କରୁଥିବା କେତେଜଣ ସଭ୍ୟଙ୍କୁ ଗୃହରୁ ଟେକିନେଇ ପଦାରେ ଥୋଇବା । ଘରୋଇ ବିଭାଗ ମନ୍ତ୍ରୀଙ୍କର ବିବରଣୀ; ଯାହା କାହାରିକୁ ଶୁଭିଲା ନାଇଁ ପ୍ରବଳ ହୋହଲ୍ଲା ଯୋଗୁ । ଏ ଆଲୋଚନା

ବିଧାନସଭା ମଧ୍ୟରେ ସୀମାବଦ୍ଧ ହୋଇ ରହିଲା ନାହିଁ । ପ୍ରମୁଖ ସହରମାନଙ୍କରେ ଅନୁଷ୍ଠିତ ହେଲା ଏକାଧିକ ସାଧାରଣ ସଭା ବିଭିନ୍ନ ଦଳମାନଙ୍କ ତରଫରୁ । ସରକାରକୁ ଶୋଧିବା, ତାହାର ପତନ କାମନା କରିବା, ଆଗାମୀ ନିର୍ବାଚନରେ ଲୋକମାନେ ଏହାକୁ ଭଲ କରି ପାନେ ଦେବା ପାଇଁ ଆହ୍ୱାନ ଦେବା ଥିଲା ସେସବୁ ଭାଷଣର ବିଷୟବସ୍ତୁ । ତା' ସହିତ କେଉଁଠି କେମିତି ମିଶିଥିଲା ଦଳିତମାନଙ୍କ ପାଇଁ ସହାନୁଭୂତି । ସେମାନଙ୍କର ଉନ୍ନତି ହେଲେ ଦେଶର ମଧ୍ୟ ଉନ୍ନତି ହୋଇପାରିବ, ସେମାନେ ଆମ ସମାଜର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଯୁଗାନ୍ତକାରୀ କଥା କୁହାଗଲା ଚାରିଆଡ଼େ । ଭୁଲ କାରଣରୁ ଶେଖର ହୋଇପଡ଼ିଲା ଜଣେ ଜଣାଶୁଣା ବ୍ୟକ୍ତିତ୍ୱ ।

ମାତ୍ର ମୂଳ ସମସ୍ୟାଟି ରହିଥିଲା ଅସମାହିତ ହୋଇ । ଶେଖରର ଆଦୌ ସନ୍ଦେହ ନ ଥିଲା ଯେ, ତାହା ବାସ୍ତବିକ ପୋତି ହୋଇପଡୁଚି, ହଜିଯାଉଚି । ଏ ଯେଉଁ ସଭା, ଶୋଭାଯାତ୍ରାର କୋଳାହଳ ଶୁଭୁଚି, ତାହା ଲାଇନ୍‌ଚ୍ୟୁତ କରି ସାରିଲାଣି ଏହାକୁ । ଅସଲ କଥା ହେଉଚି, ମନିକା ଏବେ କେଉଁଠି ? ପୋଲିସ୍ ଅନୁସନ୍ଧାନ କିଛି ଅଗ୍ରଗତି କରିଚି କି ? ଦେଖା ନାହିଁ ସାଇମନ୍‌ର । ହୁଏତ କିଛି ହୋଇପାରୁ ନ ଥିବା ଗ୍ଲାନି ଯୋଗୁଁ ସେ ଯୋଗସୂତ୍ର ରଖିପାରୁ ନାହିଁ ତା' ସହିତ । ଯଦି ଆଶାଜନକ ଘଟଣା ଘଟିଥାନ୍ତା, ସେ ନିଶ୍ଚୟ ଧାଇଁଆସନ୍ତା ତା' ପାଖକୁ ଆନନ୍ଦରେ ଗଦ୍ ଗଦ୍ ହୋଇ । କେଉଁଠି ରଖା ଯାଇଚି ମନିକାକୁ ? ଏଇ ପ୍ରଶ୍ନ ସହିତ ଆଶଙ୍କାଟେ ଘନୀଭୂତ ହେଉଥିଲା ତା' ମନରେ– ମନିକାକୁ ମାରିଦିଆ ଯାଇଚି କି ? ସେ କ'ଣ ତା'କୁ ଆଉ କେବେ ପାଇ ପାରିବ ନାହିଁ ?

ଏଇଭଳି ମାନସିକ ଅବସ୍ଥା ଥିବା ବେଳେ କାର୍ ଗୋଟେ ଘର ଆଗରେ । ପାଇଜାମା-ପଞ୍ଜାବି ପରିହିତ ଜଣେ ଭଦ୍ରଲୋକଙ୍କ ପ୍ରଶ୍ନ– "ଆପଣ ଶେଖରବାବୁ କି ?"

ଶେଖର ପୁଣି ଚାହିଁଲା ଆଗନ୍ତୁକଙ୍କ ଆଡ଼େ ଆଗ୍ରହହୀନ ଦୃଷ୍ଟିରେ । ମୁଣ୍ଡ ହଲାଇଲା, ହଁ କହିବା ପରିବର୍ତ୍ତେ । ଏଥର ସେ ଏକସଙ୍ଗେ ହସିଲେ ଓ ଶେଖରର କୁଣ୍ଠିତ ଦୁଇ ହାତକୁ ଧରିନେଲେ ବ୍ୟାପକ ପାପୁଲି ସାହାଯ୍ୟରେ । ପ୍ରଚୁର ପାନଖିଆ ପାଟି । ବେକରେ ଡେଉଁରିଆ । ଝାଳୁଆ ମୁହଁ । ତିନି-ଚାରି ଦିନ ହେବ କଟାଯାଇ ନ ଥିବା ଦାଢ଼ି । ତାଙ୍କ ଢଙ୍ଗରଙ୍ଗରୁ ଗୋଟିଏ କଥା ସ୍ୱଷ୍ଟ ହୋଇ ପଡୁଥିଲା । ଭଦ୍ରଲୋକ ସବୁବେଳେ ବ୍ୟସ୍ତ ରହନ୍ତି ।

–"ମୋତେ ଚିଫ୍ ମିନିଷ୍ଟର ଏବଂ ଆମ ଦଳର ସଭାପତି ପଠେଇଚନ୍ତି । ଆପଣଙ୍କ ସହିତ ଜରୁରୀ କଥା ଅଛି ।" ସେ ଏତକ କହିଲେ ଶେଖରକୁ

ଅଭିନନ୍ଦନ ଜଣେଇବା ଭଙ୍ଗୀରେ । ତା' ପାଇଁ ସୌଭାଗ୍ୟ ଅପେକ୍ଷା କରୁଥିବା ଆଭାସ ମିଳିଲା ଏଥିରୁ ।

ପାର୍ଟି ପ୍ରେସିଡେଣ୍ଟ ! ଚିଫ୍ ମିନିଷ୍ଟର ! ଜରୁରୀ କଥା, ତା' ସହିତ ! ଶେଖର ଇତସ୍ତତଃ ହେଲା, ପଚ୍ଛେଇଲା । କିଛି ମଧ୍ୟ ଅନୁମାନ କରିପାରିଲା ନାଇଁ । ଦୁଃଖ ପ୍ରକାଶ କରି କହିଲା— "ସରି, ବହୁତ ଦିନ ହେଲା ଗାଁରେ ରହିଲିଣି, ଛୁଟି ନ ନେଇ । ମୁଁ କଲେଜ ଫେରିଯିବି । ମୋ ପାଖରେ ତାଙ୍କର ପୁଣି କି କାମ ?"

ଭଦ୍ରବ୍ୟକ୍ତି ବିସ୍ମିତ ହେଲେ ଶେଖରର ଏଇ ନିର୍ବୋଧତା ଦେଖି । କହିଲେ— "ଆପଣଙ୍କ ପାଇଁ ତେଣେ ଗୌରବୋଜ୍ଜ୍ୱଳ ଭବିଷ୍ୟତ ରହିଚି । ଦେଖିଲା ବେଳକୁ ଆପଣ କହୁଚନ୍ତି କ'ଣନା, କଲେଜ ଫେରିବେ ? ଏମାନଙ୍କ ପାଖକୁ ଯିବା ପାଇଁ ଲୋକେ ସୁଯୋଗ ଖୋଜନ୍ତି । ଅନେକେ ପାଆନ୍ତି ନାଇଁ । ସେମାନେ ଏକରକମ ଆପଣଙ୍କ ପାଖକୁ ଆସିଲା ବେଳେ ଆପଣ ଧରାଛୁଆଁ ଦେବାକୁ ନାରାଜ !"

ବାପା-ମା' ଚିନ୍ତିତ ହେଲେ । ସତରେ ଚିଫ୍ ମିନିଷ୍ଟର ଏବଂ ପାର୍ଟି ପ୍ରେସିଡେଣ୍ଟ ନା କୌଣସି ଷଡ଼ଯନ୍ତ୍ର ? ମା' ବାରଣ କଲା । ପର ମୁହୂର୍ତ୍ତରେ ବାପା ଯୋଗଦେଲେ ସେଥିରେ । ଡେରି ହେବାର ଦେଖି ବ୍ୟସ୍ତ ହେଲେ ଭଦ୍ରବ୍ୟକ୍ତି । ମା' ସ୍ପଷ୍ଟ ଭାବରେ କହିଲା ଯେ, ଏମିତି ପରିସ୍ଥିତିରେ ସେ ଆଦୌ ଶେଖରକୁ ଛାଡ଼ିବ ନାଇଁ ଅଜଣା ଲୋକ ସହିତ । ଆଗନ୍ତୁକ ବାଧ୍ୟ ହୋଇ ନିଜର ପରିଚୟ ଦେଲେ । ଜଣେ ମ୍ୟୁନିସିପାଲିଟି ଚେୟାରମ୍ୟାନ୍ ସେ । ଟେଲିଫୋନ୍ ପାଇ ସେ ଶେଖରକୁ ନେବାକୁ ଆସିଚନ୍ତି । ସେ ଦେଖେଇଲେ ଭିଜିଟିଙ୍ଗ୍ କାର୍ଡ଼, ପ୍ୟାଡ୍, ଷ୍ଟାମ୍ପ ଇତ୍ୟାଦି ଏମାନଙ୍କର ସନ୍ଦେହ ଦୂର କରିବା ପାଇଁ । ତେବେ ଶେଖରକୁ କାହିଁକି ଡକାଯାଉଚି, ତାହାର କାରଣ ସେ ଜାଣନ୍ତି ନାଇଁ ବୋଲି କହିଲେ । ମାତ୍ର ଜୋର ଦେଇ କହିଲେ ଯେ, ଶେଖରର ଜୀବନ ନୂଆ ମୋଡ଼ ନେବ ଯା ପରେ ।

ଦୀର୍ଘ ଛ-ସାତ ଘଣ୍ଟାର ଡ୍ରାଇଭିଙ୍ଗ୍ ପରେ ରାଜଧାନୀ । ପି.ଜି. ଶେଷ କରିବା ପରେ ଏଠାକୁ ଆସି ନ ଥିଲା ସେ । ବିକ୍ଷିପ୍ତ ଭାବରେ ସ୍ମୃତିର ଭଗ୍ନାଂଶ । ଅନ୍ୟ ସମୟ ହୋଇଥିଲେ ସେ ବିଭୋର ହୋଇଥାଆନ୍ତା । ବର୍ତ୍ତମାନ ଜଣାପଡୁଚି ପ୍ରତାରଣାପୂର୍ଣ୍ଣ, ଅନାବଶ୍ୟକ । ପରିଚିତ ରାସ୍ତା-ଘାଟ, କୋଠା, ଗହଳି, ଭିଡ଼ ବସ୍, ପୋଷ୍ଟର । ଶେଖର ଆଖି ଫେରାଇଲା ସେ ଆଡୁ । ଦୀର୍ଘଶ୍ୱାସ ତ୍ୟାଗ କଲା ।

ଷ୍ଟେଟ୍ ଗେଷ୍ଟ ହାଉସ୍‌ରେ ଧୁଆଧୋଇ । ପୋଷାକ ପରିବର୍ତ୍ତନ । ଚା' । ଭଦ୍ରବ୍ୟକ୍ତି ଜଣେଇଲେ ଯେ ଶେଖର ଆସିଥିବା ଖବର ପାଇ ପାର୍ଟି ଚିଫ୍ ଓ ଚିଫ୍ ମିନିଷ୍ଟର ଖୁବ୍

ଖୁସି ହୋଇଚନ୍ତି । ଗୋଟେ ବିଦେଶୀ କଂପାନୀର ପ୍ରତିନିଧିଙ୍କ ସହିତ ତାଙ୍କର କଥାବାର୍ତ୍ତା ଶେଷହେଲେ ଶେଖର ସାକ୍ଷାତ କରିବ ତାଙ୍କୁ ।

ରାତି ଏଗାରଟା ଟପି ସାରିଥିଲା ସେତେବେଳେ । ଚିଫ୍‌ଙ୍କ ସହିତ ଥିଲେ ଆହୁରି ଦଶ-ବାର ଜଣ ଲୋକ । ଚିଫ୍ ସ୍ୱାଗତ କଲେ ଶେଖରଙ୍କୁ ଏବଂ ଉତ୍‌ଥାପନ କଲେ ବିସ୍ମୟକର ବ୍ୟାପାର– "ଆପଣ ୟଙ୍ଗ୍, ଇଣ୍ଟେଲିଜେଣ୍ଟ ଏବଂ ହାଇଲି ଏଜୁକେଟେଡ୍, ଶେଖରବାବୁ । ଆପଣଙ୍କ ନିର୍ବାଚନ ମଣ୍ଡଳୀ ଏକ ସଂରକ୍ଷିତ ମଣ୍ଡଳି । ମୁଁ ଚାହେଁ, ଏଠାରେ ଯେଉଁମାନେ ଆମ ଦଳର କର୍ମକର୍ତ୍ତା ଅଛନ୍ତି, ସେମାନେ ବି ଚାହାନ୍ତି ଯେ, ଆଗାମୀ ବିଧାନସଭା ନିର୍ବାଚନରେ ଆପଣ ଆମ ଦଳର ପ୍ରାର୍ଥୀ ଭାବେ ଛିଡ଼ା ହେବେ ।"

ନିଜ କାନକୁ ବିଶ୍ୱାସ କରିପାରିଲା ନାଇଁ ଶେଖର । ସେ ଚାହିଁଲା ସମସ୍ତଙ୍କର ଉତ୍ସାହଦୀପ୍ତ ମୁହଁକୁ ଏବଂ ପୁଣି ଶୁଣିଲା– "ଆପଣ ଶାସନକଳର ଅଂଶ ବିଶେଷ ହୁଅନ୍ତୁ । ସେବା କରିପାରିବେ ଆପଣଙ୍କ ନିର୍ବାଚନ ମଣ୍ଡଳୀର । ଏତକ ଜଣାଇବା ପାଇଁ କଷ୍ଟ ଦେଲି ଆପଣଙ୍କୁ ।"

ବିଧ୍ୱସ୍ତ ହୋଇଯାଇଥିବା ଚିନ୍ତାଧାରା ପୁଣି ଯୋଡ଼ି ହେବାକୁ କିଛି ସମୟ ଲାଗିଲା । ସେ ସତେଯେପରି ପଡ଼ିଯାଇଥିଲା ତଳେ; ଠିଆ ହେଲା । କହିଲା– "କିନ୍ତୁ, ସାର୍, ମୋ ପରିସ୍ଥିତି– ।"

–"ମୁଁ ଜାଣେ ।" ସେ କହିଲେ– "ଆପଣଙ୍କ ପତ୍ନୀଙ୍କୁ ପୁଣି ଆପଣଙ୍କ ପାଖରେ ପହଞ୍ଚାଇ ଦେବା ପାଇଁ ସବୁ ପଦକ୍ଷେପ ନିଆଯାଉଚି ।"

–"ମୁଁ ସାର୍, ସେ କଥା କହୁ ନ ଥିଲି ।" ଶେଖର ଚେଷ୍ଟା କଲା ନିଜର ଦୁର୍ବଳତା ପ୍ରକାଶ କରିବା ପାଇଁ– "ମୋତେ ରାଜନୀତି ଜଣା ନାଇଁ । ମୁଁ ସନ୍ତୋଷ ପାଏ କ୍ଲାସ୍‌ରେ ପିଲାମାନଙ୍କୁ ପଢ଼ାଇ । ମୋତେ ସାର୍, କ୍ଷମା କରିବେ, ଆପଣଙ୍କର ଏଇ ଲୋଭନୀୟ ଅଫର୍ ଗ୍ରହଣ କରିବାକୁ ମୁଁ ଅକ୍ଷମ ହେଉଥିବାରୁ ।"

ରୁମ୍ ନିରବ ହୋଇଗଲା । ଅନ୍ୟମାନେ ବିଦ୍ରୁପାତ୍ମକ ମୁହଁ ନେଇ ଅନେଇଲେ ତା' ଆଡ଼େ । ଚିଫ୍‌ଙ୍କ ସ୍ମିତହସ ଉଭେଇ ଯାଇଥିଲେ ମଧ୍ୟ କହିଲେ– "ଠିକ୍ ଅଛି । ଉଇସ୍ ୟୁ ଅଲ୍ ଦି ବେଷ୍ଟ । କୌଣସି କାମରେ ମୋ ସାହାଯ୍ୟ ଦରକାର କଲେ ଦ୍ୱିଧାହୀନ ଭାବରେ ଆସିବେ ।"

ୟାପରେ ସେ ଓଲଟେଇବା ଆରମ୍ଭ କଲେ ଟେବୁଲ ଉପରେ ଥିବା କାଗଜପତ୍ର । ଶେଖର ଜାଣିଗଲା ଯେ, ସେଠାରେ ତା'ର ଉପସ୍ଥିତି ଅନାବଶ୍ୟକ । ନମସ୍କାର

କଲା । ବାହାରେ ପାଇଲା ନାଇଁ ପରିଚିତ ଭଦ୍ରଲୋକଙ୍କୁ । କିଛି ବାଟ ଚାଲିଲା ଅନ୍ୟମନସ୍କ ହୋଇ । ରିକ୍‌ସା ପାଇବା ଅସମ୍ଭବ । ଚାଲିଲା ଗେଷ୍ଟ ହାଉସ୍‌ରେ ପହଞ୍ଚିବା ପର୍ଯ୍ୟନ୍ତ । ପରଦିନ ସକାଳେ ବସ୍ । ଦୁଇଟି ବସ୍ ବଦଳାଇ ଘରେ ପହଞ୍ଚିବା ବେଳକୁ ସେ କ୍ଳାନ୍ତ ଓ ବିରକ୍ତ ହୋଇ ପଡ଼ିଥିଲା ।

ସେଇଦିନ ସଂଧ୍ୟାରେ ସେ ଜାଣିବାକୁ ପାଇଲା ଯେ, ଗୋଟେ ବଡ଼ଧରଣର ସଭାର ଆୟୋଜନ କରାଯାଉଚି ତାଙ୍କ ଗାଁରେ । ଜାତୀୟ ସ୍ତରର ଜଣାଶୁଣା ଦୁଇଜଣ ନେତା ଏଥିରେ ଯୋଗ ଦେବେ ବୋଲି ହଜାର ହଜାର ସଂଖ୍ୟାର ପୋଷ୍ଟର ଘୋଷଣା କଲା । ଶେଖର ଜାଣେ, ଏଇ ଦୁଇଜଣ ନେତାଙ୍କର ଆଭିମୁଖ୍ୟ । ଏମାନେ ନିଜେ ଦଳିତ ଏବଂ ଦେଶର ଦଳିତ ବର୍ଗର ଉନ୍ନତି ଓ ଆତ୍ମସମ୍ମାନ ପାଇଁ ଏମାନେ ପାଟିତୁଣ୍ଡ କରନ୍ତି ।

ଶେଖରର ଧାରଣା ନ ଥିଲା ଏଇ ରାଜନୈତିକ ଦଳର ଏତେ ଶକ୍ତି ଓ ଜନ ସମର୍ଥନ ଅଛି । ତା'ଙ୍କ ଗାଁକୁ ଧାଇଁଲା ସଂଖ୍ୟାହୀନ ମୋଟରଗାଡ଼ି । ଦୁଇଦିନ ମଧ୍ୟରେ ବିଶାଳ ପଡ଼ିଆର ଗୋଟିଏ ମୁଣ୍ଡରେ ତିଆରିହେଲା ମଞ୍ଚ । ବାରିକେଡ଼ ତିଆରି ହେଲା, ମଞ୍ଚଠାରୁ କିଛି ଦୂରରେ ଶ୍ରୋତାମାନଙ୍କୁ ରଖିବା ପାଇଁ । ଅନ୍ୟ ବାରିକେଡ୍ ପୁରୁଷ ଓ ମହିଳା ଶ୍ରୋତାଙ୍କୁ ପୃଥକ ରଖିବା ପାଇଁ ଗଢ଼ା ହେଲା । ଅନେକ ଖୁଣ୍ଟରେ ବନ୍ଧା ହେଲା ପବ୍ଲିକ୍ ଆଡ୍ରେସ୍ ସିଷ୍ଟମ୍ । ସଭାର ଆୟୋଜକ ଥିଲା ଏ ଦଳର ପ୍ରାଦେଶିକ ଶାଖା । ସେମାନେ ଆଶାବାଦୀ ଥିଲେ ଯେ ଲକ୍ଷାଧିକ ଶ୍ରୋତା ଯୋଗ ଦେବେ ଏ ସଭାରେ । ଅନ୍ତତଃ ଆଖପାଖ ଗାଁର ସମସ୍ତ ଦଳିତ ଆସିବେ ଏଠାକୁ । ଦେଖିବେ ଓ ଶୁଣିବେ, ସେମାନଙ୍କର ମର୍ଯ୍ୟାଦା ଓ ମଙ୍ଗଳ ପାଇଁ ତାଙ୍କ ପାଖକୁ ଆସୁଥିବା ଅବତାରମାନଙ୍କୁ ।

ସେହି ଗାଁରେ ଏଭଳି ସଭାର ଆୟୋଜନ କାହିଁକି କରାଯାଉଚି, ତାହାର ଉଦ୍ଦେଶ୍ୟ କାହାରିକୁ ଅଜଣା ନ ଥିଲା । ସେତେବେଳେ ସେହି ଗାଁ ଏବଂ ଶେଖର ଭଳି ଜଣେ ଦଳିତ ଚର୍ଚ୍ଚାର ବିଷୟ ହୋଇପଡ଼ିଥିଲା ଚାରିଆଡ଼େ । ଆଦିବାସୀ-ହରିଜନ ଅଧ୍ୟୁଷିତ ସେହି ଅଞ୍ଚଳରେ ପ୍ରବାହିତ ହେଉଥିଲା କ୍ରୋଧ ଓ ପ୍ରତିବାଦର ଅପ୍ରକାଶିତ ସୁଅ । ସରକାର ଏ ଦିଗରେ କିଛି କଲା ନାଇଁ; ଶେଖର ଉଚ୍ଚ ସଂପ୍ରଦାୟର ହୋଇଥିଲେ ନିଶ୍ଚୟ ତତ୍‌କ୍ଷଣାତ୍ ନ୍ୟାୟ ପାଇଥାନ୍ତା ବୋଲି ବଳବତ୍ତର ଥିଲା ଧାରଣାଟେ । ଏଇ ମନୋଭାବ ଏକ ଉର୍ବର ଜମି । ଏଥିରୁ କମ୍ ପରିଶ୍ରମରେ ରାଜନୈତିକ ଅମଳ ହାସଲ କରାଯାଇପାରେ ।

ସଭା ଅନୁଷ୍ଠିତ ହେଲା ତିନିଟା ବେଳକୁ, ଘୋଷଣା କରାଯାଇଥିବା ସମୟର ଦୁଇଘଣ୍ଟା ପରେ । ଏହା ସତ୍ତ୍ୱେ ଅନେକ ଯାନବାହନ ଠୁଳ କରିସାରିଥିଲେ

ହଜାର ହଜାର ଶ୍ରୋତାଙ୍କୁ ସଭାସ୍ଥଳରେ । ଏହାକୁ ବର୍ଣ୍ଣନା କରାଗଲା, ଦଳର ପ୍ରାରମ୍ଭିକ ନିର୍ବାଚନ ଅଭିଯାନ ଭାବରେ ।

ଏହା ପୂର୍ବରୁ କିନ୍ତୁ ଗୋଟିଏ କାମରେ ଉଦ୍ୟୋକ୍ତାମାନେ ବିଫଳ ହୋଇଥିଲେ । ସେମାନେ ଚାହୁଁଥିଲେ ମଞ୍ଚ ଉପରେ ଶେଖର ଓ ବାପା-ମା ବସନ୍ତୁ । ସେମାନେ ହେବେ ନିର୍ଯାତନା ଓ ଅନ୍ୟାୟର ଶିକାର ହୋଇଥିବା ସମଗ୍ର ସଂପ୍ରଦାୟର ପ୍ରତୀକ । ମଞ୍ଚ ଉପରେ ସେମାନଙ୍କର ଉପସ୍ଥିତି ସୃଷ୍ଟି କରିବ ପ୍ରଚଣ୍ଡ ଆବେଗଗତ ପ୍ରଭାବ । ଆହୁରି ଭଲ ହେବ, ଯଦି ବାପା କିମ୍ବା ମା' ଦୁଇ ପଦ କହିପାରିବେ । ସେତେବେଳେ ସେମାନେ ଟିକିଏ କାନ୍ଦି ପକାଇଲେ ଅତୁଳନୀୟ ସାଫଲ୍ୟ ଅର୍ଜନ କରିବ ଏ ସଭା ।

ବାପା ମନା କଲେ । କହିଲେ ଯେ, ନିଜ ଦୁଃଖକୁ ନେଇ ସେ ନିଜ ଭିତରେ ଘାଣ୍ଟିଚକଟି ହେବାକୁ ପସନ୍ଦ କରନ୍ତି । ଅବାକ୍ ହୋଇଗଲା ମା । କିଛି ବୁଝି ନ ପାରି ପଚାରିଲା– ''କ'ଣ ହେଲା ? ମଣ୍ଡପ ଉପରେ ବସିବି ମୁଁ ? ପୁଣି କାନ୍ଦି କାନ୍ଦି କିଛି କହିବି ? କ'ଣ ପାଇଁ ? କ'ଣ କହିବି ?''

–''ମାଉସୀ ।'' ପ୍ରରୋଚନା ଓ ଉତ୍ସାହ ଯୋଗେଇବା ପାଇଁ ଚେଷ୍ଟା କଲା ଜଣେ ଯୁବକ– ''ଏ ସଭା ଆମ ନିଜ ସଭା । ଯେଉଁ ଦଳ ଏହାର ଆୟୋଜନ କରୁଚି, ସେଦଳ ଆମ୍ଭମାନଙ୍କର ନିଜ ଦଳ ।''

ମୂକ୍ ବନିଗଲା ମା' । ଉନ୍ମୁକ୍ତ ରହିଲା ତା' ଓଠ । ବଲବଲ କରି ଚାହିଁ ରହିଲା କେବଳ । ପୁଣି କୁହାହେଲା ତାକୁ– ''ତୁମେ ଆଜି ପର୍ଯ୍ୟନ୍ତ, ନିର୍ବାଚନ ବେଳେ, କେଉଁ ଦଳକୁ ଭୋଟ ଦେଇଆସିଚ ?''

କେଜାଣି ? ତା'ର ମନେ ନାହିଁ; କାରଣ ତାହା ଖୁବ୍ ଗୁରୁତ୍ୱପୂର୍ଣ୍ଣ ବୋଲି ସେ ଭାବି ନାଇଁ । ତା'ର ଦରକାର ଟିକିଏ ସୁଖ । ନିର୍ମଳ ପାଣି, ଶସ୍ତାରେ ଦରକାର ହେଉଥିବା ଜିନିଷପତ୍ର, ଠିକ୍ ସମୟରେ ବର୍ଷା, ଶେଖରର ମଙ୍ଗଳ । ଆଉ କ'ଣ ଦରକାର ଜୀବନଟିଏ ବିତେଇ ଦେବା ପାଇଁ ? ତାକୁ କୁହାଗଲା– ''ଏଇ ଦେଖୁଚ, ମାଉସୀ, ଏଇ ହେଉଚି ଆମ ଦଳର ନିର୍ବାଚନ ସଙ୍କେତ । ଆମେ ସମସ୍ତେ ଏହା ଉପରେ ମୋହର ମାରିବା । ଆମ ଲୋକ ଶାସନ କଳ ଅକ୍ତିଆର କରିବେ । ଆମକୁ ଆଉ ହୀନିମାନ ହେବାକୁ ପଡ଼ିବ ନାଇଁ ।''

ଶେଖର ତ ଗଲା ନାଇଁ ସଭା ସ୍ଥଳକୁ । ମା'କୁ ଯେତେ ବୁଝେଇଲେ ମଧ୍ୟ ସେ କହିଲା ଯେ, ଘରେ ରାଜ୍ୟଯାକର କାମ ପଡ଼ି ରହିଚି । ମୁଗ ଗଣ୍ଡାଏ ଫାଳ କରିବ । ବାଛୁରୀଟେ ସକାଳୁ କିଛି ଖାଉ ନାଇଁ । ତା' କଥା ବୁଝିବ ।

ହଳଦୀ ଗୁଣ୍ଡ କରିବ । ବାପା ଯିବେ ବୋଲି କହିଲେ; ମାତ୍ର କୋଦାଳ ଧରି ଗଲେ ବାରିକୁ । କିଆରି ବନେଇଲେ । କେତେଟା ଗଛ ମୂଳେ ମନ୍ଦା ତିଆରି କଲେ ।

ସବୁ ଶୁଭିଯାଉଥିଲା । ଶେଖର ଜୀବନରେ କେବେ ଶୁଣି ନ ଥିଲା ଏଭଳି ମାରାତ୍ମକ ଭାଷଣ । ପ୍ରତ୍ୟେକ ଶବ୍ଦ ସତେ ଅବା ବାହାରିଆସୁଥିଲା ନିଆଁ, ହଳାହଳ ଓ ଘୃଣା ଭିତରୁ । ଏହା ଥିଲା ସରକାର ବିରୋଧରେ, ଉଚ୍ଚ ଜାତି ବିରୋଧରେ, ଦଳିତବର୍ଗର ଏକତାର ଅଭାବ ବିରୋଧରେ । ଶ୍ରୋତାମାନେ ଉନ୍ମତ୍ତ ଓ ମନ୍ତ୍ରମୁଗ୍ଧ ହୋଇପଡ଼ିଥିଲେ । ସେମାନଙ୍କର ଭାବନା ଓ ବିବେଚନା ଲୋପ ପାଇଗଲା । ସେମାନେ ନିୟନ୍ତ୍ରଣ କରିବାକୁ ଅକ୍ଷମ ହୋଇପଡୁଥିଲେ, ତାଙ୍କ ଭିତରେ ଆରୋପିତ କରାଯାଉଥିବା ଉତ୍ତେଜନା ଓ କ୍ରୋଧକୁ । ସାମନ୍ୟ ଫିଉଜ୍ ସାହାଯ୍ୟରେ, ଏ ବିଶାଳ ଜନତା ପରିଣତ ହୋଇଯାଆନ୍ତା ଏକକ ଶକ୍ତିରେ । ଧ୍ୱଂସ କରି ଦିଅନ୍ତା ସାମାଜିକ ବ୍ୟବସ୍ଥା । ଚୂରମାର କରିଦିଅନ୍ତା ସମସ୍ତ ବ୍ୟବଧାନ ଓ ବିଭାଜନ ।

ପ୍ରାୟ ଚାରିଘଣ୍ଟା ପରେ ନିରବ ହୋଇଗଲା ମାଇକ୍ । ଦୀର୍ଘ ସମୟ ପର୍ଯ୍ୟନ୍ତ ଶୁଭିଲା କ୍ରମେ ପତଳା ହୋଇଯାଉଥିବା କୋଳାହଳ । ମୋଟର ଗାଡ଼ି ଓ ହର୍ଣ୍ଣର ଶବ୍ଦ । ଏ ସଭା କ'ଣ ହାସଲ କଲା କେଜାଣି ? ଶେଖର ଆଗ୍ରହୀ ନ ଥିଲା ଜାଣିବାକୁ କାହାର କେତେ କ'ଣ ଲାଭ ହେଲା ଏଥିରୁ । ମାତ୍ର ସେ ବୁଝିପାରୁ ନ ଥିଲା ଯେ, ବିଭାଜନକାରୀ ରେଖାଟା ଆହୁରି ସ୍ପଷ୍ଟ ଓ ସଂପ୍ରସାରିତ ହେଉଚି । ଦଳିତବର୍ଗ ପାଇପାରୁ ନ ଥିଲେ ନିଜସ୍ୱ ପରିଚିତି, ସଂଜ୍ଞା । ଏକ ଆକ୍ରମଣାତ୍ମକ ମନୋଭାବ, ନିଜକୁ ଜାହିର କରିବା ଭଳି ଦୃଢ଼ତା ସଞ୍ଚରିତ ହେଉଥିଲା ସେମାନଙ୍କ ମଧ୍ୟରେ ।

ଯଥେଷ୍ଟ ହେଲା । ଶେଖର କହିଲା ମନକୁ ମନ । କ'ଣ ହେଉଚି ଏସବୁ ? ଗୁଡ଼ାଏ ଅନ୍ଧ, ପାଗଳ ଶକ୍ତି ଘେର ଭିତରେ କେବଳ ସେ ଏକୁଟିଆ ନୁହେଁ; ତା'ର ସଂପ୍ରଦାୟ ରହିଯାଇଚି ବୋଲି ତା'ର ଆଉ ସନ୍ଦେହ ନ ଥିଲା ।

ଏ ସଂପ୍ରଦାୟକୁ ହାସଲ କରିବା ପାଇଁ ଚାଲିଚି ତୁମୂଳ ପ୍ରତିଯୋଗିତା । ଏ ପ୍ରତିଯୋଗିତା ପୁଣି ବିଭିନ୍ନ ପ୍ରକାରର, ବିବିଧ ସ୍ତରର । ଏହା ଧର୍ମଗତ ହୋଇପାରେ । ରାଜନୈତିକ ମଧ୍ୟ ହୋଇପାରେ । ଏମାନଙ୍କ ଆଗରେ ପ୍ରଲୋଭନ । ଚାଲିଆସ, ଆମ ଭିତରକୁ । ତୁମକୁ ଅର୍ଥ ଦିଆଯିବ । ତୁମକୁ ନିରାପତ୍ତା ଯୋଗେଇ ଦିଆଯିବ । ମାଗଣାରେ ଦିଆଯିବ ଔଷଧ, ଲୁଗାପଟା, ଶିକ୍ଷା । ଆମକୁ ଦେଉଥାଅ ଭୋଟ । ତୁମେ କାନ୍ଧ ଦେଖାଇଦିଅ । ତା' ଉପରେ ଠିଆ ହୋଇ ଆମେ କ୍ଷମତାରେ ରହିବୁ । ତୁମକୁ ଦିଆଯିବ ସାମାଜିକ ମର୍ଯ୍ୟାଦା । ପିଲାମାନଙ୍କୁ ଷ୍ଟାଇପେଣ୍ଡ, କୋଟାରେ ଚାକିରି ।

ସବୁ ଦିଆଯିବ । ମାତ୍ର ମିଳିବ ନାହିଁ ଗୋଟିଏ ପ୍ରଶ୍ନର ଉତ୍ତର– ମନିକାକୁ ଛଡ଼େଇ ନିଆଯାଏ କାହିଁକି ଶେଖର ହାତରୁ ?

କେହି ଆଗେଇଆସନ୍ତି ନାହିଁ ଏଇ ସଙ୍କଟର ସମାଧାନ ପାଇଁ । ସାଇମନ କେତେ ବାଟ ଆଗେଇଲା, ମନିକାକୁ ଠାବ କରିବା ବାବଦରେ ? ଦରକାର ହେଲେ ସେ ଚିଫ୍‌ଙ୍କ ପାଖକୁ ଦ୍ୱିଧାହୀନ ଭାବରେ ଯିବ । ତା'ର ଦରକାର କ'ଣ ? ବଦଳି ? କେଉଁଠି ଘର ପାଇଁ ପ୍ଲଟ୍ ? ଲୋନ୍ ? ଏସବୁ ଦରକାର ନାହିଁ ତା'ର । ମନିକା ତା' ପାଖରେ ନିର୍ବିଘ୍ନରେ ରହୁ । ଏଇ ଆବଶ୍ୟକତା ପୂରଣ ପାଇଁ କାହା ପାଖରେ ନ ଥିଲା କିଛି । ଆଉ, ଏଇ ଯେଉଁ ସଭା । ରକ୍ତ ପିଇଯାଅ । ଧ୍ୱଂସ କର । ପ୍ରତିଷ୍ଠା କର ନିଜକୁ । ଏଇ ବାର୍ତ୍ତା କେମିତି ପ୍ରତିଶ୍ରୁତି ଦେବ ଯେ, ମନିକା ନିଶ୍ଚିନ୍ତରେ ଦାଂପତ୍ୟ ଜୀବନ ଯାପନ କରିବ ?

ଏସବୁ କୋଳାହଳ । ଏଇ ସବୁ ଧସ୍ତାଧସ୍ତି, ଟଣାଓଟରା । ଶେଖର ଦୀର୍ଘଶ୍ୱାସ ତ୍ୟାଗ କଲା । କେଉଁଠି ଟିକିଏ ଜାଗା ମିଳନ୍ତା କି ଆତ୍ମା, ହୃଦୟ ଓ ମନର ସ୍ୱାଛନ୍ଦ–ସ୍ଥିତି ପାଇଁ ! କୈଳାଶର ପ୍ରରୋଚନା, ଫାଦର ଯୋଶେଫଙ୍କର ନିରବ ଆହ୍ୱାନ, ସରକାର, ରାଜନୈତିକ ଦଳ; ପୁଣି ସାଇମନର ତତ୍ପରତା ।

ସବୁ ଜଣାପଡୁଚି ହାସ୍ୟାସ୍ପଦ, ହୋକ୍ସ ! ଏଇଭଳି ପରିସ୍ଥିତିରେ କାହିଁକି ଏ ମନ ଢଳିଯାଏ ମନିକା ଆଡ଼େ ? ସବୁ ପ୍ରତିବନ୍ଧକ ସତ୍ତ୍ୱେ କାହିଁକି ମନିକା ଆଗେଇଆସେ ତା' ଆଡ଼େ ? ରଥ ଦଂପତି, ଭବେଶ ସହିତ ମୁକାବିଲା । ତା' ଭିତରେ ପୁଣି ଅଛନ୍ତି, ଶ୍ରୀ ମେହେର, ହାକିମଙ୍କର ଗୋଲାପ ଫୁଲ ଓ ଶୁଭେଚ୍ଛା । ଆହୁରି ଅଛି ବୋମା, ଅପହରଣ । ତା'ପରେ ସବୁଆଡ଼େ ଶୂନ୍ୟତା । ସମଗ୍ର ବିଶ୍ୱ ମନିକାହୀନ ହୋଇଯାଇ ନିଃସଙ୍ଗ ଓ ହା ହୁତାଶମୟ !

ଶେଖର ଜାଣିପାରୁ ନ ଥିଲା କେଉଁ ଜିନିଷ ଏଠାରେ ଗ୍ରହଣ କରାଯିବା ଦରକାର । ପ୍ରତ୍ୟାଖ୍ୟାନ କରାଯିବ କାହାକୁ ? କାହିଁକି ? ଏକ ସୃଜନଶୀଳ ସ୍ଥିତି ପାଇଁ କେଉଁ ଉପାଦାନ ଦରକାର ? ତାହା ସେ ପାଇବ କେଉଁଠି ? କେମିତି ଚିହ୍ନିବ, କେଉଁଟା ତା'ର ଦରକାର ?

–"ମା !" ଶେଖର କହିଲା– "ମୁଁ କାଲି କଲେଜ ଫେରିଯିବି !"

ମା' ଠାକୁରଘରେ ଧୂପ ଦେଇ ସାରିଥିଲା । ରୋଷଇଘର ଆଡ଼କୁ ଯିବା ବେଳେ ଏଇ ପ୍ରଶ୍ନ । ବାପା ବାରନ୍ଦା ଚୌକିରେ ବସି ତଥାପି ଚା' ପିଉଥିଲେ । ଦୁହେଁ ପରସ୍ପରକୁ, ପରେ ଶେଖରକୁ ଚାହିଁଲେ । ସେମାନେ ବାସ୍ତବିକ ଭୁଲି ଯାଇଥିଲେ ଯେ, ଶେଖର ସବୁଦିନ ଏଠାରେ ରହିବା ପାଇଁ ଆସି ନ ଥିଲା । ସେ ପୁଣି ଫେରିବ ଚାକିରି ସ୍ଥାନକୁ ।

ମା' କିଛି କହିବା ଆଗରୁ ବାପା କହିଲେ– "କାଲି ଯିବୁ ? ଯା । ସେଠାରେ ପହଞ୍ଚି ଚିଠି ଦେବୁ । ଚଳିବୁ ସାବଧାନ ହୋଇ ।"

କୌଣସି ମେଲୋଡ୍ରାମା ସୃଷ୍ଟି ହେଲା ନାହିଁ । ଶେଖର ଆଶ୍ୱସ୍ତ ହେଲା ଯେ ଦୁହେଁ ଦେଖାଯାଉଚନ୍ତି ସ୍ଥିର ଓ ଆତ୍ମବିଶ୍ୱାସୀ । ଅଯଥା ଗୁଡ଼ାଏ ଆବେଗ ଓ ଲୁହ ପ୍ରଦର୍ଶନ କରୁ ନାହାନ୍ତି ।

ଶିବ ସହିତ ଫ୍ଲାଟ୍‌ରେ ପହଞ୍ଚିବା ବେଳକୁ ଅପରାହ୍ଣ ପାଞ୍ଚଟା । ଝରକା ପାଖରେ, ବାରନ୍ଦା ଉପରେ ଅନୁସନ୍ଧିତ୍ସୁ ମୁହଁ । ଫୁସ୍ ଫୁସ୍ କଥା । ତାକୁ ଅନୁସରଣ କରୁଥିବା ଆଖି । ଶେଖର ହସିଲା ମନ ଭିତରେ । ଏମିତି ହୁଏ । ହେଉଚି । ସଙ୍କୁଚିତ ସେ ହେବ କାହିଁକି ?

ଫ୍ଲାଟ୍ । ଗନ୍ଧ ଗୋଟେ ତା ଭିତରେ । ଧୂଳି । ବିପର୍ଯ୍ୟସ୍ତ ଜିନିଷପତ୍ର । ସାଇକେଲ୍ ଚକରେ ପ୍ରେସର୍ ନାହିଁ । ବାଥ୍‌ରୁମ୍ । ଅଳସ ଭାବରେ, କୁଣ୍ଠିତ ହୋଇ ଟ୍ୟାପ୍‌ରୁ ପଡୁଚି ଟୋପା ଟୋପା ପାଣି । ରୋଷେଇଘର । କେତେଟା ପଚା ଆଳୁ । ଶୁଖିଲା ବାଇଗଣ । ଇତ୍ୟାଦି । ଶିବ ଦେଖିସାରିଥିଲା, ତା' ପାଇଁ ସମସ୍ତ ସରଞ୍ଜାମ ଅଛି କି ନାହିଁ ।

–"ବାବୁ, ମୁଁ ଚା' ଟିକେ ବନଉଚି । ଆପଣ ଧୁଆଧୋଇ ହୋଇ ବଜାରକୁ ବାହାରିଯିବେ । ଘଣ୍ଟାଏ ଭିତରେ ସବୁ ଫିଟ୍‌ଫାଟ୍ ହୋଇଯିବ ।" ଶିବ ଝାଡୁ ଧରି ସାରିଥିଲା ସେତେବେଳେ ।

ସାଇକେଲ ଗଡ଼େଇ ଗଡ଼େଇ ନେବାକୁ ପଡ଼ିଲା ମୋଡ଼ ପାଖରେ ଥିବା ଫିଟର୍ ଦୋକାନକୁ । ତା' ପରେ, ବ୍ୟାଗ୍ ମୁହଁ ଖୋଲିଲା ପରିବା, ତେଜରାତି ଦୋକାନରେ । ଫେରିବାବେଳେ ଶିବ ପାଇଁ, ନିଜ ପାଇଁ ଦୋକାନରୁ ଜଳଖିଆ । ଫ୍ଲାଟ୍‌ରେ ପହଞ୍ଚି ଦେଖିଲା, ଶ୍ରୀ ମେହେର ବସିଚନ୍ତି ଗୋଟେ ଚେୟାରରେ । ତାଙ୍କ ପ୍ରସ୍ତାବ ଅନୁଯାୟୀ ରାତ୍ରି ଭୋଜନ ହେବ ତାଙ୍କ ଘରେ ।

ସୁଟ୍‌କେଶ୍‌ର ଗୋଟିଏ ପାଖରେ କାଗଜ ଗୁଡ଼େଇ ହୋଇଥିଲା ସେହି ମର୍ମନ୍ତୁଦ ଜିନିଷ । ମନିକାର ପାଟ ଲୁଗା ଇତ୍ୟାଦି ଓ ଚପଲ । ସେ ପ୍ରାୟ ଆର୍ତ୍ତନାଦ କରିଉଠିଲା ଗୋଟେ ମୃତ ଦେହ ଧରିଥିବାରୁ ଶୀତ୍କାର ଯୋଗୁ । ଗୋଟେ ଝାଳ । ଶୋଷ । ଗୋଟେ ଯନ୍ତ୍ରଣା ଓ ରିକ୍ତତା । ସେ ଜାଣିପାରିଲା ନାହିଁ, ସୁଟ୍‌କେଶ ପ୍ୟାକ୍ କଲା ବେଳେ ତା' ଅଜାଣତରେ ମା' ଏସବୁ ରଖିଲା କାହିଁକି । ମନିକା ଅପହୃତା ହେବା ବେଳେ ପିନ୍ଧିଥିଲା ମା'ର ଲୁଗାପଟା । ତାହାହିଁ ଥିଲା ଶାଶୁଘରର ଚିହ୍ନ ତା' ଦେହରେ । ରହିଯାଇଥିଲା ଘରେ ତା'ର ଏତକ ଜିନିଷ । ଏସବୁ

ସେଇଠି ରହିଥାନ୍ତା । ମା' ଏସବୁ ପଠେଇ, ଗୋଟେ କ୍ଷତ, ଗୋଟେ ଆତୁରତାକୁ ସତେଜ ରଖିଲା ସିନା !

ଶିବ ଦେଖିପାରିଲା ଶେଖର ଧରିଥିବା ଲୁଗା-ଚପଲ ଇତ୍ୟାଦିକୁ । କହିଲା– "ମା' ଏସବୁ ସଜାଡ଼ି ରଖିବା ବେଳେ ମୋତେ କହିଲେ, ତୋ' ବାବୁକୁ କହିବୁ, ବୋହୂ ଫେରିଲେ ଏସବୁ ପିନ୍ଧିବ । ପୁଣି ଘରକୁ ଫେରିବ ।"

ବୋହୂ ଫେରିବ । କେବେ ? କେବେ ପୁଣି ଘରକୁ ଫେରିବ ସେ ? ନା, ଆଉ ବୋଧହୁଏ ଭବିଷ୍ୟତରେ କେବେବି ନିଦ ଆସିବ ଆସିବ ନାଇଁ । ଘରେ ଥିଲା ଗୋଟେ ପ୍ରକାର ତା' ଅବସ୍ଥା । ଆଖି ପଡୁଥିଲା ମା' ଉପରେ, ବାପାଙ୍କ ଉପରେ, ପରିଚିତ ଲୋକଙ୍କ ଉପରେ, ନିଜ ମାଟି ଉପରେ । ଏଠାରେ ଏ ଫ୍ଲାଟ୍‌ର କାନ୍ଥ ଘୁଞ୍ଚିଯାଉଚି ଦିଗ୍‌ବଳୟ ପାଖକୁ । ଛାତ ମିଶିଯାଉଚି ଆକାଶ ସହିତ । କେହି କୁଆଡ଼େ ନାହାନ୍ତି । ଗୋଟେ ମରୁଭୂମି । ନିଷ୍କରୁଣ ସୂର୍ଯ୍ୟ । ବାଲି ଝଡ଼ । ମନିକା ! ଗୁଞ୍ଜରିତ ହୋଇଯାଉଚି ଏ ସମ୍ବୋଧନ ରାଶି ରାଶି ବାଲି ଉପରେ । ମନିକା ! ସୂର୍ଯ୍ୟର କୌଣସି ଉତ୍ତର ନାହିଁ । ମନିକା ! ଦିଗ୍‌ବଳୟ ଫେରାଇ ଦେଉଚି ଏ ସମ୍ବୋଧନ, ନିଖୋଜ ମଣିଷ ପାଖରୁ ଫେରିଆସିଥିବା ରେଜିଷ୍ଟ୍ରି ଚିଠି ପୋଷ୍ଟ ପିଅନ ଫେରାଇ ଦେବା ଭଳି ।

ସକାଳ । କଲେଜ ଯିବା ପାଇଁ ପ୍ରସ୍ତୁତି । ଆଉ ଗୋଟିଏ ଆବିଷ୍କାର । ଫୁଲାଏ ସାଦାକାଗଜ । ଗୋଟିଏ ପୃଷ୍ଠାରେ ଲେଖାଯାଇଚି– ମନିକା ଏବେ କେଉଁଠି ? ସେ ଜାଣେ, ଏ ଲେଖା ସେ ଲେଖିପାରିବ ନାଇଁ । ସେ ନିଜେ ପରିଣତ ହୋଇଯାଇଚି ରିଫିଲ୍ ନିଃଶେଷ ହୋଇ ଯାଇଥିବା ବଲ୍ ପେନ୍‌ରେ । ସେ ଲେଖିବ କିପରି ? କେଉଁଠୁ ଆଣିବ କଲମ ?

ସହକର୍ମୀମାନେ ଦେଖିଲେ । କେତେଜଣ ଜଣେଇଲେ ସହାନୁଭୂତି । ପ୍ରକଟ କଲେ ଆଶା । ମନିକା ଫେରିବ ତା' ପାଖକୁ । ସେ ଫେରିଆସିବା ଦରକାର । କେତେଜଣ ତାକୁ ଦେଖି ହସାହସି ହେଲେ । ବିଚରା ! କି ଆସ୍ପର୍ଦ୍ଧା ! ପୁଣି କେତେଜଣ ଆଶଙ୍କା ପ୍ରକାଶ କଲେ । ଶେଖରବାବୁ, ଆମେ ଶୁଣୁଚୁ ମନିକାକୁ ମାରି ଦିଆଯାଇଚି । କେଡ଼େ ଜଘନ୍ୟ ଲୋକ, ଦେଖନ୍ତୁ ।

ରାସ୍ତାଘାଟ, ଭିଡ଼ ବସ୍, କ୍ଲାସ୍ ରୁମ୍ । ଅଦରକାରୀ ହୋଇଯାଉଚି, ସମସ୍ତ ଲୋକଙ୍କର ମୁହଁ । ମନିକା ନାହିଁ କେଉଁଠିହେଲେ । ସେ ଖୋଜୁଚି । କେଉଁଠି ରହିଲା ସେ ? ଶେଖର ବୁଝିପାରୁ ନ ଥିଲା, ମନିକାବିହୀନ ଜୀବନଟେ ସେ ବିତେଇବ କିପରି । ଏହାହିଁ ଯଦି ସେହି ଜୀବନର ସ୍ୱରୂପ, ତେବେ ଗୋଟିଏ ମାସ, ଗୋଟିଏ ବର୍ଷ, ବର୍ଷ ପରେ ବର୍ଷ ସେ କଟାଇବ କିପରି ? କାହିଁକି କଟାଇବ ?

ବୋଧହୁଏ ପନ୍ଦର-କୋଡ଼ିଏ ଦିନ ହୋଇଗଲାଣି । ଦେଖା ନାହିଁ ମନିକାର । ବଢୁଥିଲା ହାହାକାର । ଲମ୍ବା, ଉଷୁମ ହୋଇ ଯାଉଥିଲା ଦୀର୍ଘଶ୍ୱାସ । ଝରି ପଡୁଥିଲା ପତ୍ର । ଶୁଖି ଯାଉଥିଲା ଫୁଲ । ଯୋଗସୂତ୍ର ରହୁ ନ ଥିଲା କାହାରି ସହିତ । ସେ ଜାଣି ପାରୁ ନ ଥିଲା, ସେ କାହିଁକି, କୁଆଡ଼େ ଯାଉଚି । ପଶିଯାଉଚି ଭୁଲ୍ କ୍ଲାସ୍ ରୁମ୍‌ରେ । ଅନ୍ୟ ଫ୍ଲାଟ୍ ଦରଜାରେ କରାଘାତ କରୁଚି । ଦୋକାନୀ ହସି ହସି କହୁଚି ଯେ, ସେ ପରିବା ବିକେ; ସାବୁନ ପାଇଁ ଅନ୍ୟ ଦୋକାନ ଅଛି ।

ମନିକା ଦରକାର । ଏଇଭଳି ପରିସ୍ଥିତିରେ ସେ ଦୀର୍ଘସମୟ ବସ୍‌ରେ ବସି ପହଞ୍ଚିଗଲା ହାଇକୋର୍ଟରେ । ପବ୍ଲିକ୍ ଇଣ୍ଟେରେଷ୍ଟ ପିଟିସନ୍ ପାଇଁ । ଜଜ୍ ବିରକ୍ତି ଓ ବିସ୍ମୟ ପ୍ରକାଶ କଲେ ଅନୁସନ୍ଧାନର ଧୀରତା ଯୋଗୁ । କ୍ରାଇମ୍ ବ୍ରାଞ୍ଚ ଅନୁସନ୍ଧାନର ଦାୟିତ୍ୱ ନେବାକୁ ନିର୍ଦ୍ଦେଶ ଦିଆଗଲା ।

ଶେଖର ପୁଣି ଫେରିଆସିଲା ଫ୍ଲାଟ୍‌କୁ । ସେ ବୋଧହୁଏ ପହଞ୍ଚିଯାଇଚି, ତା' ଆଗରେ ରହିଥିବା ରାସ୍ତାର ଶେଷ ସୀମାରେ । ଏହା ପରେ ବୋଧହୁଏ ଆଉ କାହାର ଦ୍ୱାରସ୍ଥ ହୋଇପାରିବ ନାହିଁ । କେହି ଜଣେ କହୁଥିଲା, ରଥ ଦଂପତି ଓ ଭବେଶ ପୁଣି ଜାମିନ ପାଇଚନ୍ତି । ମନିକା ମିଳିଯିବ । ମିଳିବ ନାହିଁ । ମାରିଦିଆ ଯାଇଚି ତାକୁ । ଶେଖର ଟେବୁଲ ଉପରୁ ଉଠାଇଆଣିଲା କାଗଜ ଫର୍ଦ୍ଦଗୁଡ଼ିକୁ । ତା' ସାମନାରେ ଲେଖା ଯାଇଥିଲା ପ୍ରଶ୍ନ — ମନିକା ଏବେ କେଉଁଠି ?

ପୁଣି ଦୀର୍ଘଶ୍ୱାସ । ଭାବିଲା, ଲେଖିବ କି ଆତ୍ମଜୀବନୀମୂଳକ ଏଇ କାହାଣୀ ? ବ୍ରିଲିଆଣ୍ଟ କେରିଅର୍ ତା'ର । ଡିବେଟ୍, ପ୍ରବନ୍ଧ, ସାଧାରଣଜ୍ଞାନ ପ୍ରତିଯୋଗିତାରେ ଅନେକ କୃତିତ୍ୱ ତା'ର । ଲେଖାଯାଉ ଏଇ ସତ ଘଟଣାକୁ । ସୁଧୀବୃନ୍ଦ ! ଶେଖର ପ୍ରସ୍ତୁତ ହେଉଥିଲା ଲେଖିବା ପାଇଁ । ନିଜ ପ୍ରତି ତାହାର ବିଶ୍ୱାସ କ୍ରମଶଃ ଫେରି ଆସୁଥିଲା । ଶିବ ପ୍ରସ୍ତୁତ କରୁଥିଲା ଚା' ବାରମ୍ବାର । ହାତରେ କଲମ ଧରି ଦେଖିଲା, ରିଫିଲ୍ ଅଛି । ସେ କେବଳ ଠିକ୍ ଭାବରେ କଲମ ଧରିବା କଥା । ଅନେକଦିନୁ କାଗଜ ଅପେକ୍ଷା କରିଚି ମନିକା ସଂକ୍ରାନ୍ତୀୟ ଲେଖାଟି ନିଜ ଛାତି ଉପରେ ଧରି ରଖିବା ପାଇଁ ।

———o———



ଜଣେ ଅତ୍ୟନ୍ତ ମେଧାବୀ ଓ ସ୍ପର୍ଶକାତର ହରିଜନ ଯୁବକ କିପରି ଗ୍ରହଣ କରେ ତା ପ୍ରତି ସମାଜର ଦୃଷ୍ଟିଭଙ୍ଗୀକୁ ? ରାଜନୀତି ଓ ଅନ୍ୟ ଧର୍ମର ଚେସ୍‌ବୋର୍ଡ଼ରେ ସେ କେଉଁ ମାନ୍ୟତା ହାସଲ କରେ ? ତାହାର ଆନ୍ତର୍ଜଗତ ସତ୍ତା କ୍ଷତବିକ୍ଷତ ହେବା ପରେ ସେ ନିଜକୁ ଏକତ୍ର କରେ କିପରି ଭବିଷ୍ୟତର ସମ୍ମୁଖୀନ ହେବା ପାଇଁ ?

ପ୍ରଥମଥର ପାଇଁ ଏକ ବୃହତ୍ତର ପରିପ୍ରେକ୍ଷୀରେ ଏହିସବୁ ପ୍ରଶ୍ନ ଉପସ୍ଥାପନ କରନ୍ତି କଥାକାର ଡକ୍ଟର ରାମଚନ୍ଦ୍ର ବେହେରା ତାଙ୍କର ଏହି ଶ୍ରେଷ୍ଠ ଉପନ୍ୟାସରେ । ଏହାର ନାୟକ ତଥାପି ପ୍ରଚଳିତ ଅନ୍ଧବିଶ୍ୱାସ ଓ ରକ୍ଷଣଶୀଳତାକୁ ଆପାତତଃ କାଠଗଡ଼ାରେ ଠିଆ କରାଇ ଉପରୋକ୍ତ ପ୍ରଶ୍ନର ଉତ୍ତର ଦାବି କରେ ।

ଉକୁଟି ଯାଉଥାଏ ଚାରିପାଖର ପୃଥିବୀ । ହାତଛଡ଼ା ହୋଇଯାଉଥାଏ ଭବିଷ୍ୟତ ପାଇଁ ସ୍ୱପ୍ନ ଓ ଯୋଜନା । ତାହା ଭିତରେ କଳଙ୍କିତ ଜୀବନ, ବଞ୍ଚିରହିବା ପାଇଁ ବ୍ୟାକୁଳତା ଓ ଏଥିପାଇଁ ପ୍ରୟୋଜନୀୟ ସଂଘର୍ଷ । ସାରଳା ପୁରସ୍କାର, ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଓ ବିଷୁବ ପୁରସ୍କାର ବିଜେତା ଡକ୍ଟର ବେହେରାଙ୍କର କଥାସାହିତ୍ୟରେ ଏହି ସ୍ଥିତିବାଦୀ ଚେତନା ପ୍ରତିଧ୍ୱନିତ । ଓଡ଼ିଶାର ଜୀବନଧାରା ପ୍ରତିଫଳନ କରୁଥିବା ଏହି କଥାସାହିତ୍ୟ ପାଠକଙ୍କୁ ଗଭୀରଭାବେ ନିଜ ପ୍ରତି ଏବଂ ତାଙ୍କର ବିଶ୍ୱ ସହିତ ଥିବା ଜଟିଳ ସଂପର୍କ ପ୍ରତି ସଚେତନ କରାଏ ।

---

ବିଦ୍ୟାପୁରୀ
ବାଲୁବଜାର, କଟକ - ୭[illegible]୦୨
ISBN 81-7411-298-7
ମୂଲ୍ୟ : [illegible]୦.୦୦